# ଖୋରଧା କାବ୍ୟବିତାନ : ଦୃଷ୍ଟି ଓ ଦିଗନ୍ତ



ସମ୍ପାଦନା
ପ୍ରାଧାପିକା ସୟଂପ୍ରଭା ପଟ୍ଟନାୟକ

# ଖୋରଧା କାବ୍ୟବିତାନ: ଦୃଷ୍ଟି ଓ ଦିଗନ୍ତ


**ସମ୍ପାଦନା**

**ପ୍ରାଧ୍ୟାପିକା ସ୍ୱୟଂପ୍ରଭା ପଟ୍ଟନାୟକ**

**ସମ୍ପାଦନା ମଣ୍ଡଳୀ**

ପ୍ରାଧ୍ୟାପକ ଗୋପାଳକୃଷ୍ଣ ଦାସ

ବରିଷ୍ଠ ଅଧ୍ୟାପିକା ସୁନୀତା ତ୍ରିପାଠୀ

ଅଧ୍ୟାପିକା ଡ. ସଂଘମିତ୍ରା ଭଞ୍ଜ

ଅଧ୍ୟାପକ ଡ. ଅରବିନ୍ଦ ପ୍ରଧାନ

ଅଧ୍ୟାପକ ଡ. ମିଥୁନ ଚନ୍ଦ୍ର ଦେ



**ଆୟୋଜକ ଓ ପ୍ରକାଶକ**

**ଓଡ଼ିଆ ସାହିତ୍ୟ ପରିଷଦ,**

**ପ୍ରାଣନାଥ ମହାବିଦ୍ୟାଳୟ (ସ୍ୱୟଂଶାସିତ), ଖୋରଧା**


---

# ଖୋରଧା କାବ୍ୟବିତାନ: ଦୃଷ୍ଟି ଓ ଦିଗନ୍ତ

( କବିତା ସମାଲୋଚନା)
ସମ୍ପାଦିକା- ପ୍ରାଧ୍ୟାପିକା ସ୍ୱୟଂପ୍ରଭା ପଟ୍ଟନାୟକ
ପ୍ରକାଶକ- ଓଡ଼ିଆ ସାହିତ୍ୟ ପରିଷଦ,
ପ୍ରାଣନାଥ ମହାବିଦ୍ୟାଳୟ (ସ୍ୱୟଂଶାସିତ), ଖୋରଧା
ପ୍ରଥମ ସଂସ୍କରଣ-୨୦୧୮
ଲିପି ସଂଯୋଜନା ଓ ପ୍ରଚ୍ଛଦ- ସୁମନ୍ତ ଦାସ
ମୁଦ୍ରଣ- ସାରଦା ଅଫ୍‌ସେଟ୍, ସାମନ୍ତରାପୁର, ଖୋରଧା
ପ୍ରଥମ ସଂସ୍କରଣ- ୨୦୧୮
ମୂଲ୍ୟ- ଟ°୧୬୦.୦୦

## KHORDHA KABYABITANA: DRUSTI O DIGANTA

(Criticism of Odia poetry)
Edited by: Swayamprava Pattanaik
Published by: Odia Sahitya Parishada,
Prananath College(Auto.), Khordha-752055
Computer & Cover: Sumanta Das
Printer: Sarada Offset, Samantarapur, Khordha
First Edition: 2018
Price: 160/-

ISBN-978-81-923567-1-6



## ଅଧ୍ୟକ୍ଷଙ୍କ କଲମରୁ ପଦେ...

ଖୋରଧାର କବିମାନଙ୍କ ସୃଷ୍ଟି ସମ୍ଭାର ସମ୍ପର୍କରେ ପ୍ରଜ୍ଞାତୀର୍ଥ ପ୍ରାଣନାଥ ମହାବିଦ୍ୟାଳୟ (ସ୍ୱୟଂଶାସିତ)ର ଗୌରବ ମଣ୍ଡିତ "ଓଡ଼ିଆ ସାହିତ୍ୟ ପରିଷଦ"ର ଉଦ୍ୟମରେ "ଖୋରଧା କାବ୍ୟବିତାନ: ଦୃଷ୍ଟି ଓ ଦିଗନ୍ତ" ଗ୍ରନ୍ଥ ପ୍ରକାଶ ହେଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ବିଗତ ଦୁଇ ଦଶନ୍ଧି ଧରି ଏହି ପରିଷଦ ଖୋରଧା ତଥା ଓଡ଼ିଶାର ଅଜ୍ଞାତ, ସ୍ୱଳ୍ପଜ୍ଞାତ ଲେଖକମାନଙ୍କ ସମ୍ପର୍କରେ ଗବେଷଣାଧର୍ମୀ ଗ୍ରନ୍ଥ ପ୍ରକାଶ କରି ରାଜ୍ୟର ସୁଧୀ ସମାଜରେ ଆଦୃତ ହେବା ଉଲ୍ଲେଖନୀୟ ।

ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ମୁଖ୍ୟା ସ୍ୱୟଂପ୍ରଭା ପଟ୍ଟନାୟକ ଏହି ଗ୍ରନ୍ଥ ପ୍ରକାଶନର ଦାୟିତ୍ୱ ନେଇଥିବାରୁ ତାଙ୍କ ନିକଟରେ କୃତଜ୍ଞ । ବିଭାଗର ଗୋପାଳକୃଷ୍ଣ ଦାସ, ସୁନିତା ତ୍ରିପାଠୀ, ସଂଘମିତ୍ରା ଭଞ୍ଜ, ଅରବିନ୍ଦ ପ୍ରଧାନ, ମିଥୁନ ଚନ୍ଦ୍ର ଦେଙ୍କ ପ୍ରୟାସରେ ଏହି ଗ୍ରନ୍ଥ ଲୋକାର୍ପିତ ହେଉଥିବାରୁ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି । ସର୍ବସାଧାରଣ ତଥା ଅନୁସନ୍ଧିତ୍ସୁମାନଙ୍କୁ ଏହା କିୟତ୍ ପରିମାଣରେ ସହାୟତା କରିବ ବୋଲି ଆଶା କରୁଛି । ଏଇ ସାଧୁଉଦ୍ୟମର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ଡ. ହରନାରାୟଣ ପାଣିଗ୍ରାହୀ
ଅଧ୍ୟକ୍ଷ, ପ୍ରାଣନାଥ ମହାବିଦ୍ୟାଳୟ (ସ୍ୱୟଂଶାସିତ), ଖୋରଧା

## ଓଡ଼ିଆ ସାହିତ୍ୟ ପରିଷଦ, ଖୋରଧା

ପ୍ରାଧ୍ୟାପକ ଡ. ହରନାରାୟଣ ପାଣିଗ୍ରାହୀ, ଅଧ୍ୟକ୍ଷ ଓ ସଭାପତି

ପ୍ରାଧ୍ୟାପିକା ସ୍ୱୟଂପ୍ରଭା ପଟ୍ଟନାୟକ, ବିଭାଗୀୟ ମୁଖ୍ୟା ଓ ଉପସଭାପତି

## ସଭ୍ୟ ଓ ସଭ୍ୟାବୃନ୍ଦ

ପ୍ରାଧ୍ୟାପକ ଗୋପାଳକୃଷ୍ଣ ଦାସ

ବରିଷ୍ଠ ଅଧ୍ୟାପିକା ସୁନିତା ତ୍ରିପାଠୀ

ଅଧ୍ୟାପିକା ଡ. ସଂଘମିତ୍ରା ଭଞ୍ଜ

ଅଧ୍ୟାପକ ଡ. ଅରବିନ୍ଦ ପ୍ରଧାନ

ଅଧ୍ୟାପକ ଡ. ମିଥୁନ ଚନ୍ଦ୍ର ଦେ



## ବିଭାଗୀୟ ମୁଖ୍ୟାଙ୍କ କଲମରୁ ପଦେ...

ପ୍ରାଣନାଥ ମହାବିଦ୍ୟାଳୟର "ଓଡ଼ିଆ ସାହିତ୍ୟ ପରିଷଦ" ତରଫରୁ ପ୍ରଥମେ ୧୯୯୯ ଖ୍ରୀଷ୍ଟାବ୍ଦରେ ଖୋରଧା ଅଞ୍ଚଳର ଅନାଲୋଚିତ ପ୍ରତିଭାମାନଙ୍କୁ ଲୋକଲୋଚନକୁ ଆଣିବା ପାଇଁ ଏକ ପ୍ରୟାସ ଆରମ୍ଭ କରାଯାଇଥିଲା । ଏହାକୁ ଆରମ୍ଭ କରିଥିଲେ ତତ୍‌କାଳୀନ ବିଭାଗୀୟ ମୁଖ୍ୟ ପ୍ରଫେସର ପ୍ରଫୁଲ୍ଲ କୁମାର ପାଇକରାୟ । ଏଥିରେ ସହାୟତା କରିଥିଲେ ସେତେବେଳେ ଅଧ୍ୟକ୍ଷ ଥିବା ମେଜର କ୍ଷୀରୋଦ ପ୍ରସାଦ ମହାନ୍ତି ଓ ପୂର୍ବତନ ଓଡ଼ିଆ ବିଭାଗ ମୁଖ୍ୟ ପ୍ରଫେସର ଅବନୀ କୁମାର ବରାଳ । ସେହି ପ୍ରକାଶନ ଧାରା ଏ ପର୍ଯ୍ୟନ୍ତ ଅବ୍ୟାହତ ରହିଛି ।

ପୂର୍ବବର୍ଷମାନଙ୍କ ପରି ଏବର୍ଷ ମଧ୍ୟ ଖୋର୍ଦ୍ଧାର କବିମାନଙ୍କ ଉପରେ ଏକ ଗବେଷଣାତ୍ମକ ଗ୍ରନ୍ଥ "ଖୋରଧା କାବ୍ୟବିତାନ: ଦୃଷ୍ଟି ଓ ଦିଗନ୍ତ" ପ୍ରକାଶିତ ହେବାକୁ ଯାଉଛି । ବୀରମାଟି ଖୋରଧାର ଶହ ଶହ କବି ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି, କରୁଛନ୍ତି ଓ କରୁଥିବେ । ଏ ଗ୍ରନ୍ଥରେ ୧୩ଜଣ ଖୋର୍ଦ୍ଧା କବିଙ୍କୁ ଭିତ୍ତି କରି ମୋଟ ୧୭ଟି ପ୍ରବନ୍ଧ ପ୍ରକାଶ ପାଇଛି । ଏ ଗ୍ରନ୍ଥଟି ଛାତ୍ରଛାତ୍ରୀ, ଗବେଷକ, ଅଧ୍ୟାପକ, ଅଧ୍ୟାପିକାଙ୍କ ପାଇଁ ଏକ ଉପାଦେୟ ଗ୍ରନ୍ଥ ହେବ ବୋଲି ମୋର ଆଶା ଓ ବିଶ୍ୱାସ । ଭବିଷ୍ୟତରେ ଖୋର୍ଦ୍ଧାର ଅନ୍ୟ କବିମାନଙ୍କ ଉପରେ ମଧ୍ୟ ପୁସ୍ତକ

ପ୍ରକାଶ କରିବାର ଲକ୍ଷ୍ୟ ରଖିଛୁ । ବିଭିନ୍ନ ତଦ୍‌ବିଦ୍‌ମାନେ ସେମାନଙ୍କ ପ୍ରବନ୍ଧ ପ୍ରଦାନକରି ଆମକୁ କୃତଜ୍ଞତା ପାଶରେ ଆବଦ୍ଧ ରଖିଛନ୍ତି । ଆମ ବିଭାଗର ପ୍ରାଧ୍ୟାପକ ଗୋପାଳକୃଷ୍ଣ ଦାସ, ବରିଷ୍ଠ ଅଧ୍ୟାପିକା ସୁନିତା ତ୍ରିପାଠୀ, ଅଧ୍ୟାପିକା ସଂଘମିତ୍ରା ଭଞ୍ଜ, ଅଧ୍ୟାପକ ଅରବିନ୍ଦ ପ୍ରଧାନ, ଅଧ୍ୟାପକ ମିଥୁନ ଚନ୍ଦ୍ର ଦେ ପ୍ରମୁଖଙ୍କ ଅକୁଣ୍ଠ ସମର୍ଥନ ଓ ସହଯୋଗ ପାଇଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି । ଏ ବିଭାଗରୁ ଅବସର ନେଇଥିବା ପ୍ରାଧ୍ୟାପକ ଡ. ମଦନମୋହନ ମହଲା ଓ ପ୍ରାଧ୍ୟାପକ ଡ. ମହନମୋହନ ବେହେରା ଏବଂ ଦୀପ୍ତିପ୍ରଭା ଶଙ୍ଖୁଆ ଓ ମାଧବ ମାଝିଙ୍କ ଆଗ୍ରହ ଓ ଉତ୍ସାହ ଯଥେଷ୍ଟ ଭାବରେ ପ୍ରେରଣା ଯୋଗାଇଛି । ପ୍ରୁଫ୍ ସଂଶୋଧନ କାର୍ଯ୍ୟରେ ସହଯୋଗ କରିଥିବାରୁ ମୋର ପୁରାତନ ଛାତ୍ର ଡ. ପ୍ରିୟରଞ୍ଜନ ପଟ୍ଟନାୟକଙ୍କୁ ଧନ୍ୟବାଦ ଜଣାଉଛି । ଅଧ୍ୟକ୍ଷ ଡ. ହରନାରାୟଣ ପାଣିଗ୍ରାହୀଙ୍କ ପ୍ରେରଣା ଓ ଉତ୍ସାହ ଯୋଗୁଁ ଏ ସମାଲୋଚନା ଗ୍ରନ୍ଥ ପ୍ରକାଶ ପାଇବାକୁ ଯାଉଛି, ତେଣୁ ତାଙ୍କ ନିକଟରେ କୃତଜ୍ଞ । ଶେଷରେ ଏହି ପୁସ୍ତକ ପ୍ରକାଶ ପରମ୍ପରାକୁ ଆରମ୍ଭ କରିଥିବା ପ୍ରଫେସର ପ୍ରଫୁଲ୍ଲ କୁମାର ପାଇକରାୟ, ମେଜର କ୍ଷୀରୋଦ ପ୍ରସାଦ ମହାନ୍ତି, ପ୍ରଫେସର ଅବନୀ କୁମାର ବରାଳଙ୍କୁ ବିନମ୍ର କୃତଜ୍ଞତା ଜଣାଉଛି । ଜଗନ୍ନାଥଙ୍କ ଅପାର କରୁଣାରୁ ଏ ଯୋଜନାଟି ସଫଳ ହୋଇଥିବାରୁ ତାଙ୍କ ଚରଣରେ ପ୍ରଣାମ ଜଣାଉଛି ।

ପ୍ରାଧ୍ୟାପିକା ସ୍ୱୟଂପ୍ରଭା ପଟ୍ଟନାୟକ
ବିଭାଗୀୟ ମୁଖ୍ୟା, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ପ୍ରାଣନାଥ ମହାବିଦ୍ୟାଳୟ (ସ୍ୱୟଂଶାସିତ), ଖୋରଧା

# ସୂଚିପତ୍ର

# ଖୋରଧାର କବି: ଏକ ବିହଙ୍ଗାବଲୋକନ

ପ୍ରାଧ୍ୟାପିକା ସ୍ୱୟଂପ୍ରଭା ପଟ୍ଟନାୟକ

"ଆଲୁଅ ତା'ର କି ମନୋହର
ଅନ୍ଧକାର ତା ଠାରୁ ଭଲ
ଜୀବନେ ପଥେ ସକଳ ତା'ର
ଫିଟାଏ ଏ ନୂଆ ରାହାଟି
ଛୋଟ ମୋର ଗାଁଟି ।"

କବିତାଂଶଟିର କବି ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ଜନ୍ମସ୍ଥାନ ଖୋରଧାର ଗୁରୁଜଙ୍ଗ । ଖୋରଧାର ଆକାର କ୍ଷୁଦ୍ର ହେଲେ ହେଁ ଏଠାରେ ପୁରିରହିଛି ତ୍ୟାଗ ଓ ଦେଶପ୍ରେମର କାହାଣୀ । ଏହାର କୋଣ ଅନୁକୋଣରେ ଜାଗୃତିର ଆବାହନ ସହିତ ସୃଜନଶୀଳତାର ଛାପ । ସ୍ରଷ୍ଟାର ସୃଷ୍ଟିରେ ଓ ପଦଧ୍ୱନିରେ ସ୍ପନ୍ଦିତ ହୋଇଛି ସାହିତ୍ୟର ବିଭିନ୍ନ ବିଭାବ । ଉତ୍କଳର ଚାରୁକଳା ବିଶ୍ୱବିଦିତ । ଏହାର ପ୍ରତ୍ୟେକଟି କଣିକାରେ ଭରି ରହିଛି ମହନୀୟତା ଓ ପବିତ୍ରତା । ସମଗ୍ର ଭାରତବର୍ଷରେ ଖୋରଧା ହେଉଛି ପ୍ରଥମ ରାଜ୍ୟ, ଯେଉଁଠାରେ ପାଇକମାନେ ସର୍ବପ୍ରଥମେ ଗୋରା ସରକାରଙ୍କ ଭୀଷଣ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ । ବୀରପୁରୁଷଙ୍କ ଗାଥାରେ ଯେତିକି ଏ ପବିତ୍ର ତଥା ମୈତ୍ରୀଭୂମି ଋଦ୍ଧିମନ୍ତ, ତା'ଠାରୁ ଅଧିକ ରସାଣିତ ସ୍ରଷ୍ଟାଙ୍କ ସର୍ଜନାତ୍ମକ ସୃଷ୍ଟିରେ । କବିଗଣ କଳାର ସାଥିସାଜି ନିଜର ବ୍ୟାକୁଳତା ଉଦ୍ଦୀପନାକୁ ରୂପାନ୍ତରିତ କରିଛନ୍ତି । ତାଙ୍କର ଲେଖନୀରୁ ଉତ୍ତରିତ ହୋଇଛି ଅଜସ୍ର କାବ୍ୟ-କବିତା ।

ଓଡ଼ିଶାର କବିତା ମାନଚିତ୍ରରେ ଖୋରଧା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଏହାର ପାଣି, ପବନ, ଇତିହାସ, ପୁରାଣ ଚରିତ୍ରକୁ ନେଇ କାବ୍ୟଶିଳ୍ପୀ ତାର ମୂର୍ଚ୍ଛନାରେ ପରିପ୍ଳାବିତ କରିଛି ଅଜସ୍ର କବିତାର ଧାରା ଓ ସାହିତ୍ୟ ପରିପୁଷ୍ଟ ହୋଇଛି । କାବ୍ୟକବିତାର ମହକରେ ଖୋରଧା ମହିମାନ୍ୱିତ । ବହୁ କବିଙ୍କ ଲେଖନୀର ଝଲକରେ ସାହିତ୍ୟ ଆତ୍ମିକ ଓ ଆଙ୍ଗିକରେ ବିକଶିତ ହୋଇଛି । ଜୀବନର ସକଳ ଦିଗରେ ରକ୍ତତୀର୍ଥ ଖୋରଧା ନବଦିଗନ୍ତ ଦେଖାଇଛି । କବି ଭୂପତି ପଣ୍ଡିତଙ୍କଠାରୁ ଆରମ୍ଭ କରି ଅଦ୍ୟାବଧି ଯେତେ ସବୁ ଲେଖକ ତାଙ୍କ ଲେଖନୀରୁ ସୃଷ୍ଟି କରିଛନ୍ତି

କାବ୍ୟ-କବିତା, ସେଗୁଡ଼ିକ ସମଗ୍ରରାଜ୍ୟବାସୀଙ୍କୁ କରିଛି ବିମୋହିତ । ଖୋରଧାର କେତେଜଣ କବିଙ୍କ ସମ୍ବନ୍ଧରେ ନିମ୍ନରେ ସଂକ୍ଷିପ୍ତ ଭାବରେ ଆଲୋଚନା କରାଗଲା ।

ଭୂପତି ପଣ୍ଡିତ ଥିଲେ ସପ୍ତଦଶ ଶତାବ୍ଦୀର କବି । ସେ ଥିଲେ ପଶ୍ଚିମା ସାରସ୍ୱତ ବ୍ରାହ୍ମଣ । ସେ ତୀର୍ଥାଟନରେ ଆସି ଶ୍ରୀକ୍ଷେତ୍ରରେ ବସବାସ କରୁଥିବା କାଳରେ ପୁରୀର ଚୈତନ୍ୟ ଦାସ ନାମକ ଜଣେ ବୈଷ୍ଣବଙ୍କ ଦ୍ୱାରା ଦୀକ୍ଷିତ ହେଲେ । ଦିବ୍ୟସିଂହ ଦେବ ତାଙ୍କୁ ପୃଷ୍ଠପୋଷକତା କରି ପୁରୀଜିଲ୍ଲା ଅନ୍ତର୍ଗତ ରଥିପୁରଗଡ଼ଠାରେ ତାଙ୍କୁ ଜମି ଖଞ୍ଜା ଦେଇ ଥଇଥାନ କରାଇଥିଲେ । ଏହା ମୁସଲମାନ ଓ ମରହଟ୍ଟା ଶାସନକାଳରେ ଖୋରଧା ରାଜାମାନଙ୍କର ରାଜଧାନୀ ଥିଲା । ରଥିପୁରଗଡ଼ ଥିଲା ତାଙ୍କ ସାରସ୍ୱତ ସାଧନାର କ୍ଷେତ୍ର । ସେ ଗଜପତି ଦିବ୍ୟସିଂହ ଦେବ ଏବଂ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ସାମସମୟିକ କବି ଅଟନ୍ତି । ତାଙ୍କର ଅନବଦ୍ୟ ସୃଷ୍ଟି ହେଉଛି "ପ୍ରେମ-ପଞ୍ଚାମୃତ" । ଏଥିରେ ରହିଛି ୧୦ଟି ଅଧ୍ୟାୟ । ଏହି ଗ୍ରନ୍ଥଟି 'ଭାଗବତବାଣୀ ବୃତ୍ତ'ରେ ରଚିତ । ତାଙ୍କଦ୍ୱାରା "ଉଦ୍ଧବ ଚଉତିଶା" ଓ "ଭୂପତି ଚଉତିଶା" ନାମରେ ଦୁଇଟି ଚଉତିଶା ମଧ୍ୟ ରଚିତ ।

ପୁରୁଷୋତ୍ତମ ଦାସ ସପ୍ତଦଶ ଶତାବ୍ଦୀର କବି ଥିଲେ । ତାଙ୍କ "କାଞ୍ଚିକାବେରୀ" କାବ୍ୟଟି ରଚିତ ହୋଇଛି ସୂର୍ଯ୍ୟବଂଶୀ ରାଜା ପୁରୁଷୋତ୍ତମ ଦେବଙ୍କ 'କାଞ୍ଚି ଅଭିଯାନ' ଅବଲମ୍ବନରେ । ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ପରି ଗୋଟିଏ ଐତିହାସିକ ଘଟଣା ସହିତ 'ମାଣିକ ଗଉଡୁଣୀ ଉପାଖ୍ୟାନ'କୁ ଯୋଗକରି ସେ ଏହି କାବ୍ୟଟି ରଚନା କରିଥିବାରୁ ଏଥିରେ ଐତିହାସିକତା ଓ କାଳ୍ପନିକତାର ଅପୂର୍ବ ସମନ୍ୱୟ ଘଟିଛି । ଏହାକୁ ଆଲୋଚକମାନେ ପ୍ରଥମ ଐତିହାସିକ କାବ୍ୟ ଭାବରେ ଗ୍ରହଣ କରୁଛନ୍ତି । ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ରଚିତ ଏହି କାବ୍ୟଟିରେ କ୍ଷୁଦ୍ର କ୍ଷୁଦ୍ର ସାତଟି ଛାନ୍ଦ ରହିଛି । "ଗଙ୍ଗା ମାହାତ୍ମ୍ୟ" ଓ "କାଞ୍ଜିଓଳା ବ୍ରତ" କ୍ଷୁଦ୍ର ଗ୍ରନ୍ଥଦ୍ୱୟ ଆଲୋଚ୍ୟ କବିଙ୍କ ନାମରେ ଦେଖିବାକୁ ମିଳେ ।

ବୃନ୍ଦାବତୀ ଦାସୀ ଥିଲେ ଅଷ୍ଟାଦଶ ଶତାବ୍ଦୀର କବି । ତାଙ୍କୁ ଓଡ଼ିଆ ସାହିତ୍ୟର ଆଦିନାରୀ କବିର ଆଖ୍ୟା ପ୍ରଦାନ କରାଯାଇଛି । ଖୋର୍ଦ୍ଧା ମଳିପଡ଼ାର ଏକ ବୈଷ୍ଣବ ପରିବାରରେ ବିବାହ କରିଥିଲେ । ଏଠାରେ ଅବସ୍ଥାନ କରୁଥିବା ସମୟରେ ତାଙ୍କର କବିତ୍ୱର ସ୍ଫୁରଣ ଘଟିଥିଲା । ଏହି ସ୍ଥାନ ହିଁ ଥିଲା ତାଙ୍କର ସାହିତ୍ୟ ସାଧନାର କ୍ଷେତ୍ର । ମଳିପଡ଼ା ଗ୍ରାମ ସମ୍ପର୍କରେ ଲେଖିଛନ୍ତି- ଗୃହ ମୋହର ମଳି ପଡ଼ା, କ୍ଷେତ୍ରକୁ ଦୁଇ ଯୁଣ ଛଡ଼ା । ତାଙ୍କର ଏକମାତ୍ର ସାରସ୍ୱତ କୃତି ହେଉଛି "ପୂର୍ଣ୍ଣତମ

ଚନ୍ଦ୍ରୋଦୟ" କାବ୍ୟ । ଏହି ଗ୍ରନ୍ଥଟି ଶ୍ରୀକୃଷ୍ଣଙ୍କର କୈଶୋରଲୀଳା ଆଧାରିତ ଏକ ସାର୍ଥକ ବୈଷ୍ଣବ ଗ୍ରନ୍ଥ ଅଟେ । ଏହି କାବ୍ୟ ଭାଗବତର ନବାକ୍ଷରୀ ବୃତ୍ତରେ ରଚିତ ଏବଂ କୋଡ଼ିଏ ଅଧ୍ୟାୟ ବିଶିଷ୍ଟ ରଚନା ଅଟେ । ଏହାର ଭାଷା ଅତ୍ୟନ୍ତ ସରଳ ଓ ସାବଲୀଳ । ଗ୍ରନ୍ଥଟିର ପରିସମାପ୍ତି ୧୬୯୯ ଖ୍ରୀଷ୍ଟାବ୍ଦ ବୋଲି କବି ଉଲ୍ଲେଖ କରିଛନ୍ତି । ବୃନ୍ଦାବତୀ ଦାସୀଙ୍କ ବଂଶରେ ସମସ୍ତେ କବି ଥିଲେ । ତାଙ୍କର ଶ୍ୱଶୁର ଜଗନ୍ନାଥ ଦାସ କେତେକ କ୍ଷୁଦ୍ର ଭକ୍ତିକବିତା ରଚନା କରିଥିଲେ । ତାଙ୍କ ସ୍ୱାମୀ ଚନ୍ଦ୍ରଶେଖର ମହାପାତ୍ରଙ୍କ ଦ୍ୱାରା ରଚିତ "ଶ୍ରୀକୃଷ୍ଣତତ୍ତ୍ୱ ଚନ୍ଦ୍ରୋଦୟ" ଗୋଟିଏ କୃଷ୍ଣକାବ୍ୟ ଅଟେ । ତାଙ୍କ ପୁତ୍ର ଭୀମଦାସଙ୍କ ଦ୍ୱାରା ରଚିତ "ହରିଭକ୍ତି ଚନ୍ଦ୍ରୋଦୟ" ଓ "ଭକ୍ତି ରତ୍ନାବଳୀ" ଦୁଇଟି ତତ୍ତ୍ୱପୂର୍ଣ୍ଣ ବୈଷ୍ଣବଗ୍ରନ୍ଥ ଅଟେ । ତାଙ୍କ ନାତି ତଥା ଭୀମଦାସଙ୍କ ପୁତ୍ର କୃପାସିନ୍ଧୁ ଦାସ ୨୫ଛାନ୍ଦ ବିଶିଷ୍ଟ "ଉପାସନା ଚନ୍ଦ୍ରୋଦୟ" ଲେଖିଥିଲେ ।

ଭକ୍ତକବି ଭକ୍ତଚରଣ ଦାସ ସମ୍ଭବତଃ ୧୭୨୯ରେ ଖୋର୍ଦ୍ଧାର ସାନପଦର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ନାମ ଥିଲା ବୈରାଗୀଚରଣ ଓ ସନ୍ନ୍ୟାସ ଗ୍ରହଣ କରିବାପରେ ସେ ପରିଚିତ ହେଲେ ଭକ୍ତଚରଣ ନାମରେ । ତାଙ୍କ ଲେଖନୀରୁ ନିଃସୃତ ହୋଇଥିଲା "ମଥୁରାମଙ୍ଗଳ", "ଗୋପମଙ୍ଗଳ", "ମନଃଶିକ୍ଷା", "କଳାକଳେବର ଚଉତିଶା", "ମନବୋଧ ଚଉତିଶା", "ବୈଦ୍ୟଶାସ୍ତ୍ର" । ମଥୁରାମଙ୍ଗଳ କବିଙ୍କର ସର୍ବଶ୍ରେଷ୍ଠ ରଚନା ଅଟେ । ଏହା ତିରିଶ ଛାନ୍ଦବିଶିଷ୍ଟ କାବ୍ୟ ଅଟେ । ଏହା ଏକାଧାରରେ ବାତ୍ସଲ୍ୟ, ଭକ୍ତି, କରୁଣ, ଶାନ୍ତ ଓ ଶୃଙ୍ଗାର ରସରେ ସମୃଦ୍ଧ ।

ଗୌରଚରଣ ଅଧିକାରୀ (୧୮୧୪-୧୮୯୦) ଖୋର୍ଦ୍ଧାର ଲେହଙ୍ଗ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଥିଲେ ବୈଷ୍ଣବ କବି । ସେ ରଚନା କରିଥିଲେ "ରାମ-କୃଷ୍ଣ-ଜଗନ୍ନାଥ ଲୀଳାତ୍ମକ" ଚଉପଦୀ, ଜଣାଣ, ଭଜନ, କୀର୍ତ୍ତନ, ଚଉତିଶା ଇତ୍ୟାଦି । "ଗୌରକୃଷ୍ଣ ଭଜନ ଶତକ" ଓ "ଗୌରଚରଣ ଗୀତାବଳୀ"ରେ ତାଙ୍କର ବହୁ କବିତା ସ୍ଥାନିତ ହୋଇଛି । ଏତଦ୍‌ବ୍ୟତୀତ "ଆଠରସ", "ପଞ୍ଚସ୍ପୃହ", "ପଶାଖେଳ", "ଚମତ୍କାର ଚନ୍ଦ୍ରିକା", "ଶରତରାସ" ଓ "ଅଦ୍ୱୈତ ମଙ୍ଗଳ" ଇତ୍ୟାଦି ତାଙ୍କର କେତୋଟି ରଚନା ଅପ୍ରକାଶିତ । ଅନୁପ୍ରାସ, ଯମକ ଇତ୍ୟାଦି ବିଭିନ୍ନ ଅଳଙ୍କାର ପ୍ରୟୋଗପୂର୍ବକ ନିଜ ସଙ୍ଗୀତକୁ ସେ ମନୋମୁଗ୍ଧକର ଓ ହୃଦୟସ୍ପର୍ଶୀ ଶୈଳୀରେ ରଚନା କରିଛନ୍ତି ।

ବାଙ୍କାଦାଶ (ଆନୁମାନିକ ୧୮୭୬-୧୯୩୭) ଖୋର୍ଦ୍ଧାର ଗୋଳବାଇ

ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଥିଲେ ଏକାଧାରରେ ପାଲାଗାୟକ ଓ କବି । ଜଣେ ଆଶୁକବି ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ରୀତିଯୁଗୀୟ କାବ୍ୟଶୈଳୀ ଅନୁସରଣରେ ନାନା ଅନୁପ୍ରାସ, ଯମକ, ଅଳଙ୍କାର, ଇତ୍ୟାଦି ସାହାଯ୍ୟରେ ପଦ୍ୟ ରଚନା କରିବାରେ ସେ ପାରଗ ଥିଲେ । ବହୁ ଚଉପଦୀ ଓ କ୍ଷୁଦ୍ରକବିତା ସେ ରଚନା କରିଥିଲେ । ତାଙ୍କର ବହୁ ଛନ୍ଦୋବଦ୍ଧ କବିତା ଓ ଚଉପଦୀ "ବାଙ୍କାଦାଶ ସଞ୍ଚୟନ" ନାମରେ ପ୍ରକାଶ ଲାଭ କରିଛି ।

ଗୋକୁଳାନନ୍ଦ ପଟ୍ଟନାୟକ (୧୮୮୩-୧୯୪୬) ଖୋର୍ଦ୍ଧାର ରାମେଶ୍ୱର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଓଡ଼ିଶାରେ ରାମକାବ୍ୟ ଧାରାର ସେ ଜଣେ ପ୍ରତିଭାବାନ କବି ଅଟନ୍ତି । ସେ ରଚନା କରିଥିଲେ "ଜାନକୀବଲ୍ଲଭ ବିଳାସ" କାବ୍ୟ । ଏହା ୪୮ ଛାନ୍ଦବିଶିଷ୍ଟ ଅଟେ । ଏହାବ୍ୟତୀତ ବହୁଛାନ୍ଦ, ଚଉପଦୀ, କାବ୍ୟ-କବିତା ତାଙ୍କ କଲମ ମୁନରେ ରୂପ ପାଇଥିଲା, ଯେଉଁଥିମଧ୍ୟରୁ ଅନେକ ଏ ପର୍ଯ୍ୟନ୍ତ ଅପ୍ରକାଶିତ । ବଙ୍ଗଳାଶ୍ରୀ ରାଗରେ ରଚିତ "ସାକ୍ଷୀଗୋପାଳ", "ମନ୍ଦାକିନୀ", "ଗଜଉଦ୍ଧାରଣ" ପ୍ରଭୃତି ସଂକଳିତ ଓ ପ୍ରକାଶିତ । ତାଙ୍କର ଗ୍ରନ୍ଥାବଳୀ ମଧ୍ୟ ପ୍ରକାଶ ପାଇସାରିଛି ।

ପଣ୍ଡିତ ଗୋଦାବରୀଶ ମିଶ୍ର (୧୮୮୬-୧୯୫୬) ବାଣପୁରଠାରେ ଜନ୍ମ ଗ୍ରହଣ କରିଥିଲେ । ସେ ଥିଲେ ଏକାଧାରରେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ଅନୁବାଦକ, ଜୀବନୀକାର ଏବଂ ଶିଶୁସାହିତ୍ୟିକ । ସେ ସତ୍ୟବାଦୀ ଗୋଷ୍ଠୀର କବିମାନଙ୍କ ମଧ୍ୟରୁ ଜାତୀୟ ଭାବବ୍ୟଞ୍ଜକ କବିତା ରଚନାରେ ସବୁଠାରୁ ବେଶି ସଫଳତା ଲାଭ କରିଥିଲେ । ତାଙ୍କର ଜୀବନ ଥିଲା ତ୍ୟାଗ, ଆଦର୍ଶବାଦ, ରାଷ୍ଟ୍ରବାଦ ଏବଂ ଜାତୀୟବାଦର ଆଲେଖ୍ୟ । ସେ ଥିଲେ ଜଣେ ସଫଳ ଜାତୀୟବାଦୀ କବି । ତାଙ୍କର କୃତିଗୁଡ଼ିକ ହେଉଛି- "କଳିକା", "କିଶଳୟ", "ଆଲେଖିକା", "ଚୟନିକା","କୁସୁମ", "କବିତାୟନ", "ଗୀତାୟନ", "ଗୀତିଗୁଚ୍ଛ" ଓ "ଶିଶୁକବିତା" । "ଆଲେଖିକା" ହେଉଛି ସାର୍ଥକ ଗାଥା କବିତା ସଙ୍କଳନ ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ (୧୮୯୭-୧୯୭୮) ଏକାଧାରରେ ଥିଲେ ଔପନ୍ୟାସିକ, କବି, ନାଟ୍ୟକାର, ନାଟ୍ୟଗୁରୁ, ନିର୍ଦ୍ଦେଶକ, ସଙ୍ଗୀତକାର, ଅଭିନେତା, ଜୀବନୀକାର । ତାଙ୍କର ପ୍ରକାଶିତ କେତୋଟି କବିତା ପୁସ୍ତକ ହେଉଛି "କଳାହାଣ୍ଡିଆ ମେଘ", "ବରଣମାଳା", "ବାୟାଧନଟି" ପ୍ରଭୃତି । ସ୍କୁଲ ଛାତ୍ର ଥିବାବେଳେ 'ଉଦୁଉଦୁମା' ନାମରେ ତାଙ୍କର ପ୍ରଥମ କବିତା ପ୍ରକାଶିତ ହୋଇଥିଲା ।

ଗୋଦାବରୀଶ ମହାପାତ୍ର (୧୮୯୮-୧୯୬୫) ଥିଲେ ଏକାଧାରରେ କବି, ଗାଳ୍ପିକ, ଔପନ୍ୟାସିକ, ପ୍ରାବନ୍ଧିକ, ନାଟ୍ୟକାର, ଶିଶୁସାହିତ୍ୟିକ, ଜୀବନୀକାର, ପତ୍ରିକାର ସମ୍ପାଦକ । ସେ ଆଧୁନିକ ଓଡ଼ିଶାର ଶ୍ରେଷ୍ଠ ଚାରଣ କବି । ତାଙ୍କର କୃତିଗୁଡ଼ିକ ହେଉଛି- "ବାଣପୁର", "ପ୍ରଭାତ କୁସୁମ", "ଉଠକଙ୍କାଳ", "ହେ ମୋର କଲମ", "ହାଣ୍ଡିଶାଳର ବିପ୍ଳବ", "କଣ୍ଟା ଓ ଫୁଲ", "ପାହାଚତଳର ଘାସ", "ବଙ୍କା ଓ ସିଧା", "ଯେ ଫୁଲ ଫୁଟିଥିଲା" ଏବଂ "ରୂପରେଖା" । ତାଙ୍କର "ବଙ୍କା ଓ ସିଧା" କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଏବଂ "କଣ୍ଟା ଓ ଫୁଲ" ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । ସେ ବହୁ ସାଟାୟାରଧର୍ମୀ କବିତାର ସ୍ରଷ୍ଟା ଅଟନ୍ତି । "ଉଠ କଙ୍କାଳ" ଉଦ୍‌ବୋଧନମୂଳକ କବିତାଟି ତାଙ୍କର ଏକ ଅମ୍ଳାନ କୃତି ।

କୁନ୍ତଳାକୁମାରୀ ସାବତ (୧୯୦୦-୧୯୩୮) ଏକାଧାରରେ ଥିଲେ କବି ଓ ଔପନ୍ୟାସିକା । ମାତ୍ର ୩୮ ବର୍ଷ ପାଇଁ ଆସିଥିଲେ ଏ ସଂସାରକୁ । ସେହି ୩୮ ବର୍ଷରୁ ଓଡ଼ିଶାରେ ମାତ୍ର ସାତବର୍ଷ ଅବସ୍ଥାନ କରିଥିଲେ । ଏହି ସାତବର୍ଷ ରହିବା ଭିତରେ ସେ ଯେଉଁ ସାହିତ୍ୟ ସୃଷ୍ଟି କରିଯାଇଛନ୍ତି, ତାହା ଅତୁଳନୀୟ । ତାଙ୍କର କବିତା ସଂକଳନଗୁଡ଼ିକ ହେଉଛି- "ଅଞ୍ଜଳି", "ଉଚ୍ଛ୍ୱାସ", "ଅର୍ଚ୍ଚନା", "ସ୍ଫୁଲିଙ୍ଗ", "ଆହ୍ୱାନ" ଏବଂ "ପ୍ରେମଚିନ୍ତାମଣି" । "ଅଞ୍ଜଳି"ରେ ରହିଛି ୧୦୫ଟି କବିତା, "ଉଚ୍ଛ୍ୱାସ"ରେ ରହିଛି 'ଶେଫାଳିପ୍ରତି', 'ଚନ୍ଦ୍ରପ୍ରତି', 'କାମିନୀପ୍ରତି', 'କମଳପ୍ରତି', 'ତାରାପ୍ରତି', 'ସହକାରପ୍ରତି' ପ୍ରଭୃତି ୬ଟି ସମ୍ବୋଧନ ଗୀତିକା । "ସ୍ଫୁଲିଙ୍ଗ"ରେ ବହୁ ଦେଶାତ୍ମବୋଧକ ଓ ଉଦ୍‌ବୋଧନମୂଳକ କବିତା ସ୍ଥାନ ପାଇଛି । "ଆହ୍ୱାନ" ଗୋଟିଏ ଦୀର୍ଘ କବିତା ଅଟେ । ଏଥିରେ କବିଙ୍କର ଦେଶାତ୍ମବୋଧ, ବିଦେଶୀ ଶାସନ ପ୍ରତି ଘୃଣା, ଦେଶବାସୀଙ୍କର ଦାରିଦ୍ର୍ୟ, ରାଜରାଜୁଡ଼ାମାନଙ୍କର ବିଳାସବ୍ୟସନ କଥା ବର୍ଣ୍ଣିତ । "ପ୍ରେମ ଚିନ୍ତାମଣି" କେତେକ ଆବେଗଧର୍ମୀ କବିତାର ସମାହାର ଅଟେ । ଏହାବ୍ୟତୀତ "ଓଡ଼ିଆଙ୍କ କାନ୍ଦଣା", "ଗଡ଼ଜାତ କୃଷକ", "ମଣିକାଞ୍ଚନ", "ମେଡିକାଲ ସ୍କୁଲ", "ବରଷାପ୍ରତି", "ବିଜନ ଚିନ୍ତା" ପ୍ରଭୃତି କବିତା ବେଶ୍ ଲୋକପ୍ରିୟ ଅଟେ ।

ମାୟାଧର ମାନସିଂହ (୧୯୦୫-୧୯୭୩) ଚିଲିକା ମଧ୍ୟସ୍ଥ ପାରିକୁଦ ନିକଟସ୍ଥ ନନ୍ଦଳା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଏକାଧାରରେ ଥିଲେ କବି, ପ୍ରାବନ୍ଧିକ, ନାଟ୍ୟକାର, ଔପନ୍ୟାସିକ, ଅନୁବାଦକ, ସମାଲୋଚକ, ଭ୍ରମଣ କାହାଣୀକାର, ଜୀବନୀକାର ଏବଂ ପତ୍ରପତ୍ରିକାର ସମ୍ପାଦକ । ସେ ବିଲାତର ଡରହାମ୍

ବିଶ୍ୱବିଦ୍ୟାଳୟରୁ କାଳିଦାସ ଓ ସେକ୍ସପିଅରଙ୍କ ଉପରେ ତୁଳନାତ୍ମକ ଗବେଷଣା ନିବନ୍ଧ ପ୍ରସ୍ତୁତ କରି ଡକ୍ଟରେଟ୍ ଡିଗ୍ରୀ ଲାଭ କରିଥିଲେ । ତାଙ୍କର କବିତା ଗ୍ରନ୍ଥଗୁଡ଼ିକ ହେଉଛି "ଧୂପ", "ହେମପୁଷ୍ପ", "ହେମଶସ୍ୟ", "କୋଣାର୍କ", "ବାପୁତର୍ପଣ", "ଅକ୍ଷତ", "ମାଟି-ବାଣୀ", "ଜୀବନ-ଚିତା", "କୁଶ", "ସିନ୍ଧୁ ଓ ବିନ୍ଦୁ", "ସ୍ୱରାଜ୍ୟାଶ୍ରମ", "ଗୀତରେଣୁ", "କିଶୋର କବିତା", "ସାଧବ ଝିଅ", "କମଳାୟନ" ଇତ୍ୟାଦି । ତାଙ୍କ କବିତାଗୁଡ଼ିକ ମୁଖ୍ୟତଃ ରୋମାଣ୍ଟିକ୍‌ଧର୍ମୀ । ତାଙ୍କ କବିତାଗୁଡ଼ିକରେ ରହିଛି ଉତ୍କଳପ୍ରୀତି, ପ୍ରକୃତିପ୍ରାଣତା ପରମ୍ପରା ଓ ଐତିହ୍ୟର ସ୍ତୁତିଚାରଣ, ସ୍ୱଦେଶ ପ୍ରାଣତା, ମାନବୀୟ ପ୍ରେମାନୁଭୂତି ଏବଂ ଇନ୍ଦ୍ରିୟାତୀତ ଅନୁଭୂତି ।

ଡମ୍ବରୁଧର ପରିଡ଼ା (୧୯୦୯-୧୯୮୪) ଖୋର୍ଦ୍ଧାର ଗୋଳବାଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର କବିତା ସଙ୍କଳନଗୁଡ଼ିକ ହେଉଛି "କବିତା ମଞ୍ଜରୀ", "ତ୍ରିବେଣୀ", "ପ୍ରଦୀପ" ପ୍ରଭୃତି । ତାଙ୍କ କବିତାରେ ଆଧୁନିକ ସଭ୍ୟତାର ଅବକ୍ଷୟ ରୂପ, ରାଜନୀତିକ ଜୀବନ ପ୍ରତି ବିଦ୍ରୂପ, ମାନବତାବାଦୀ ଚିନ୍ତାଧାରା, ପଲ୍ଲୀପ୍ରାଣତା ଓ ଉପଦେଶାତ୍ମକତା ଦେଖିବାକୁ ମିଳେ । ସେ କେତେକ ଗାଥାକବିତା ମଧ୍ୟ ସୃଷ୍ଟି କରିଛନ୍ତି ।

କୃଷ୍ଣଚନ୍ଦ୍ର ତ୍ରିପାଠୀ (୧୯୧୧-୯୭) ଥିଲେ ଏକାଧାରରେ ଜଣେ କର୍ତ୍ତବ୍ୟନିଷ୍ଠ ଶିକ୍ଷକ, କବି, ଜୀବନୀକାର, ପତ୍ରିକା ସମ୍ପାଦକ । ସେ ଛାତ୍ରାବସ୍ଥାରେ ତାଙ୍କର ସହପାଠୀ ଶ୍ୟାମସୁନ୍ଦର ପାଣିଗ୍ରାହୀଙ୍କ ସହଯୋଗରେ "ହିନ୍ଦୁ", "ମାନବମିତ୍ର" ଓ "କଳିକା" ନାମରେ ହାତଲେଖା ପତ୍ରିକାମାନ ପ୍ରକାଶ କରିଥିଲେ । ତାଙ୍କର ପ୍ରକାଶିତ କବିତାଗ୍ରନ୍ଥଗୁଡ଼ିକ ହେଉଛି- "ଦୀପ୍ତି", "ଆହୁତି", "ଅଗ୍ନିଶଙ୍ଖ", "ମାଟିଦୀପ", "ଦିଗ୍‌ବଳୟ", "ଉତ୍ସ", "ରୂପାୟନ", "ସାଧକର ସ୍ୱପ୍ନ", "ବେଳା ଓ ବୀଚି", "ସଙ୍କେତ", "ଆତ୍ମଲିପି", "ପଥରେଣୁ", "ମରୁମାଟିର ସ୍ୱପ୍ନ", "ପାଇକ ମାଟିର ଗାଥା", "ଗୋଧୂଳି", "ନିଶବ୍ଦର ଡାକ", "କୁଟୀର ବଂଶୀ", "ପଲ୍ଲୀ ପଥିକ", "ତରୁ ଓ ତୃଣ" ଇତ୍ୟାଦି । କବିଙ୍କ କବିତାରେ ପ୍ରଧାନତଃ ଜାତୀୟବାଦୀ ଚେତନା, ମାନବବାଦୀ ଚେତନା, ସାମ୍ୟବାଦୀ ଚେତନା ଲକ୍ଷ୍ୟ କରାଯାଇପାରେ । ତାଙ୍କ କବିତାର ବୈଶିଷ୍ଟ୍ୟ ହେଉଛି ସରଳ ସାବଲୀଳ ଭାଷା ଓ ବୌଦ୍ଧିକତାବିହୀନ ଭାବଧାରା ।

ଅନନ୍ତ ପଟ୍ଟନାୟକ (୧୯୧୨-୮୭) ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ

ଜଣେ ବିପ୍ଳବୀ ଓ ପ୍ରଗତିଶୀଳ କବି । ସେ ଥିଲେ ଏକାଧାରରେ କବି, ଗାଳ୍ପିକ, ଅନୁବାଦକ, ଶିଶୁ ସାହିତ୍ୟିକ, ନାଟ୍ୟକାର । ୧୯୪୦ରେ କମ୍ୟୁନିଷ୍ଟ କନ୍‌ସ୍ପିରାସି ଅଭିଯୋଗରେ ଦୁଇବର୍ଷ ପାଇଁ ତାଙ୍କୁ କାରାବାସ କରିବାକୁ ପଡ଼ିଥିଲା । ତାପରେ ତାଙ୍କ କାବ୍ୟମାନସ ରାଜନୀତିକ ଦର୍ଶନାଭିମୁଖୀ ହୋଇ ସାମାଜିକ ଓ ଆର୍ଥନୀତିକ ପରିସ୍ଥିତି ବିରୋଧରେ ପ୍ରଚଣ୍ଡ ପ୍ରତିକ୍ରିୟା ପ୍ରକାଶ କଲା, ଫଳରେ ସେ ହୋଇପଡ଼ିଲେ ଗଣସଂଗ୍ରାମର ଜଣେ ଆପୋଷହୀନ ଯୋଦ୍ଧା । ତାଙ୍କ କବିତାରେ ବିପ୍ଳବର ଆହ୍ୱାନ ଶୁଣାଯାଏ, ଯାହା ଯଥାର୍ଥରେ ମାର୍କସ ପ୍ରଦର୍ଶିତ ସାମ୍ୟବାଦ ପ୍ରତିଷ୍ଠା ନିମନ୍ତେ ଏକ ମାର୍ଗ ମାତ୍ର । ତାଙ୍କର "ରକ୍ତଶିଖା", "ଶାନ୍ତିଶିଖା", "କିଂଶୁକ", "ଅଲୋଡ଼ାଲୋଡ଼ା", "ଛାଇର ଛିଟା", "ଉଠ ଜାଗ ଭୋକ ବନ୍ଦୀ", "ଅରତୁ ରତୁ", "ଅବାନ୍ତର", "ତର୍ପଣ କରେ ଆଜି", "ସୂତ୍ରଟିଏ ସୁକୃତିର" ଇତ୍ୟାଦି କବିତା ସଂକଳନ ପ୍ରକାଶ ପାଇଛି ।

ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ (୧୯୧୩-୨୦୦୪) ଖୋର୍ଦ୍ଧାର ଗୁରୁଜଙ୍ଗ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଏକାଧାରରେ ଥିଲେ କବି, ଗାଳ୍ପିକ, ଔପନ୍ୟାସିକ, ସମାଲୋଚକ, ନାଟ୍ୟକାର, ଜୀବନୀକାର । ଓଡ଼ିଆ ସାହିତ୍ୟରେ ପ୍ରଥମ ମୋଡ଼ ସୃଷ୍ଟି କରିଥିଲେ ଯୁଗପ୍ରବର୍ତ୍ତକ ରାଧାନାଥ ରାୟ । ସେହିପରି ସାହିତ୍ୟରେ ଦ୍ୱିତୀୟ ମୋଡ଼ ସୃଷ୍ଟି କରିବାରେ ସଚ୍ଚି ରାଉତରାୟ ସ୍ମରଣୀୟ । ସେ ଓଡ଼ିଆ ସାହିତ୍ୟରେ ଯଥାର୍ଥରେ ଆଧୁନିକତାର ବାର୍ତ୍ତାବହ, ଜଣେ ସଫଳ ପ୍ରଗତିବାଦୀ କବି ଏବଂ ଭାରତର ସାଂସ୍କୃତିକ ପ୍ରତିନିଧି ଥିଲେ । ସେ ଓଡ଼ିଆ କବିତା କ୍ଷେତ୍ରରେ ନୂତନଧାରା ସୃଷ୍ଟି କରିଥିଲେ । ଉଭୟ କବିତାର ଆଙ୍ଗିକ ଓ ଥିମ୍‌ରେ ସେ ନୂତନ ପରୀକ୍ଷା ଓ ପ୍ରୟୋଗ କରିଥିବାରୁ ତାଙ୍କୁ ଆଧୁନିକତାର ପ୍ରବର୍ତ୍ତକ ବୋଲି ନିରୂପଣ କରିବା ଯଥାର୍ଥ ମନେ ହୁଏ । ସେ କବିତା କ୍ଷେତ୍ରରେ ବିଭିନ୍ନ ଛନ୍ଦର ପ୍ରୟୋଗ କରିଛନ୍ତି, ଯଥା- ପୟାର ଜାତୀୟ ଛନ୍ଦ, ମିଶ୍ରିତ ଛନ୍ଦ, ବାକ୍‌ଛନ୍ଦ, ଗଦ୍ୟଛନ୍ଦ, ଗଦ୍ୟଧର୍ମୀ ଛନ୍ଦ ପ୍ରଭୃତି । ତାଙ୍କର କବିତା ଗ୍ରନ୍ଥଗୁଡ଼ିକ ହେଉଛି "ପାଥେୟ", "ପୂର୍ଣ୍ଣିମା", "ବାଜିରାଉତ", "ପଲ୍ଲୀଶ୍ରୀ", "ପାଣ୍ଡୁଲିପି", "ଅଭିଯାନ", "ହସନ୍ତ", "ଅଭିଜ୍ଞାନ", "ଭାନୁମତୀର ଦେଶ", "ସ୍ୱଗତ", "ଏସିଆର ସ୍ୱପ୍ନ", "କବିତା-୧୯୬୨", "କବିତା-୧୯୬୯", "କବିତା-୧୯୭୧", "କବିତା-୧୯୭୪", "କବିତା-୧୯୮୩", "କବିତା-୧୯୮୫", "କବିତା-୧୯୮୭", "କବିତା-୧୯୯୦", "କବିତା-୧୯୯୪", "କବିତା-୨୦୦୪" । ତାଙ୍କର "ବାଜିରାଉତ", "ପ୍ରତିମା ନାୟକ" ଏବଂ "ଛୋଟ ମୋର ଗାଁଟି" ପ୍ରଭୃତି କବିତା ଗୋଟିଏ ଗୋଟିଏ ମାଇଲଖୁଣ୍ଟ ଅଟନ୍ତି ।

ଲକ୍ଷ୍ମୀଧର ନାୟକ (୧୯୧୩-୨୦୦୪) ଥିଲେ ଏକାଧାରରେ ବିପ୍ଳବୀ, କବି, ପ୍ରାବନ୍ଧିକ, ଅନୁବାଦକ, ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର । ତାଙ୍କ ସୃଷ୍ଟିର ସର୍ବତ୍ର ଦେଖିବାକୁ ମିଳେ ଶୋଷଣହୀନ ସମାଜ ପ୍ରତିଷ୍ଠାର ଆହ୍ୱାନ । "ଖୋଲାଝର୍କା", "ବିରହିଣୀ ଓ ଅନ୍ୟାନ୍ୟ କବିତା", "କ୍ୱଚିତ୍ ଜ୍ୟୋତ୍ସ୍ନା", "ଉତ୍ତର ବସନ୍ତ" ପ୍ରଭୃତି କବିତା ସଙ୍କଳନ ତାଙ୍କ ଦ୍ୱାରା ସୃଷ୍ଟି । "ଖୋଲାଝର୍କା" କବିତା ସଙ୍କଳନରେ ତାଙ୍କର ବୈପ୍ଳବିକ ବାମପନ୍ଥୀ ଚେତନାର ରୂପାୟନ ଅତି ସ୍ପଷ୍ଟ । ୧୫୦ଟି ଗଜଲରେ ପୁଷ୍ଟ ତାଙ୍କ "ଗଜଲ ଝର୍ଣ୍ଣା" ଓଡ଼ିଆ କାବ୍ୟଜଗତରେ ଏକ ଅମୂଲ୍ୟ ରତ୍ନ ।

ରଘୁନାଥ ଦାସ (୧୯୧୯-୮୪) ହେଉଛନ୍ତି ଏକାଧାରରେ ନାଟ୍ୟକାର, କବି, ବିପ୍ଳବୀ, ଔପନ୍ୟାସିକ, ଗାଳ୍ପିକ, ଅନୁବାଦକ । ସେ ସାମ୍ୟବାଦୀ ଚିନ୍ତାଧାରା ଓ ବୈପ୍ଳବିକ ଚେତନାର ଅନ୍ୟତମ କବି ଅଟନ୍ତି । କବି ଜୀବନର ଆରମ୍ଭରେ ରଚିତ କବିତାରେ ପରିଲକ୍ଷିତ ହୁଏ ରୋମାଣ୍ଟିକ୍ ଅନୁଭୂତି ସହିତ ଦାର୍ଶନିକ ମନନଶୀଳତାର ସମନ୍ୱୟ, ମାତ୍ର ପରେ ସାମ୍ୟବାଦୀ ଚିନ୍ତାଧାରାକୁ ପୁଞ୍ଜି କରି ରଚନା କରିଛନ୍ତି କବିତା । ତାଙ୍କର ଅନେକ କବିତା 'ଶ୍ରୀ ଜଟାୟୁ' ଛଦ୍ମନାମରେ ତତ୍କାଳୀନ ପତ୍ରିକାରେ ପ୍ରକାଶ ପାଇଥିଲା । "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା", "ପୁନଶ୍ଚ", "ଉବାଚ" ତାଙ୍କର ପ୍ରକାଶିତ କେତୋଟି କବିତା ସଙ୍କଳନ ।

ଜାନକୀବଲ୍ଲଭ ପଟ୍ଟନାୟକ (୧୯୨୭) ଏକାଧାରରେ ସାହିତ୍ୟିକ (କବି, ପ୍ରାବନ୍ଧିକ, ଅନୁବାଦକ), ସାମ୍ବାଦିକ, ଜନନାୟକ ଓ ରାଜନୀତିକ ନେତା ଥିଲେ । ତାଙ୍କର ପ୍ରକାଶିତ କବିତା ଗ୍ରନ୍ଥ ହେଉଛି "ସିନ୍ଧୁ ଉପତ୍ୟକା" । ଏଥିରେ ୨୬ଟି କବିତା ସ୍ଥାନ ପାଇଛି । ଏଥିରେ ସଙ୍କଳିତ ଥିବା କବିତାଗୁଡ଼ିକ ମଧ୍ୟରେ ରହିଚି 'ଜ୍ୟୋତିଶିଖା', 'ଫ୍ଲେମିଙ୍ଗୋ', 'ସରୀସୃପ', 'ଚନ୍ଦ୍ର ଓ ଶ୍ୱାନ', 'ଗୋଟିଏ ଲଣ୍ଡା ଗଛ', 'ଭଗ୍ନ ଦେବାଳୟ', 'ସମୁଦ୍ର ବାଲି', 'ପଥର ପାଞ୍ଚାଳୀ', 'ଶିମିଳିପାଳ', 'ସିନ୍ଧୁ ଉପତ୍ୟକା', 'ଅକର୍ମଶିଳା', 'ଶାନ୍ତିର କପୋତ', 'ଖୋରଧାଗଡ଼', 'ମଗୁର ଅଧରେ ଯେ ଫୁଟାଏ ହସ', 'ଆକାଶରେ କେତେ ମେଘ' ପ୍ରଭୃତି । ଏଥି ମଧ୍ୟରେ 'ସିନ୍ଧୁ ଉପତ୍ୟକା' କବିତାଟି ଦୀର୍ଘତମ, ଯାହାର ନାମାନୁସାରେ ସଂକଳନଟି ନାମିତ । ଜୀବନଦର୍ଶନ, ପ୍ରକୃତି ଓ ସୌନ୍ଦର୍ଯ୍ୟଚେତନା, ମାନବପ୍ରୀତି ଏବଂ ସ୍ୱଦେଶପ୍ରୀତିର ଚିତ୍ର ତାଙ୍କ କବିତାରେ ଦେଖିବାକୁ ମିଳେ । ରୁଚିପୂର୍ଣ୍ଣ ଭାଷା, ସାବଲୀଳ ପ୍ରକାଶଭଙ୍ଗୀ ଓ ଉଚ୍ଚାଙ୍ଗ ଦୃଷ୍ଟିକୋଣ ତାଙ୍କୁ ଜଣେ ବିଶିଷ୍ଟ କବିର ପ୍ରତିଷ୍ଠା ଦିଏ ।

ସତ୍ୟାନନ୍ଦ ଚମ୍ପତିରାୟ (୧୯୨୭) ସ୍କୁଲଛାତ୍ର ଥିବାବେଳେ ସେ ରଚନା

କରିଥିଲେ "କାଞ୍ଚିଆଗଡ଼ର ସେକାଳ କଥା କାବ୍ୟ", ଯେଉଁଥିରେ ଏକ ଆଞ୍ଚଳିକ କିମ୍ବଦନ୍ତୀ ରୂପ ପାଇଥିଲା । ତାପରେ ପ୍ରକାଶ ପାଇଥିଲା "ଅଞ୍ଜନ", "ଗାଁ ଗହଳେ", "ତାଜମହଲ ଓ ଯମୁନା" ପ୍ରଭୃତି କବିତାସଂକଳନ । କେତୋଟି କବିତାରେ ସେ ରୋମାଣ୍ଟିକ୍ ଭାବାବେଗକୁ ସୁନ୍ଦର ଭାବରେ ରୂପ ଦେଇଛନ୍ତି । ଏହାବ୍ୟତୀତ ସେ "କୁମାରସମ୍ଭବ", "ଅମର ଶତକ", "ରତିବିଳାପ", "ପ୍ରୀତିଶତକ", "ଗୀତା", "ଶ୍ରୀରାମଚରିତ ମାନସ" ପ୍ରଭୃତି ଗ୍ରନ୍ଥର ଓଡ଼ିଆ ଅନୁବାଦ କରିଛନ୍ତି ।

ସୁରେନ୍ଦ୍ରନାଥ ବିଦ୍ୟାଧର (୧୯୩୫-୨୦୧୩) ଗୀତିକବିତା ରଚନାରେ ବେଶ୍ ସିଦ୍ଧହସ୍ତ । ସବୁ ବୟସର ଓ ସବୁ ଶ୍ରେଣୀର ଶ୍ରୋତାଙ୍କ ପାଇଁ ଗୀତ ଲେଖନ୍ତି । ପଲ୍ଲୀଗୀତ ତାଙ୍କ ଗୀତିକାର ଜୀବନର ପ୍ରଥମ ସୃଷ୍ଟି । ଏଥିରେ ଫୁଟିଉଠେ ପଲ୍ଲୀର ଚିତ୍ର, ଚରିତ୍ର, ଓ ଚଳଣି, ପଲ୍ଲୀପ୍ରକୃତିର ଅପରୂପ ଶୋଭା । ତାଙ୍କର "ସଂଯୁ ଓ ପୃଥ୍ୱୀ", "ମାନସୀ ଓ କୋଣାର୍କ" ଗୀତିଗୁଚ୍ଛଦ୍ୱୟ ପ୍ରକାଶ ପାଇଛି । ଏହାବ୍ୟତୀତ "ଯେଉଁ ଗାଁରେ ଜନ୍ମଉଏଁ" ପଲ୍ଲୀଗୀତି ସଙ୍କଳନଟି ତାଙ୍କ ପଲ୍ଲୀପ୍ରୀତିର ଏକ ମନୋରମ ଆଲେଖ୍ୟ ।

ବିଭୁଦତ୍ତ ମିଶ୍ର (୧୯୩୬-୨୦୦୩) ଏକାଧାରରେ କବି, ସମାଲୋଚକ, ଔପନ୍ୟାସିକ, ଜୀବନୀକାର ଅଟନ୍ତି । ସେ ଜଣେ ରୋମାଣ୍ଟିକ କବି ଭାବରେ ପରିଚିତ । "ଉର୍ବଶୀର ଚିଠି", "ଶହେଟି ସନେଟ୍", "ବିସ୍ମୃତିର ସ୍ମୃତି", "ହେ ସାରଥି ! ରଥ ରଖ", "ସୁପର୍ଣ୍ଣର ସଙ୍ଗୀତ" ପ୍ରଭୃତି କବିତାଗ୍ରନ୍ଥ ପ୍ରକାଶ ପାଇଛି । ସନେଟ୍ ରଚନାରେ ସେ ସାମସମୟିକ କବିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ତାଙ୍କ କବିତାରେ ନାରୀର ପ୍ରେମ-ବିରହ ନେଇ ଆବେଗ-ଉଚ୍ଛ୍ୱାସ ବେଶ୍ ହୃଦ୍ୟ । ତାଙ୍କ କବିତାର ଭାଷା, ଭାବ ଓ ଛନ୍ଦ ବିଭବ ବେଶ୍ ଆକର୍ଷଣୀୟ ।

ଧ୍ରୁବ୍ ଖୁଣ୍ଟିଆ (୧୯୩୯) ଏକାଧାରରେ କବି ଓ ଔପନ୍ୟାସିକ ଅଟନ୍ତି । ସେ ହେଉଛନ୍ତି ରୋମାଣ୍ଟିକ୍ କାବ୍ୟଚେତନାର ଅନ୍ୟତମ କୁଶଳକର୍ମୀ କବି । "ପ୍ରୀତିର ଋତୁ ଇତ୍ୟାଦି", "ଆକୁଳ ଅରଣ୍ୟ", "ବିନ୍ଦୁ ବିସର୍ଗ", "ପୀଡ଼ିତ ପ୍ରଜାପତି", "ପାହାନ୍ତା ପ୍ରହର" ପ୍ରଭୃତି କବିତା ସଙ୍କଳନ ପ୍ରକାଶ ପାଇଛି । ଶୈଳ୍ପିକ ପ୍ରୟୋଗବାଦର ବଳଗଣ୍ଡି ଭିତରେ, ପ୍ରେମର ପ୍ରାର୍ଥନାଜନିତ ମୂଲ୍ୟମାନ ଅଥଚ ବିମୁଗ୍ଧ କବିପ୍ରାଣତା, ତାଙ୍କର କାବ୍ୟପରିଧିକୁ ପ୍ରଦାନ କରିଛି ଏକ ଦିବ୍ୟ ଦ୍ୟୋତନାର ସାର୍ଥକତା । ପ୍ରକୃତି ସହିତ ଜୀବନାନୁଭୂତିକୁ ଯୋଡ଼ିବାରେ ତାଙ୍କର ସଫଳତା ବାରି ହୁଏ ।

ବଂଶୀଧର ଷଡ଼ଙ୍ଗୀ (୧୯୪୦) ଆଧୁନିକ କାଳର ଜଣେ ପ୍ରୟୋଗବାଦୀ

କବି । କବିଙ୍କ ଜୀବନର ଆରମ୍ଭରେ ରଚିତ କବିତାଗୁଡ଼ିକ ରୋମାଣ୍ଟିକ୍ ଚେତନାର ବାର୍ତ୍ତାବହ, ଯାହା କ୍ରମେ ଉତ୍ତରିତ ଆଧ୍ୟାତ୍ମିକତାରେ ପର୍ଯ୍ୟବସିତ । ନୂଆ ନୂଆ ଚିତ୍ରକଳ୍ପ ପ୍ରୟୋଗ ପ୍ରବଣତା ତାଙ୍କ କବିତାର ଏକ ଲକ୍ଷଣୀୟ ଦିଗ । "ସମୟ ଅସମୟ", "ସ୍ଥବିର ଅଶ୍ୱାରୋହୀ", "ଶବରୀଚର୍ଯ୍ୟା", "ଛାୟା-ଦର୍ଶନ", "ଶୂନ୍ୟସଂହିତା ଓ ଅନ୍ୟାନ୍ୟ କବିତା", "ସରୋଦୟ" ଇତ୍ୟାଦି ତାଙ୍କର କବିତାଗ୍ରନ୍ଥ । ତାଙ୍କ କବିତାରାଜିରେ ବିଭିନ୍ନ ଜଟିଳ ଭାବାନୁଭୂତି, ମୃତ୍ୟୁଚେତନା, ଆଧ୍ୟାତ୍ମିକତା ଇତ୍ୟାଦି ପ୍ରତିଫଳିତ ।

ବନଜ ଦେବୀ (୧୯୪୧) ଏକାଧାରରେ କବି, ଗାଳ୍ପିକା, ଔପନ୍ୟାସିକା, ନାଟ୍ୟକାର, ଅନୁବାଦିକା, ଜୀବନୀଲେଖିକା । ସେ ହେଉଛନ୍ତି ସ୍ୱଚ୍ଛନ୍ଦତାବାଦୀ କବିତା ଧାରାର ଅନ୍ୟତମ ନାରୀକବି । ନାରୀକବି ରୂପେ ନାରୀ ଜୀବନର ଅସହାୟତା, ପ୍ରେମ, ବିଷାଦ, ନିଃସଙ୍ଗତା, ସ୍ୱପ୍ନକାମନା, ଐଶ୍ୱରୀୟ ଭାବ ଓ ବିଡ଼ମ୍ବନା ଇତ୍ୟାଦି ତାଙ୍କ କବିତାରେ ରୂପାୟିତ । ନାରୀମନସ୍କତା ହେଉଛି ତାଙ୍କ କବିତାର ପ୍ରାଣପିଣ୍ଡ ସ୍ୱରୂପ । "ବନ ହଳଦୀ", "ବର୍ଷାର ବଳାକା", "ଭୂମିଲଗ୍ନା", "ଦୂରନକ୍ଷତ୍ରର ଦୀପ" ଏବଂ "ସୁନାରେ ଭରି ନାଆ" ପ୍ରଭୃତି ରହିଛି ତାଙ୍କର କେତୋଟି କବିତା ସଂକଳନ ପ୍ରକାଶ ପାଇଛି ।

ଫନୀ ମହାନ୍ତି (୧୯୪୪) ଜୀବନର ଆବେଗଗତ ସମସ୍ୟାମାନଙ୍କ ପ୍ରସଙ୍ଗ କବିତାରେ ଅବତାରଣା କରୁ କରୁ ଏକ କଳ୍ପଲୋକର କଥା କବିତାରେ କହିଦିଅନ୍ତି । "ମାନଚିତ୍ର", "ସ୍ୱୟଂବର", "ବିଦଗ୍ଧ ହୃଦୟ", "ରୁଚିର ନଗର", "ପ୍ରିୟତମା", "ମାୟାଦର୍ପଣ", "ରୁବିପାଇଁ କେତୋଟି କବିତା", "ବିଷାଦଯୋଗ" ପ୍ରଭୃତି କବିତାଗ୍ରନ୍ଥ ତାଙ୍କର ଅମ୍ଳାନ ସୃଷ୍ଟି ଅଟେ । ଆବେଗପ୍ରବଣ ମାନବବାଦୀ ଶିଳ୍ପୀ ଅଟନ୍ତି ସେ । ସେ ଚରିତ୍ରମାନଙ୍କୁ ନେଇ କବିତା ଲେଖିବାରେ ଆପଣାର କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ତାଙ୍କ କବିତାରେ ପ୍ରେମ, ପ୍ରଣୟ ଭାବନା, ବିଷାଦଭାବ, ଆଧ୍ୟାତ୍ମିକ ଚେତନା ପ୍ରଭୃତି ବିଶେଷ ଭାବରେ ପରିଲକ୍ଷିତ ।

ନୀଳାଦ୍ରି ଭୂଷଣ ହରିଚନ୍ଦନ (୧୯୪୬) ଏକାଧାରରେ କବି, ନାଟ୍ୟକାର, ଅନୁବାଦକ, ସମାଲୋଚକ ଅଟନ୍ତି । ସେ ଜଣେ ଜୀବନବାଦୀ କବି ଅଟନ୍ତି । ତାଙ୍କର କବିତା ସଂକଳନଗୁଡ଼ିକ ହେଉଛି "ପାହାଚ", "ନୀଳଚନ୍ଦନର ଭୁଲ୍ ଠିକଣା", "ସମ୍ବୋଧନହୀନ", "ଅଚାନକ ବୃହନ୍ନଳା", "ନିର୍ବୋଧ ଲୋକ ପୃଥିବୀ", "ସମୁଦ୍ର ନିରୁତ୍ତର", "ଇତିହାସ ଲେଖିବାର ମୁହୂର୍ତ୍ତ," "ଆଉ ଗୋଟିଏ ଜନ୍ମର ଅପେକ୍ଷା" ଏବଂ

"ସୌନ୍ଦର୍ଯ୍ୟ ଖୋଜି ଖୋଜି ଈଶ୍ୱର" ପ୍ରଭୃତି । ସେ କବିତାରେ ପ୍ରତୀକ, ଚିତ୍ରକଳ୍ପ, ମିଥ୍ ବ୍ୟବହାର କରିଥିଲେ ମଧ୍ୟ ତାହା ଦୁର୍ବୋଧ୍ୟ ନୁହେଁ । ବୃହନ୍ନଳା, ବିଦୁର, ପଣ୍ଡୁ, ଦୁର୍ବାସା, ପ୍ରହ୍ଲାଦ, ଦ୍ରୌପଦୀ ପ୍ରଭୃତି ମିଥ୍‌ର ପ୍ରୟୋଗ କରି ସେ ଆଧୁନିକ ଜୀବନ ଜିଜ୍ଞାସାକୁ ଶାଣିତ ଓ ସଫଳ କରିଛନ୍ତି ।

ପ୍ରସନ୍ନ କୁମାର ପାଟ୍ଟଶାଣୀ (୧୯୪୭) ଏକାଧାରରେ କବି, ରାଜନେତା ଅଟନ୍ତି । ତରୁଣ ଜୀବନରେ ବାମପନ୍ଥୀ ଆଭିମୁଖ୍ୟର କବି ଭାବରେ ଆତ୍ମପରିଚୟ ଦେଇଥିଲେ ସୁଦ୍ଧା ପରବର୍ତ୍ତୀ ସମୟରେ ସେ ମୁଖ୍ୟତଃ ଜଣେ ସମାଜସଚେତନ ମାନବବାଦୀ କବି ଭାବରେ ସିଦ୍ଧି ଅର୍ଜନ କରିଛନ୍ତି । ତାଙ୍କର ପ୍ରକାଶିତ କବିତା ଗ୍ରନ୍ଥ ମଧ୍ୟରେ "ଆକାର କବିତା", "ଲେନିନ୍", "ବାଘ ଆଁରେ ପିକ୍‌ନିକ୍", "ଅଗ୍ନିଯୁଗ", "ସାପଗାତରେ ସକାଳ", "ରକ୍ତପଥ", "ବର୍ଷା", "ସାତ ମନ ତେର ଆକାଶ", "କିଛି ଲୁହ କିଛି ଲହୁ", "ପ୍ରସନ୍ନ ପାଟ୍ଟଶାଣୀଙ୍କ ଶହେ ଏକ କବିତା", "ଖୋର୍ଦ୍ଧାର କବିତା ମୁଁ ପଢ଼େ", "ଅମର ନାଥ", "ଆଖି ଫୁଟି ଯାଇଥିବା ସତ୍ୟବାନଟିଏ", "ଦେଖା ହେଲେ କହିବି ସେ କଥା", "ସମ୍ପର୍କ", "ନୀଳ ନୂପୁର", "ଆକାଶର କାଠ ଗଡ଼ାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା", "ବାଲିର ଚିଠି ଓ ଲବଙ୍ଗ ଠିକଣା", "ଅମାବାସ୍ୟା ବସିଛି ଜହ୍ନର ପିଠିରେ", "ଛଅାଣ ଡେଣାରେ ଭାରତ", "ଚିତାଗ୍ନିରେ ବୋମା", "ହିରୋସୀମା", "ଓଠ ଫଣାରେ କଡଉ", "ନବକଳେବର", "ଏଇଠୁ ଆରମ୍ଭ" ପ୍ରମୁଖ । "ବର୍ଷା" କବିଙ୍କର ଗୋଟିଏ ଦୀର୍ଘ କବିତା ଗ୍ରନ୍ଥ ଅଟେ ।

ବିପିନବିହାରୀ ମହାନ୍ତି (୧୯୪୭) ଏକାଧାରରେ ଗାଳ୍ପିକ, ଔପନ୍ୟାସିକ, କବି ଅଟନ୍ତି । "ନିଃସର୍ତ୍ତ ଅନ୍ଧାର" ଓ "ଗାଁ ଗୋହିରୀ" ତାଙ୍କ କାବ୍ୟଚେତନାର ଦୁଇଟି ଅମଳିନ ସାକ୍ଷର । ଗାଁ ଗୋହିରୀ ଏକ ପଲ୍ଲୀକାବ୍ୟ, ଯେଉଁଟି ତାଙ୍କ ନିଜସ୍ୱ ଉଚ୍ଚାରଣର ଐକାନ୍ତିକତା ଯୋଗୁଁ ପାଠକଙ୍କ ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରେ ।

ନୀଳମଣି ପରିଡ଼ା (୧୯୪୮)ଙ୍କୁ ଜଣେ ପ୍ରଚ୍ଛନ୍ନ ପ୍ରଗତିବାଦୀ ଚେତନାର ସ୍ରଷ୍ଟା ପୁରୁଷ ରୂପେ ଗ୍ରହଣ କରାଯାଇପାରେ । ମାନବୀୟ ସମ୍ବେଦନଶୀଳତା ଓ ଜୀବନବାଦର ଲଳିତ ଭୂମିକୁ ଭିତ୍ତି କରି କବିତାର ଶିଳ୍ପ ରଚନାରେ ମଗ୍ନଥିବା କାବ୍ୟପୁରୁଷ ଅଟନ୍ତି ସେ । "ମନୋରମ କାହାଣୀ", "ଭୂଲୋକ", "ରକ୍ତନଦୀ ସନ୍ତରଣ ଓ ଅନ୍ୟାନ୍ୟ କବିତା", "ଚତୁର୍ଥ ପଦ", "ନଦୀ ନକ୍ଷତ୍ର" ତଥା "ମୁକ୍ତିର ସନନ୍ଦ" ପ୍ରଭୃତି ତାଙ୍କର କେତୋଟି କବିତା ସଙ୍କଳନ ପ୍ରକାଶ ପାଇଛି । ତାଙ୍କ କବିତାରେ କେବେ ପ୍ରେମ ତ କେବେ ମୃତ୍ୟୁର ମାର୍ମିକ ବିଷାଦ ସୃଷ୍ଟି ତ କେବେ ସାମାଜିକ ପରିବର୍ତ୍ତନର ଅଙ୍ଗୀକାରବଦ୍ଧତା ପ୍ରକାଶ ପାଏ ।

ଭଗବାନ ଜୟସିଂହ (୧୯୫୨) ଜୀବନର ନିଃସଙ୍ଗତା, ଜାଗତିକ ରହସ୍ୟ, ମାନବିକ ମୂଲ୍ୟବୋଧର ସଙ୍କଟ ଓ ଆଧ୍ୟାତ୍ମିକ ଅବସାଦକୁ କବିତାରେ

ରୂପ ଦେବାରେ ସଫଳ କବି ଅଟନ୍ତି । "ନିର୍ବାସନରେ ପକ୍ଷୀ", "ଘୋଷ ଯାତ୍ରା", "ଓଲଟ ଦୃଶ୍ୟ", "ମାୟା ଘେରରେ କାଳିଦାସ" କବିଙ୍କ ସୃଜନଶୀଳ କବି ପ୍ରତିଭାର ପରିଚୟ ଦିଏ ।

ଗିରିଜାକୁମାର ବଳୀୟାରସିଂହ (୧୯୫୪) ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବକୁ ନେଇ କବିତା ଲେଖିବାରେ ସିଦ୍ଧହସ୍ତ । ତାଙ୍କ କବିତାଗ୍ରନ୍ଥ ମଧ୍ୟରେ "କ୍ରୌଞ୍ଚ ମିଥୁନ", "କାଲିର କବିତା", "ତୃଷ୍ଣା ତର୍ପଣ", "ଡାଇରିର ସାୟରି", "ଭାରତ ବର୍ଷ", "ଚତୁର୍ଦ୍ଦଶୀର ଚନ୍ଦ୍ର", "ନୀଳନିର୍ବାଣ", "ସର୍ଗସମଗ୍ର", "ଚର୍ଯ୍ୟାଚୟନ", "ମୃତ୍ୟୁ ତୁମେ ଆସ", "ଚିତ୍ରପ୍ରତିମା", "ଶୀତଶୀର୍ଷକ" ପ୍ରଭୃତି ପ୍ରଧାନ । ତାଙ୍କ କବିତାଗୁଡ଼ିକରେ ନଷ୍ଟମୂଲ୍ୟବୋଧ, ସାମ୍ପ୍ରତିକ ସମାଜ ଓ ଜୀବନର ଅବକ୍ଷୟର ଚିତ୍ର ଦେଖିବାକୁ ମିଳେ । ସନେଟ୍ ଶୈଳୀରେ ରଚିତ ତାଙ୍କ କବିତା ଓ ଛନ୍ଦୋବଦ୍ଧ ପ୍ରେମକବିତାଗୁଡ଼ିକ ପ୍ରୀତିପୂର୍ଣ୍ଣ ପ୍ରଣୟର ଗୀତିମୟ ଗାଥା ଏବଂ ଏସବୁକୁ ଶବ୍ଦାୟିତ କରିବାରେ ସେ ଜଣେ ସିଦ୍ଧିପ୍ରାପ୍ତ ସିଦ୍ଧାର୍ଥ ।

ଦିଲ୍ଲୀପ ଶ୍ରୀଚନ୍ଦନ (୧୯୫୯) ଏକାଧାରରେ କବି, ଗାଳ୍ପିକ, ଔପନ୍ୟାସିକ ଅଟନ୍ତି । ସେ ଜଣେ ଦରଦୀ ପ୍ରାଣର ଆଶୁକବି ଅଟନ୍ତି । "ମୁକ୍ତିମନ୍ତ୍ର", "କୃଷକ ପୁଅ: ପ୍ରଣାମ ନିଅ", "ଶ୍ରାବଣ ପାରିନି ଧୋଇ ରକତର ଦାଗ ଏ ମାଟିରୁ", "ବିଧାନସଭା କବିତା" ପ୍ରଭୃତି କବିତା ସଙ୍କଳନ ପ୍ରକାଶ ପାଇଛି । ବିଧାନସଭାର ତିକ୍ତ ମଧୁର ଅଭିବ୍ୟକ୍ତିକୁ "ବିଧାନସଭା କବିତା"ରେ ଉପସ୍ଥାପନ କରିଛନ୍ତି । କୃଷି ଓ କୃଷକର ଜୀବନ ତଥା ପଲ୍ଲୀ ପ୍ରକୃତିର ଚିତ୍ର ରହିଛି "କୃଷକ ପୁଅ: ପ୍ରଣାମ ନିଅରେ" । ପଲ୍ଲୀ, ପ୍ରକୃତି, ସ୍ମୃତି, ସ୍ୱପ୍ନ, ଅନୁଭୂତି, ଜାତୀୟତା ଓ ଜୀବନବୋଧ ତାଙ୍କ କାବ୍ୟଜଗତର ପରିଚିତ ଚିତ୍ରପଟ ।

କବି ଗୋପାଳକୃଷ୍ଣ ଦାସ ୧୯୫୯ମସିହାରେ ଖୋରଧାର ରାଧାବଲ୍ଲଭ ସାହିରେ ଜନ୍ମ ଗ୍ରହଣ କରିଥିଲେ । ସେ ଏକାଧାରରେ କବି, ଗାଳ୍ପିକ, ପ୍ରାବନ୍ଧିକ, ନାଟ୍ୟକାର, ଚିତ୍ରକାର, ଐତିହାସିକ, ସଂଗଠକ, ଭ୍ରମଣକାହାଣୀକାର, ଖୋରଧା ସଂସ୍କୃତିର ସଂରକ୍ଷକ ତଥା ଗବେଷକ ଏବଂ ଖୋରଧାସ୍ଥ ରାଧାଗୋବିନ୍ଦ ଶେଫାଳି ସଂଗ୍ରହାଳୟର ପ୍ରତିଷ୍ଠାତା ତଥା ସମ୍ପାଦକ ଅଟନ୍ତି । ଅଦ୍ୟାବଧି ଓଡ଼ିଆ ଓ ଇଂରାଜୀରେ ୬ଟି ଗ୍ରନ୍ଥ ଓ ୫୦୦ରୁ ଉର୍ଦ୍ଧ୍ୱ ଲେଖା ପ୍ରକାଶିତ । ଇଣ୍ଡିଆନ୍ ହିଷ୍ଟ୍ରି କଂଗ୍ରେସ୍, ଇଣ୍ଡିଆନ୍ ସାଇନ୍ସ କଂଗ୍ରେସ, ଓରିଏଣ୍ଟାଲ୍ କନ୍‌ଫରେନ୍ସ ପ୍ରଭୃତିରେ ଓଡ଼ିଶା ସମ୍ପର୍କିତ ଗବେଷଣାତ୍ମକ ପ୍ରବନ୍ଧ ଉପସ୍ଥାପକ । ଜାତୀୟ ଓ ପ୍ରାଦେଶିକ ସ୍ତରୀୟ ବହୁ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ । ତାଙ୍କର "ନୀଳ ନିୟତି: ନିଳାରୁଣ ରାତି" (୧୯୯୮) କବିତା ସଙ୍କଳନଟି ରୋମାଣ୍ଟିକ୍ ଭାବାଚ୍ଛନ୍ନ ତରଳ ଶବ୍ଦ ସଂଭାର, ଆବେଗପ୍ଲୁତ ଭାବସଂପଦ ଓ ସୌନ୍ଦର୍ଯ୍ୟପ୍ରୀତିର ଏକ ଅନୁପମ ସଂକଳନ ଅଟେ ।

ସୂର୍ଯ୍ୟ ମିଶ୍ର (୧୯୬୦)ଙ୍କ କାବ୍ୟଜଗତ ଶାଣିତ ଓ ତୀବ୍ର ଭାବବ୍ୟଞ୍ଜନା, ବିଦ୍ରୁପାତ୍ମକ ଅଭିବ୍ୟକ୍ତିଜନିତ ଶିଳ୍ପ କୌଶଳରେ ବିନିର୍ମିତ । ବହୁଧା ବିଭକ୍ତ ତଥା ବିଚିତ୍ର ବର୍ଣ୍ଣିଳ ଅନୁଭବକୁ ରସାଣିତ କାବ୍ୟଚେତନାରେ ମୂର୍ତ୍ତିରୂପ ପ୍ରଦାନ କ୍ଷେତ୍ରରେ ସେ ସିଦ୍ଧହସ୍ତ । ତାଙ୍କ କବିତାରେ ରହିଛି ସ୍ଥିତିବାଦୀ ଚେତନାର ମାର୍ମିକ ଚିତ୍ରରୂପ । ସାମ୍ପ୍ରତିକ ମଣିଷର ନିଃସଙ୍ଗତା, କାରୁଣ୍ୟ, ବିଷର୍ଣ୍ଣବୋଧ ଏବଂ ସେଥିପ୍ରତି ଗଭୀର ସମ୍ବେଦନା ରହିଛି ତାଙ୍କ କବିତାରେ । "ସାତ ବର୍ଣ୍ଣର ସକାଳ", "ଏକା ଏକା ସହବାସ", "ହାୟ ! ଶବ୍ଦ", "ପାଗଳ ପ୍ରେମିକ ଦଳ", "ଶୂନ୍ୟବାସ" ଓ "ମୃତ୍ୟୁ ମୃତ୍ୟୁ ମୃତ୍ୟୁ" ନାମରେ କେତୋଟି କବିତା ପୁସ୍ତକ ।

ସୁନୀଲ କୁମାର ପୃଷ୍ଟି (୧୯୬୩)ଙ୍କର ଆନନ୍ଦ ହେଉଛି ଜୀବନକୁ ଏକ ଅଲଗା ଜଗତରେ ଦେଖିବାରେ । ମଣିଷର ଆଧ୍ୟାତ୍ମିକ ଅବସାଦ, ନିଃସଙ୍ଗତାବୋଧ ଓ ଯନ୍ତ୍ରଣାକୁ କବିତାରେ ରୂପ ଦେବାରେ ସେ ଜଣେ ଅନନ୍ୟ କବି । ତାଙ୍କ କବିତାଗ୍ରନ୍ଥମାନଙ୍କ ମଧ୍ୟରେ "ତନୁଲତାର କବିତା", "ପୁଅ ପାଇଁ ପ୍ରାର୍ଥନା", "ଚିହ୍ନା ଚିହ୍ନା ନିର୍ଜନତା", "ଦେହ ଦେଉଳ", "ଅସଫଳ କବିତା" ପ୍ରଧାନ ।

ଏଠାରେ ପ୍ରଦତ୍ତ କବିମାନଙ୍କ ବ୍ୟତୀତ ଆହୁରି ଅନେକ ଖୋରଧାର କବି ରହିଛନ୍ତି, ଯେଉଁମାନେ ନିଜ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସାହିତ୍ୟ କ୍ଷେତ୍ରରେ ଏମାନଙ୍କ ପାଇଁ ଖୋରଧା ଆଜି ଗର୍ବିତ । କିନ୍ତୁ ଦୁଃଖର ବିଷୟ ଯେ ଏମାନଙ୍କ ଭିତରୁ ଅନେକଙ୍କର ବଳିଷ୍ଠ ଲେଖା ଥାଇ ମଧ୍ୟ ସେମାନେ ଓଡ଼ିଆ ସାହିତ୍ୟର ଇତିହାସରେ ଅନାଲୋଚିତ ହୋଇ ରହିଯାଇଛନ୍ତି । ମୋର ଆଶା ଓ ବିଶ୍ୱାସ ଯେ ଦିନେ ନା ଦିନେ ସେମାନେ ନିଶ୍ଚିତ ଭାବରେ ଉଚିତ୍ ସମ୍ମାନ ଓ ଗୌରବ ପାଇବେ ।

**ସହାୟକ ଗ୍ରନ୍ଥସୂଚୀ**

କର, ବାଉରୀବନ୍ଧୁ, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦ ବିହାରୀ, ପ୍ରଥମ ମୁଦ୍ରଣ-୧୯୮୯, ଷଷ୍ଠ ସଂସ୍କରଣ-୨୦୧୫ ।

ପାଢ଼ୀ, ବେଣୁଧର, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବିନୋଦ ବିହାରୀ, ପ୍ରଥମ ସଂସ୍କରଣ-୨୦୧୫ ।

ମହାପାତ୍ର, ପ୍ରେମାନନ୍ଦ, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ସତ୍ୟନାରାୟଣ ବୁକ୍ ଷ୍ଟୋର, ବିନୋଦ ବିହାରୀ, ପ୍ରଥମ ସଂସ୍କରଣ-୨୦୧୫ ।

ମହାରଣା, ସୁରେନ୍ଦ୍ର କୁମାର, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ଓଡ଼ିଶା ବୁକ୍ ଷ୍ଟୋର, ବିନୋଦ ବିହାରୀ, ପ୍ରଥମ ସଂସ୍କରଣ-୨୦୦୧, ତୃତୀୟ ସଂସ୍କରଣ-୨୦୧୫ ।

# ଖୋରଧା କବିଙ୍କ ଲେଖନୀରେ ଖୋରଧା

ବରିଷ୍ଠ ଅଧ୍ୟାପିକା ସୁନୀତା ତ୍ରିପାଠୀ

ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ୧୮୧୭ ମସିହାରେ ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା । ଏହାକୁ ଖୋର୍ଦ୍ଧା ବିଦ୍ରୋହ ମଧ କୁହାଯାଏ । ୨୦ ଜୁଲାଇ ୨୦୧୭ ମସିହାରେ ଆମର ତତ୍‌କାଳୀନ ରାଷ୍ଟ୍ରପତି ରାମନାଥ କୋବିନ୍ଦ୍ ପାଇକ ବିଦ୍ରୋହ ଭାରତର ପ୍ରଥମ ସାଧିନତା ସଂଗ୍ରାମ ଥିଲା ବୋଲି ଘୋଷଣା କଲେ । ଖୋର୍ଦ୍ଧାର ପାଇକମାନଙ୍କ ଦ୍ୱାରା ୧୮୧୭ରେ ଅନୁଷ୍ଠିତ ହୋଇଥିବା ବିଦ୍ରୋହ ହେଉଛି ପାଇକ ବିଦ୍ରୋହ ତଥା ପ୍ରଥମ ସାଧିନତା ସଂଗ୍ରାମ । ୧୮୧୭ ଖୋର୍ଦ୍ଧା ବିଦ୍ରୋହ ଆଧୁନିକ ଓଡ଼ିଶାର ଇତିହାସ କାହିଁକି ସମଗ୍ର ଭାରତର ଉପନିବେଶବାଦ ବିରୋଧି ଇତିହାସର ଏକ ମହତ୍ତ୍ୱପୂର୍ଣ୍ଣ ଅଧାୟ । ଏ ପରିପ୍ରେକ୍ଷୀରେ ଖୋର୍ଦ୍ଧାର ପାଇକମାନଙ୍କ ପାଇଁ ଚଳଞ୍ଚଳ ହୋଇଥିବା ଖୋର୍ଦ୍ଧା କବିଙ୍କ ଲେଖନୀର ଏକ ବିଶେଷ ପ୍ରତିବେଦନ ।

'କବୟଃ ମନ୍ତ୍ରଦ୍ରଷ୍ଟାରଃ ।' ତାର ଅକ୍ଷରରେ ରହିଛି ମନ୍ତ୍ରଶକ୍ତି । ସେହିଭଳି 'ମାଟି ମା' ସବୁବେଳେ ଅତୀତ ଇତିହାସର କଥାକହେ, ତାର ବୀରପ୍ରସୂ ସନ୍ତାନର କଥା ଓ ଗାଥା ଗାଇବାରେ ସେ ଗୌରବଦୀପ୍ତ ଏବଂ ପୁଲକିତ ହୁଏ । ପୁଣି ସେହି 'ମା'ର ଗୌରବୋଜ୍ଜ୍ୱଳ ସ୍ମୃତିକୁ ବଖାଣିବାରେ କବି ହୁଏ ଶତମୁଖ । ସେହିଭଳି ଅତୀତର ଗୌରବର ଗାଥାଗାଏ ଖୋର୍ଦ୍ଧା ମାଟି । ବୀରପ୍ରସବିନୀ ସ୍ୱର୍ଣ୍ଣପ୍ରସୂ ଖୋର୍ଦ୍ଧା । ସେହି ଖୋର୍ଦ୍ଧାଗଡ଼ର ବିଜୟ ବୈଜୟନ୍ତୀ ରଚିଛି ପାଇକମାନଙ୍କ ଦ୍ୱାରା । ସେହି ପାଇକ ବୀର, ପାଇକ ବିଦ୍ରୋହ, ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ ଯେଭଳି ଆଗେଇ ନେଇଛନ୍ତି ବିଦ୍ରୋହକୁ ଓଡ଼ିଶାକୁ ଇଂରେଜ ଶାସନ କବଳରୁ ମୁକ୍ତ କରିବା ପାଇଁ ।

ଓଡ଼ିଶାକୁ ମୁକ୍ତ କରିବା ପାଇଁ ୧୮୧୭ରେ ଇଂରେଜମାନଙ୍କ ବିରୋଧରେ ଖୋର୍ଦ୍ଧା ଗଡ଼ରେ ସଂଗଠିତ ହୋଇଥିବା ଏକ ସଶସ୍ତ୍ର ସଂଗ୍ରାମ । ଏହି ବିଦ୍ରୋହର ପ୍ରମୁଖ କର୍ତ୍ତା ଥିଲେ ପାଇକ ସୈନିକ । ଏହି ସଂଗ୍ରାମର ମୁଖ୍ୟ ନେତା ଥିଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର । ବକ୍ସି ରୂପରେ ସେ ଥିଲେ ଖୋର୍ଦ୍ଧା ରାଜାଙ୍କ ସେନା ଅଧିନାୟକ । ୧୮୫୭ ମହାସଂଗ୍ରାମର ଚାରିଦଶକ ପୂର୍ବରୁ ଖୋର୍ଦ୍ଧା ବିଦ୍ରୋହର ଅଭ୍ୟୁଦୟ ବୋଲି ଇତିହାସ କହେ । ଇଂରେଜମାନଙ୍କ ହାତରେ ଅବଦମିତ ହେବା ପରେ ମଧ ଉନବିଂଶ ଏବଂ ବିଂଶ ଶତାବ୍ଦୀରେ ସଂଗଠିତ ସାଧିନତା ସଂଗ୍ରାମ ନିମିତ୍ତ ସର୍ବଦା

ଏକ ପ୍ରେରଣାର ସ୍ରୋତ ହୋଇ ଏହା ରହି ଆସିଛି । କେବଳ ପାଇକମାନେ ଖୋର୍ଦ୍ଧାକୁ ସମସ୍ତଙ୍କ ନିକଟରେ ପରିଚିତ କରିଥିଲେ ତା ନୁହେଁ, ଖୋର୍ଦ୍ଧା କବିମାନେ ମଧ ଖୋର୍ଦ୍ଧା ମାଟିର ଓ ପାଇକମାନଙ୍କ ଗାଥା ଗାଇବାରେ ଶତମୁଖ ହୋଇ ଉଠିଛନ୍ତି । କବି ଗୋଦାବରୀଶ ମିଶ୍ରଙ୍କ ଠାରୁ ଆରମ୍ଭ କରି ଏ ଯାବତ୍ କତିପୟ କବିଙ୍କ ଲେଖନୀରେ ନିଃସୃତ ହୋଇଥିବା ବୀରଗାଥା ଏଠାରେ ଆଲୋଚ୍ୟ ବିଷୟ ।

କବି ଗୋଦାବରୀଶ ମିଶ୍ର ଥିଲେ ଜଣେ ପରମ ଦେଶପ୍ରେମୀ, ସଂଗଠକ ଓ ନେତା । ତାଙ୍କର ସ୍ୱଦେଶ ପ୍ରେମ ସହ ଅତୀତ ପ୍ରୀତି ଥିଲା ଅନନ୍ୟ ଏବଂ ଅନବଦ୍ୟ । କବି ମର୍ଯ୍ୟାଦା ଦେଇଥିଲେ ଆମର ଐତିହ୍ୟକୁ, ଇତିହାସ, ସଂସ୍କୃତି ଓ ପରମ୍ପରାକୁ । ଅତୀତର ଆଲୋକକୁ ମନେପକାଇ ପୁନଃ ଜାଗ୍ରତ କରିବା ପାଇଁ ସୁପ୍ତ ଓଡ଼ିଆକୁ ଆହ୍ୱାନ ଦେଇଥିଲେ । ଓଡ଼ିଶାର ଗଜପତି ରାଜାମାନେ ଅମିତବଳ ବିକ୍ରମଶାଳୀ ଥିଲେ ଏବଂ ସାମ୍ରାଜ୍ୟ ବିସ୍ତାର କରିବା ସହିତ ଧନଧାନ୍ୟରେ ସ୍ୱଦେଶ ପୂର୍ଣ୍ଣ କରିଥିଲେ । ପ୍ରଜାଙ୍କୁ ପାଳୁଥିଲେ ଅତୀବ ସ୍ନେହରେ । ଆଜି ସେ ଐଶ୍ୱର୍ଯ୍ୟର ବିଲୁପ୍ତ ଘଟିଛି । ସେଥିପାଇଁ କବି ଦୁଃଖ ପ୍ରକାଶ କରିଛନ୍ତି ବାରବାଟୀର ପତନ ପାଇଁ । କୋଣାର୍କର ଭଗ୍ନସ୍ତୂପ ପାଇଁ । ତଥାପି ଆଶା କରିଛନ୍ତି ଉତ୍କଳଜନନୀ ଭଳି ଯେଉଁ ଓଡ଼ିଆଙ୍କର ମା ଅଛି ତାର କିବା ଦୁଃଖ କ୍ଳେଶ, ଯନ୍ତ୍ରଣା ଗ୍ଳାନି ।

"ତୋ ଭଳି ଜନନୀ ଥାଉଁ ଜନମଭୂମି, / କି ଦୁଃଖ ଏ ଓଡ଼ିଆର ପରାଣେ ପୁଣି" ?

କେତେବେଳେ କବି ଲେଖନୀରେ "ସ୍ୱର୍ଗାଦପି ଗରିୟସୀ" ଜନନୀ ମା ଧରିତ୍ରୀ, ପୁଣି କେତେବେଳେ କଙ୍କାଳ ପାଲଟିଥିବା ମୁମୂର୍ଷୁ ଓଡ଼ିଆକୁ ଗୌରବାବହ ଅତୀତ କାହାଣୀ ଶୁଣାଇ ଜାତିର ବୀରତ୍ୱ ଗାନ କରିବା କବିଙ୍କର ଲକ୍ଷ୍ୟ । କବି ଗୋଦାବରୀଶ ମହାପାତ୍ରଙ୍କ ଲେଖନୀରେ ଓଡ଼ିଶା ଓ ଓଡ଼ିଆର ବିପର୍ଯ୍ୟୟ ଦେଖି ତାଙ୍କ ସ୍ମୃତିରେ ଭାସିଉଠିଛି ବୀରଭୂମି ଉତ୍କଳର ଚରିତ୍ର । ରାଜ୍ୟଜୟ ଓ ସାମ୍ରାଜ୍ୟ ବିସ୍ତାର ଥିଲା ଓଡ଼ିଆ ରାଜାମାନଙ୍କର ବୀରତ୍ୱର ପୁଞ୍ଜି । ଚୈତନ୍ୟଙ୍କ ପ୍ରେମଧର୍ମ ପ୍ରଚାର ଫଳରେ ରାଜନୈତିକ ପରିବର୍ତ୍ତନ ଘଟିଛି । ଓଡ଼ିଆଙ୍କ ଭିତରେ ସୃଷ୍ଟି ହୋଇଛି ଶ୍ଳଥତା, ଭୀରୁତାଭାବ । ତାକୁ ଆହ୍ୱାନ ଜଣାଇ କବି କହିଛନ୍ତି - "ଖୋରଧାର ଶତ ସରଦାର ଶିର କର ଉନ୍ନତତର !" ପୁଣି, ଖଣ୍ଡା କୁଶଳ ଖଣ୍ଡାୟତର ଦୁର୍ବାର କରବାଳେ । କବି ପୁଣି ଜାତୀୟତା ସହିତ ଭାଷାର ଆଭିମୁଖ୍ୟ ପ୍ରତିପାଦନ କରିବା ପାଇଁ କରିଛନ୍ତି - "ହାଡ଼ପାଶୁ ଆଜି ଭାଷା ବହି ଆସୁ ଫୁଟୁ ମଡ଼ା ମୁଖେ ହସ, ଭଗ୍ନ ଏ ଗଡ଼ ମନ୍ଦିରେ ଶୁଭୁ ଦୁନ୍ଦୁଭି ଅହର୍ନିଶ ।

ଉତ୍କଳୀୟ ପ୍ରୀତି ଓ ମହାଭାରତୀୟ ଚେତନାର ସମନ୍ୱିତ ରୂପ ମାନସିଂହଙ୍କ କବିତାର ଛତ୍ରେ ଛତ୍ରେ ଫୁଟି ଉଠିଛି । ଏକଦା ବାଣିଜ୍ୟ, ଯୁଦ୍ଧବିଦ୍ୟା, ଶିକ୍ଷା, କଳା, ସ୍ଥାପତ୍ୟ, ସାହିତ୍ୟ ଓ ସଂସ୍କୃତିର ସମୁନ୍ନତ ରୂପ ପ୍ରକାଶ ପାଇଥିଲା, ଆଜି ତାହା ଜରାଜୀର୍ଣ୍ଣ । ତଥାପି କବି ଆଶା ପ୍ରକାଶ କରି ଉଦ୍‌ବୋଧନ ଦେଇଛନ୍ତି -

"ତୁମ୍ଭେ ସବୁ ଖଣ୍ଡେଇତେ, ପାଇକେ ସାମନ୍ତେ, / ଏକ ହୋଇ କର କାର୍ଯ୍ୟ, ଭୁଲି ଆତ୍ମପର ।"

ଖୋର୍ଦ୍ଧା ମାଟିର ଐତିହ୍ୟ, ଅନନ୍ୟ ପରମ୍ପରା ଓ ସଂସ୍କୃତି ଅବିସ୍ମରଣୀୟ । ପାଇକମାନଙ୍କ ବୀରତ୍ୱ ଗାଥାକୁ ନେଇ ଖୋର୍ଦ୍ଧାର ଅନ୍ୟତମ ବିଶିଷ୍ଟ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଆଲେଖ୍ୟ - 'ପାଇକମାନଙ୍କ ଗାଥା' । ଏଥିରେ ଖୋର୍ଦ୍ଧା ପାଇକମାନଙ୍କର ବୀରତ୍ୱରେ ଇତିହାସ ଯୁଗେ ଯୁଗେ ଗର୍ବିତ । କବିଙ୍କ ଭାଷାରେ -

"ହେ ମୋର ଖୋର୍ଦ୍ଧାର ପ୍ରିୟ ଖଣ୍ଡାୟତ ବୀର, / ନିଜ ପାଇଁ ଆସିନାହିଁ, ମରଣ ବରଣ କରି ଆସିଛ, / ଏ ଜାତି ପାଇଁ, ବୁକୁକାଟି ରକ୍ତ ଦେବ, ଦେବ ମାଂସହାଡ଼ / ଦେଖିବ ଏ ବରୁଣେଇ ଶ୍ୟାମଳଶିଖରୀ, / ଦେଖିଦିଏ ଆକାଶର ଗ୍ରହ, ଚନ୍ଦ୍ର, ତାରା, / ଦେଖିବ ଉଲ୍ଲାସେ କେହ୍ନେ, ଖୋର୍ଦ୍ଧାର ପାଇକ, / ସମସ୍ତ ଜୀବନତାର, ଏଇ ଶେଷରଣ ଯଜ୍ଞେ ।"

ସେହିଭଳି କବି ପ୍ରସନ୍ନ ପାଟଶାଣୀଙ୍କ କବିତାରେ ପାଇକ ବିଦ୍ରୋହର ସ୍ୱାଧୀନତା ସଂଗ୍ରାମର ଅମର ସ୍ୱାକ୍ଷର "ଖୋର୍ଦ୍ଧାର କବିତା ମୁଁ ପଢ଼େ"ରେ ରୂପ ପାଇଛି । ମଣିଷର ମହତ୍ତ୍ୱ ପ୍ରତିପାଦନ କରି ମୂଲ୍ୟବୋଧର ପୁନର୍ବିନ୍ୟାସ ପାଇଁ ସଚେତନ ବାଣୀ ମୂର୍ତ୍ତିରେ ଉଭା ହୋଇଛି । ପାଇକ ବିଦ୍ରୋହ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ । ଏହି ସଂଗ୍ରାମରେ ପାଇକବୀର ଲଢ଼ି ତା ଜୀବନ ଉତ୍ସର୍ଗ କରିପାରେ ହେଲେ ତା ଢାଲ ଓ ତଲଓ୍ୱାରରେ କେବେ ବି କଳଙ୍କି ଲାଗିବା ପାଇଁ ଦେବ ନାହିଁ ବୋଲି ଆଶା ପ୍ରକଟ କରିଛନ୍ତି ।

"ପାଇକବୀରର ଢ଼ାଲ ତଲଓ୍ୱାରେ / କଳଙ୍କି ଲାଗିବ ନାହିଁ, / ଜାଗି ରହିଥିବ ଖୋରଧା ପାଇକ / ତାର ମୁକ୍ତି ସଂଗ୍ରାମ ପାଇଁ ।"

'ପଦାତିକ'ରୁ ପାଇକ ଶବ୍ଦର ଉତ୍ପତ୍ତି । ସେନାରେ ଅଶ୍ୱ ଓ ଗଜକୁ ସାମିଲ୍ କଲାପରେ ବି ଓଡ଼ିଶାରେ ସୈନିକମାଙ୍କ ବ୍ୟତୀତ ସେନାବାହିନୀରେ ନିୟୋଜିତ ବାଦ୍ୟକାର, ଖାଦ୍ୟ ଓ ଅନ୍ୟାନ୍ୟ ସାମଗ୍ରୀ ଯୋଗାଣକାରୀ ଅଶ୍ୱ ଓ ଗଜବାହିନୀ ପାଇଁ ନିଯୁକ୍ତ ଖାଦ୍ୟ ଯୋଗାଣକାରୀ ତଥା ଅନ୍ୟାନ୍ୟ ସେବାକାରୀଙ୍କୁ ପାଇକର ମର୍ଯ୍ୟାଦା ମିଳୁଥିଲା । ପାରମ୍ପରିକ ଲଢୁଆବାହିନୀର ସମାର୍ଥବୋଧକ ଶବ୍ଦରୂପେ ପାଇକର ଉପଯୋଗ ହୋଇଥିଲା । ବ୍ୟାୟାମ ଓ ସାମରିକ ଅଭ୍ୟାସ ଥିଲା ବୃତ୍ତିଦୃଷ୍ଟିରୁ

ପାଇକମାନଙ୍କ ପାଇଁ ଏକ ରୀତିମତ କାମ । ଗାଁ ଗାଁରେ ଆଖଡ଼ାଘର ଗୁଡ଼ିକ ରହିଥିଲା । ୧୮୧୭ ବିଦ୍ରୋହ ଥିଲା ଓଡ଼ିଶାର ଏକ ପ୍ରମୁଖ ଗଣସଂଗ୍ରାମ । ଏହା ଖୋର୍ଦ୍ଧାରେ ଆରମ୍ଭ ହୋଇ ବଣନିଆଁ ଭଳି ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳକୁ ପରିବ୍ୟାପ୍ତ ହୋଇଥିଲା । ବିଦ୍ରୋହ ଜନିତ ଅଧିକାଂଶ ଘଟଣା ଖୋର୍ଦ୍ଧା ଅଞ୍ଚଳରେ ସଂଗଠିତ ହୋଇଥିଲା । ଖୋର୍ଦ୍ଧାର ପାଇକ ଏବଂ ସେମାନଙ୍କ ନେତା ବକ୍ସି ଜଗବନ୍ଧୁ ବିଦ୍ରୋହରେ ସବୁଠାରୁ ଅଧିକ ସକ୍ରିୟ ଥିଲେ । ଘୁମୁସର ଓ କନ୍ଧମାଳ ଏହି ବିଦ୍ରୋହର ବହ୍ନିକୁ ପ୍ରଜ୍ୱଳିତ କରିବା ଲାଗି ଖୋର୍ଦ୍ଧାରେ ଆସି ପହଞ୍ଚିଥିଲେ । ଏସବୁ ସତ୍ତ୍ୱେ ରାଜ୍ୟର ଦକ୍ଷିଣ ଓ ପୂର୍ବାଞ୍ଚଳର ପାଇକଙ୍କ ସଂପୃକ୍ତି ମଧ ବିଦ୍ରୋହରେ ଊଣା ନଥିଲା । ସେଥିପାଇଁ କବି କହିଛନ୍ତି :-
"କାହିଁ ବିଦେଶରୁ ଫିରିଙ୍ଗି ଆସିଲେ ଧାଇଁ, / ବିଦେଶୀ ଶାସନ ପୁରା ଭରତରେ ଗଲା ଛାଇ । / ଭାରତ ମାଆର ଦୀର୍ଘଦିନର ଶାନ୍ତି ଗାଥାର ଶିର, / ରଖିବା ପାଇଁକି ପାଇକ ଭାଇ ପ୍ରଥମେ ଉଠାଇଲା ସ୍ୱର ।"

ଇତିହାସ କହେ ବକ୍ସି ଜଗବନ୍ଧୁଙ୍କ ସଂଗ୍ରାମର ୧୩ ବର୍ଷ ପୂର୍ବରୁ ୧୮୦୪ ମସିହାରେ ଜୟୀ ରାଜଗୁରୁ ଖୋର୍ଦ୍ଧାରେ ବିଦ୍ରୋହର ଶଙ୍ଖନାଦ କରି ସାରିଥିଲେ । ୧୮୦୪ ମସିହା ପାଇକ ବାହିନୀ ପିପିଲିଠାରେ କମ୍ପାନୀ ସେନା ଉପରେ ଅତର୍କିତ ଆକ୍ରମଣ କରି ଅନେକଙ୍କୁ ଆହତ କରି ପକାଇଥିଲେ । କମ୍ପାନୀର ପ୍ରତି ଆକ୍ରମଣ ଥିଲା ଅଧିକ ତୀବ୍ର ଓ ଯୋଜନାବଦ୍ଧ କମ୍ପାନୀ ସେବା ଖୋର୍ଦ୍ଧାଗଡ଼କୁ ଆକ୍ରମଣ କଲେ ଏବଂ ୩ ଜାନୁୟାରୀ ୧୮୦୫ରେ ରାଜା ଓ ରାଜଗୁରୁଙ୍କୁ ବରୁଣେଇ ଜଙ୍ଗଲରେ ଗିରଫ କଲେ । ବିଚାର ହେଲା, ବିଚାର ପରେ କମ୍ପାନୀ ପ୍ରତି ନରମ ପଡ଼ିଯାଇଥିବା ରାଜାଙ୍କୁ ଖଲାସ୍ କରି ପୁରୀରେ କମ୍ପାନୀର ଆକଟରେ ରଖାଯାଇ ମାସକୁ ମାସ ପେନ୍‌ସନ୍‌ର ବ୍ୟବସ୍ଥା କରାଗଲା । ଅନ୍ୟପକ୍ଷରେ ଅନମନୀୟ ଜୟୀଙ୍କୁ ମେଦିନୀପୁରଠାରେ ୬ ଡ଼ିସେମ୍ବର ୧୮୦୬ଦିନ ଫାଶୀ ଦିଆଗଲା । ଏହା ସହିତ ଖୋର୍ଦ୍ଧାର ପାଇକ ନିଜର ଅଧିନାୟକଙ୍କୁ ହରାଇଥିଲେ - କବି ଲେଖନୀରେ ରୂପ ପାଇଛି :-

"ଜୟୀ ରାଜଗୁରୁ ଜୀବନ ହାରିଲେ ଖୋର୍ଦ୍ଧା ପାଇଁ ଲଢ଼ି ଲଢ଼ି,
ବକ୍ସି ଜଗବନ୍ଧୁ ଛଡ଼ାଇ ଆଣିଲେ ଖୋର୍ଦ୍ଧାର ଗୌରବଧରି ।"

ପାଇକ ବିଦ୍ରୋହରେ ଆମ ଜନ୍ମଭୂମି ଓଡ଼ିଶାର ଅନେକ ବୀରପୁତ୍ର ଯୋଗଦେଇ ନିଜର ପ୍ରାଣବଳି ଦେଇ ଇଂରେଜ ସରକାରଙ୍କ ବିରୋଧରେ ସ୍ୱର

ଉତ୍ତୋଳନ କରିଥିଲେ । ଓଡ଼ିଶାର ପାଇକମାନେ ଆପ୍ରାଣ ଉଦ୍ୟମ କରି ନିଜ ବୀରତ୍ୱର ପରିପ୍ରକାଶ କରିଛନ୍ତି । କୁହାଯାଏ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହୋଇଥିଲା ଓଡ଼ିଶା ୧୮୦୦ ମସିହାରେ । ଓଡ଼ିଶାର ସମସ୍ତ ଜିଲ୍ଲା ଇଂରେଜମାନଙ୍କ ଅଧିନରେ ହୋଇଥିଲେ ମଧ ଓଡ଼ିଶାର ପାଇକ ଜିଲ୍ଲା ଭାବରେ ପରିଚିତ ଖୋର୍ଦ୍ଧାଗଡ଼ ଇଂରେଜମାନଙ୍କ ଅଧିନସ୍ଥ ହୋଇପାରି ନଥିଲା । ଭାରତର ମୁକ୍ତିସଂଗ୍ରାମୀମାନଙ୍କ ଅକ୍ଲାନ୍ତ ଚେଷ୍ଟା ସେମାନଙ୍କ ବଳିଦାନ ଆମକୁ ସ୍ୱାଧିନତାର ସ୍ୱାଦ ଚଖେଇପାରିଛି । କବି ଲେଖନୀରେ :-

"ଖୋର୍ଦ୍ଧା ପାଇକ ସ୍ୱାୟତ୍ତ ଦେଇଛି, / ବରୁଣେଇ ମୁକ ସାକ୍ଷୀ । / ଫିରିଙ୍ଗି ଫେରିଛି ପାଇକ ଲଢ଼ିଛି / ସ୍ୱାଧିନ ଭାରତ ଲାଗି ।"

ଖୋର୍ଦ୍ଧା ବିଦ୍ରୋହ ଆଧୁନିକ ଓଡ଼ିଶା ଇତିହାସରେ ତଥା ଭାରତର ଉପନିବେଶବାଦ ବିରୋଧି ଇତିହାସର ଏକ ମହତ୍ତ୍ୱପୂର୍ଣ୍ଣ ଅଧାୟ । ୧୮୦୩ରେ କମ୍ପାନୀ ଓଡ଼ିଶା ଅଧିକାର କରିବାର ଠିକ୍ ପରେ ପରେ ଏହା ସଂଗଠିତ ହୋଇଥିଲା ଏବଂ ଏକ ବ୍ୟାପକ ଉପନିବେଶବାଦ ବିରୋଧି ପରମ୍ପରାକୁ ଓଡ଼ିଶାରେ ଜନ୍ମ ଦେଇଥିଲା । ଅତ୍ୟାଧୁନିକ କବି ଫନୀ ମହାନ୍ତି ତାଙ୍କ ଦୀର୍ଘ ଚାରି ଦଶନ୍ଧିର କାବ୍ୟ ଯାତ୍ରାରେ ଏକ ସ୍ୱାତନ୍ତ୍ର୍ୟ ବଜାୟ ରଖିଛନ୍ତି । ଶବ୍ଦଚୟନ, ପ୍ରତୀକ ଓ ଭାଷା ବିନ୍ୟାସରେ ସେ ପାଠକକୁ ଆକର୍ଷଣ କରିବା ସହିତ ଖୋର୍ଦ୍ଧା ମାଟିର ଗନ୍ଧରେ ଆନ୍ଦୋଳିତ ହୋଇଛନ୍ତି । ସେ ସ୍ୱପ୍ନ ଦେଖିଛନ୍ତି ଗୋଟିଏ ନୂତନ ସମାଜ ବ୍ୟବସ୍ଥାର । ଯେଉଁଠି ପ୍ରେମ ଓ ମୈତ୍ରୀର ପାଦପଥିବ । ଯେଉଁଠି ସନ୍ତାପ ନଥିବ । ମୈତ୍ରୀ ପାଦପର ଶାଖାରୁ ଝରୁଥିବ କେବଳ ଶାନ୍ତି ଓ କରୁଣା । ସେଥିପାଇଁ ସେ କହିଛନ୍ତି :-

"କଥା କହ / ପ୍ରେମ ମୈତ୍ରୀର / ଭେଦାଭେଦ ଭୁଲିଯାଇ / ସବୁ ନଗ୍ର ଭାଙ୍ଗିଦେବା / ଲହୁ ଲୁହ ଏକ କରି ଗଢ଼ିଦେବା / ଗୋଟିଏ ନଗର ।"

ସେହିଭଳି କବି ନୀଳାଦ୍ରୀଭୂଷଣ ହରିଚନ୍ଦନଙ୍କ କବିତା ଗୁଡ଼ିକରେ ମିଥ୍‌ର ବ୍ୟବହାର ଅଧିକ ରହିଥିଲେ ହେଁ ପରମ୍ପରା, ଲୋକ ଉପାଦାନ, ଲୋକାନୁଷଙ୍ଗ କବିତାକୁ କରିଚି ସମୃଦ୍ଧିବନ୍ତ । ଜୀବନକୁ ଭଲପାଉଥିବା ଏହି କବିଟି ଭଲପାଆନ୍ତି

ମାଟିକୁ, ପ୍ରକୃତିକୁ ଜଗତର ସମସ୍ତ ସତ୍ତାକୁ । ସବୁ ପରାଜୟ ସବୁ ଗ୍ଲାନି ଭିତରେ ମଧ୍ୟ ସେ ଆଶାବାଦୀ ହୋଇ ଉଠିଛନ୍ତି । ସେହିଭଳି ଅନ୍ୟତମ କବି ଗିରିଜା ବଳିୟାରସିଂ । ଉତ୍ତର ସତୁରୀ କାବ୍ୟ ସ୍ୱରର ଜଣେ ସଫଳ ଶବ୍ଦର ଯାଦୁକର । କବିଙ୍କ କବିତାରେ ପ୍ରଣୟଚେତନା ସହିତ ଦେଶାତ୍ମବୋଧ ତଥା ଜାତୀୟତାର ସ୍ୱର ଝଙ୍କାର ଫୁଟି ଉଠିଛି । ତାଙ୍କ ଭାରତବର୍ଷ କବିତା ଗ୍ରନ୍ଥରେ କବି ଆକୁମାରୀ ହିମାଳୟ ପର୍ଯ୍ୟନ୍ତ ଖୋଜିଛନ୍ତି ଏକ ସୁନ୍ଦର ଭାରତ ବର୍ଷକୁ । ଇତିହାସ ପୃଷ୍ଠାରୁ ଆରମ୍ଭ କରି ଭୂଗୋଳବହିରେ, କିମ୍ବଦନ୍ତୀ ଜନଶ୍ରୁତିରୁ ଆରମ୍ଭ କରି ପୁରାଣର ପ୍ରତିଟି ପୃଷ୍ଠାରେ କବି ଖୋଜି ଚାଲିଛନ୍ତି ତାଙ୍କ ସ୍ୱପ୍ନର ଭାରତ ବର୍ଷକୁ । ପର୍ବତ, ବଣ, ଜଙ୍ଗଲ, ବଙ୍ଗଦେଶରେ ପୁଣି ବାରଙ୍ଗରେ ପୁଣି ଖଣ୍ଡଗିରିରେ ତ ପୁଣି ଖୋର୍ଦ୍ଧାର 'ଖଣ୍ଡାଧାର'ରେ -କବିଙ୍କ ଭାଷାରେ :-

"ତମେ କେଉଁଠି ଅଛ ? / କଳାହାଣ୍ଡିରେ, କଳିଙ୍ଗରେ, କାଲାହାରୀରେ / କୁରୁକ୍ଷେତ୍ରରେ, କୋଣାର୍କରେ, କୋରାପୁଟରେ, / କୋଶଳରେ, କୋହିମାରେ । / ପୁରାଣର ପ୍ରଶ୍ନ ପାତାଳରେ / ପ୍ରାଚୀ ଉପତ୍ୟକାର ପ୍ରୋଥିତ ପ୍ରବାଳରେ / ପାଉଁଶିଆ ପାଗଳୀ ପୁତ୍ରରେ / ଶବ୍ଦରେ ସୁତ୍ରରେ, ପୋଥିପତ୍ରରେ / ଛତ୍ରରେ ଛତ୍ରରେ / ତମେ କେଉଁଠି ଅଛ ସତରେ ? / ନୀରରେ / ନୀରାରେ / ନାରୀରେ ? / ନୁଖୁରା ନାଡ଼ିରେ / ନୀରାଜନାର ଧୂସର ଧାଡ଼ିରେ / ନରକର ନୟନ ଯୋଡ଼ିରେ / କାଳକୂଟର କରୁଣ କାଠଯୋଡ଼ିରେ / ଧୂଳିରେ, ବାଲିରେ, ଗୋଡ଼ିରେ ? / ମାଟିର ମରିଚରେ, / ମାୟାର ମାରୀଚରେ ? ପ୍ରବୃତ୍ତିରେ ନିବୃତ୍ତିରେ ? / ଭୂତିରେ ବିଭୂତିରେ ? ? ?"

ଖୋର୍ଦ୍ଧାଗଡ଼, ପାଇକପୁଅ ସମଗ୍ର କଳିଙ୍ଗ ତଥା ଭାରତ ବର୍ଷ ରୂପ ପାଇଛି କବି ଲେଖନୀରେ । କିନ୍ତୁ, ସେହି ପାଇକମାନଙ୍କ ଯନ୍ତ୍ରଣାକୁ ଆମେ ଯଦି କିଛିଟା ଅନୁଭବ କରିପାରିବା ତାହେଲେ ଭାରତୀୟ ମୁକ୍ତି ସଂଗ୍ରାମକୁ ଆମେ କିଛି ମାତ୍ରାରେ ବୁଝି ପାରିବା । ସୋପେନ୍ ଆର୍‌ଙ୍କ ମତରେ ଯନ୍ତ୍ରଣା ଏକ ସାର୍ବଜନୀନ ସତ୍ୟ । ଯନ୍ତ୍ରଣା ବିନା ଚେତନାର ଜାଗରଣ ସମ୍ଭବପର ନୁହେଁ । ସେହି ଚେତନାକୁ ଜାଗ୍ରତ କରିବା ସମସ୍ତେ ଏକାଠି ମିଶି । ଏବେ .....

# କବି କାଳୀଚରଣ ଏକ ଅନନ୍ୟ ପ୍ରତିଭା

ଡ. ଶାନ୍ତନୁ କୁମାର ନାୟକ

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓଡ଼ିଶାରେ ଏକ ପରିଚିତ ନାମ । ଓଡ଼ିଆ ସାରସ୍ଵତ ଜଗତରେ ଏ ନାମଟି ହେଉଛି ଏକ ଅମ୍ଳାନ କୀର୍ତ୍ତିସ୍ତମ୍ଭ । ଓଡ଼ିଶାର ଅନ୍ୟତମ ବଳିଷ୍ଠ ମାଟି କଟକ ଜିଲ୍ଲାର 'ବଡ଼ାମ୍ବା'ରେ ଭୂମିଷ୍ଠ ହୋଇଥିଲେ ଏ ପ୍ରଥିତ ଯଶା ସାଧକ ୧୮୯୭ ଖ୍ରୀଷ୍ଟାବ୍ଦ ଡିସେମ୍ବର ୨୩ ତାରିଖରେ । ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି ବାଲ୍ୟକାଳରେ ଏହାଙ୍କଠାରେ ପ୍ରତିଭାର ସ୍ଫୁରଣ ହୋଇଥିଲା । "କଥାରେ ଅଛି ଡାଳକୁ ଦେଖିବା ପୂର୍ବରୁ ମୂଳକୁ ଲକ୍ଷ୍ୟ କର ।" ସେହି ଦୃଷ୍ଟିରୁ ଅନୁଶୀଳନ କଲେ ଜଣାଯାଏ ଯେ କାଳୀଚରଣ ରୂପକ ସୁବୃକ୍ଷର ମୂଳ ଅତି ଟାଣ ଥିଲା । କାରଣ ତାଙ୍କ ପିତା ଦୁର୍ଗା ଚରଣ ପଟ୍ଟନାୟକ ଥିଲେ ଓଡ଼ିଶୀ ସଙ୍ଗୀତର ଜଣେ ପ୍ରବୀଣ ଭକ୍ତ । ପୁଣି ମାତା ରାଧାମାଳି ଦେବୀଙ୍କ ବୀଣାଜୀଣା କଣ୍ଠରୁ ଝରି ପଡୁଥିବା ଛାନ୍ଦ, ଚଉପଦୀ, ଛଉତିଶା, ଜଣାଣ ଆଦି ମଧ ବହୁବାର ତାଙ୍କର କର୍ଣ୍ଣ ଗୋଚର ହେହାଇଥିଲା । ଫଳତଃ ଏ ଦୁଇ ଜଣଙ୍କ ସୁପ୍ରଭାବ ଯେ ତାଙ୍କୁ ସାରସ୍ଵତ ଜଗତରେ ଦଣ୍ଡାୟମାନ କରାଇବାର ଅନ୍ୟତମ ଉପାଦାନ; ତାହା ନ କହି ରହି ହୁଏ ନାହିଁ ।

ପ୍ରକୃତ ପକ୍ଷେ କାଳୀଚରଣ ଥିଲେ ଜଣେ ମେଧାବୀ ଛାତ୍ର । ଶିକ୍ଷା ସହିତ ଏ ଛାତ୍ର ବସ୍ଥାରୁ ତାଙ୍କ ପାଖରେ ଉକୁଟି ଉଠିଥିଲା କବି ପ୍ରତିଭା । ତେଣୁ ସ୍କୁଲ ଛାତ୍ର ଥିବା ବେଳେ ତାଙ୍କ ଲେଖନୀ ମୁନରୁ ଝରି ଆସିଥିଲା "ଉଦୁଉଦୁମା" ଶୀର୍ଷକ କବିତା । କଥାରେ ଅଛି – "ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ ।" ସେହି ଉକ୍ତି ଜଳଜଳ ହୋଇ ତାଙ୍କ ଭାଗ୍ୟରେ ପ୍ରତିଫଳିତ ହୋଇଥିଲା । କଲେଜ ଶିକ୍ଷା ପୂର୍ଣ୍ଣାଙ୍ଗ ନ ହେଉଣୁ ସେ ପିତୃହରା ହୋଇଗଲେ । ତେଣୁ ଭାଗ୍ୟଡୋରୀ ଭିନ୍ନ ମୋଡ଼ ନେଲା । ଶିକ୍ଷାଲାଭରୁ ବଞ୍ଚିତ ହୋଇ ସେ ଟାଣିହୋଇ ଆସିଲେ ଏକ ସର୍ଜନାତ୍ମକ କଳାକାର ପଥକୁ । ଅନୁଶୀଳନ କଲେ ଜଣାଯାଏ ଯେ ସତେ ଯେପରି ଓଡ଼ିଶାର ସାଂସ୍କୃତିକ ଜୟଯାତ୍ରା ତାଙ୍କୁ ଅପେକ୍ଷା କରି ବସି ରହିଥିଲା ।

ସେତେବେଳକୁ ଲୀଳାନାଟକମାନ ଗଦ୍ୟ ସଂଳାପରେ ସଂଯୋଜିତ ହୋଇ ନୂଆରୂପ ନେଇ ସାରିଥାଏ । କିନ୍ତୁ କାଳୀଚରଣ ସେ କ୍ଷେତ୍ରରେ ପାଦ ଦେଇ ତା'ର ପ୍ରାକ୍ତନ ପରମ୍ପରାକୁ ଅକ୍ଷୁଣ୍ଣ ରଖିବା ପାଇଁ ଉଦ୍ୟମ ଅବ୍ୟାହତ ରଖିଥିଲେ । ତେଣୁ ତାଙ୍କ ରଚିତ ଲୀଳାନାଟକମାନ ପୁନରପି ସଙ୍ଗୀତମୟ ହୋଇ ଉଠିଥିଲା । ଆଉ ସେତେବେଳେ ତାଙ୍କ ସଙ୍ଗୀତ ସଂଯୋଜନା ଓ ଗାନ ଏତେ ପ୍ରଭାବଶାଳୀ ହୋଇ ଉଠିଲା, ଯାହା ତାଙ୍କୁ ଅତିଶୀଘ୍ର ଲୋକପ୍ରିୟ କରାଇବାରେ ସହାୟକ ହୋଇଥିଲା । ଫଳତଃ ସେହି ସୁପରିବେଶ ତାଙ୍କୁ କିଛି ସଙ୍ଗୀତ ଆଚ୍ଛାଦିତ ଲୀଳାନାଟକ ରଚନା କରିବା ପାଇଁ ପ୍ରେରଣା ଯୋଗାଇଥିଲା । ଆଉ ତା'ରି ଫଳରେ ୧୯୨୦ ମସିହାରୁ ୧୯୩୮ ମସିହା ମଧ୍ୟରେ ସିଏ "କୌତୁକ ଚିନ୍ତାମଣି", "ବନବିହାର", "ବିଦ୍ୟାବଳୀ", "ଆଖିର ଦେଖା", "ଗୀତାଗୋବିନ୍ଦ", "ପ୍ରୀତିସୁଧାକର", "ମାନିନୀ", "ବଂଶୀର ବିଳାପ", "ଶ୍ରୀରାଧା", "ମିଳନ ମାଧୁରୀ", "କଳିଙ୍ଗ ଭଞ୍ଜନ", "ଦରିଦ୍ର ଭଞ୍ଜନ" ଆଦି ଲୀଳା ନାଟକମାନ ରଚନା କରି ଯାଇଥିଲେ । ସେ ନିଜେ କଳାକାର ଥିବାରୁ ସଙ୍ଗୀତଗାନ ସହିତ ଅଭିନୟ ମଧ୍ୟ କରି ପାରୁଥିଲେ । ଆଉ ଏକ କଳାକାର ଜୀବନ ତାଙ୍କୁ ଯେ କେବଳ ଜଣେ ଉତ୍ତମ ନାଟ୍ୟକାର ଭାବରେ ଗଢ଼ିତୋଳିଥିଲା ତା ନୁହେଁ; ଅପରନ୍ତୁ ଜଣେ କବି ଭାବରେ ମଧ୍ୟ ଦୃଢ଼ ସ୍ୱୀକୃତି ପ୍ରଦାନ କରିଥିଲା । ତେଣୁ ତାଙ୍କ ଲେଖନୀରୁ ଉଦ୍ଭୂତ ହୋଇଥିଲା କବିତା ପୁସ୍ତକ 'କଳାହାଣ୍ଡିଆ ମେଘ', 'ବାୟା ଧନଟି', ଆଉ ଭକ୍ତି ସଙ୍ଗୀତ 'ବରଣମାଳା' ।

ତାଙ୍କ ରଚିତ କବିତା ଗୀତିକାର ଓ ସଙ୍ଗୀତଜ୍ଞମାନଙ୍କୁ ଏତେ ଆକୃଷ୍ଟ କଲା ଯେ ସେମାନେ ତାହାକୁ ନ ଗାଇ ରହିପାରିଲେ ନାହିଁ । ଆକାଶବାଣୀ କେନ୍ଦ୍ରରୁ ସଙ୍ଗୀତଜ୍ଞ ସିକନ୍ଦରା ଆଲାମଙ୍କ କଣ୍ଠରୁ ସେଦିନ ଝରି ଆସିଥିଲା ତାଙ୍କର ସୁନ୍ଦର ସଙ୍ଗୀତ -

"ଯେ ନୟନ ରଙ୍ଗ ହରା, ସାଜେ କି କଜଳ ଗିରା / ଯେ ଫୁଲେ କେଶର ଝରା, ତୁମେ କି ତାର ଭ୍ରମରା । / ଯେ ନୟନ ରଙ୍ଗ ହରା..... (୧) / ଯେ ଅଧର ଛୁଇଁ ନାହିଁ, ଛୁଇଁ ନାହିଁ, ଛୁଇଁ ନାହିଁ / ପ୍ରିୟ ଲାଗି ହସ ଛାଇ / ସେ କି ଚଖି ପାରେ କେବେ ମିଳନ ରସ ମଧୁରା । (୨) / ଅକୁହା କଥାଟି କହି, ଆଖି ଯା'ର ଶିଖି ନାହିଁ / କିଏ ସେ କହିବ ତା'ର, ମନ ଘରା ପ୍ରୀତି ଭରା । (୩) / ଶୁଣି କୋଇଲି କୁହୁ କୁହୁ କୁହୁ

କୁହୁ କୁହୁ / ଥରେ ଯେ ନ କଲେ ଉହୁ ଉହୁ ଉହୁ ଉହୁ / ବିରହ ଯାତନା ତା'ର ହେବ କାହୁଁ ଛାତି ଚିରା ।" (୪)

ଏ କବିତାରେ ପ୍ରୀତିରସର ଅମିୟ ଝରଣାକୁ କବି କେବଳ ପାଠକକୁ ନୁହେଁ; ଅପରନ୍ତୁ ଅନୁଭବୀଙ୍କ ହୃଦୟ ମଧରେ ଭରିଦେବା ପାଇଁ ସତେ ଯେମିତି ଶତମୁଖୀ ହୋଇ ଉଠିଛନ୍ତି ।

ସେହିପରି ତାଙ୍କ ରଚିତ 'ବନ୍ଦେ-ପ୍ରେମମୟୀ ରାଧା' କବିତା ପଠନ ଓ ଶ୍ରବଣ ପରେ ଜୟଦେବଙ୍କ ଗୀତ ଗୋବିନ୍ଦ ଆଉଥରେ ପାଠକ ମାନଙ୍କ ସ୍ମରଣ ପିଣ୍ଡିକୁ ଆପେ ଆପେ ଟାଣି ହୋଇ ଆସେ । ଏ କବିତାଟି ପୁରୁଷ ଓ ସ୍ତ୍ରୀ ମୁଖରେ ଅପୂର୍ବ ଢଙ୍ଗରେ ଉପସ୍ଥାପିତ ହୋଇଛି ।

"ପୁ - ବନ୍ଦେ ପ୍ରେମମୟୀ ରାଧା ଚରଣ ଭିକାରୀ / ପ୍ରଣମେ ଶ୍ରୀ ଗୁରୁ କଣ୍ଠେ ସ୍ୱର ଦିଅ ଭରି / ମଣିମା ମାଗେ କରୁଣା, ତୁମ୍ଭଙ୍କୁ ଜୁହାରି / ସଭାଜନେ ଦୋଷାଦୋଷ ନଘେନ ମୋହରି । (୧)

ସ୍ତ୍ରୀ - ଛି' ଛି' କାହିଁକି କରୁଛ ଭଲା ତୁମେ ଏତେ ଜୁହାର / ଆଗେ ପାଦ ଛୁଇଁ ମୋର ଗାଇବାକୁ ବାହାର ।

ପୁ - ଦେଲିପଦ ପଲ୍ଲବ ନିହାର କହି ଠାକୁର / ପ୍ରେମଲାଗି ପରା ଧରିଥିଲେ ରାଧା ପୟର / ସେ ପ୍ରେମ ପାଇବି କାହିଁ, ଜାଣିଥିଲେ ଦିଅ କହି / ସେବା ମୁଁ କରିବି ଯାଇ ପାଦ ଧରି ତାହାର ।

ସ୍ତ୍ରୀ - ପ୍ରେମ କହିଲେ କି ଜାଣ କହତ ବୁଝାଇ / ପୁରୁଷପଣ ତୁମ୍ଭର ଟିକେ ହେଲେ ନାହିଁ / ଏଇ ଆଖି ଅଧର ପ୍ରେମ ଟଉବନ /ବୁଝି ନପାରେ ଯିଏ ଧିକ ତା' ଜୀବନ.. ।

ପୁ - କାହିଁ ପ୍ରେମ କାହିଁ ଥିଲେ ଦିଅ କହି / ଲୀନ ହେବି ପଦେ ତା'ର..... ।"

କବିଙ୍କର ଏ ଉକ୍ତି ଶ୍ରବଣ ପରେ ବିଦଗ୍ଧ କବି ଅଭିମନ୍ୟୁଙ୍କର "ବିଦଗ୍ଧ ଚିନ୍ତାମଣି" କାବ୍ୟସ୍ଥ ୩୯ ଛାନ୍ଦ ଓ ୪୨ ଛାନ୍ଦର ପ୍ରୀତି ବର୍ଣ୍ଣନା ସ୍ୱତଃ ଚକ୍ଷୁ ସମକ୍ଷରେ ବିଭାଷିତ ହୋଇ ଉଠେ -

"କହନ୍ତି ଧରି ବିଶାଖାଙ୍କ ହାତ / କହ ପୀରତିକି ଜାତ ପଦାର୍ଥ / କାହୁଁ ଏ ଅଇଲା / କେଉଁ ଦଇବ ଏହା ଭିଆଇଲା....।"

ଖାଲି ଏତିକି ନୁହେଁ; ତାଙ୍କ ରଚିତ ନାଟକଗୁଡ଼ିକ ମଧରେ ସ୍ଥଳ ବିଶେଷରେ

ପାତ୍ରୋଚିତ ସଙ୍ଗୀତମାନଙ୍କ ସଂଯୋଜିତ ହୋଇଛି । 'ଭାତ' ନାଟକଟି ହେଉଛି ତାଙ୍କ ପ୍ରତିଭାର ସର୍ବଶ୍ରେଷ୍ଠ ନିଦର୍ଶନ । ଏହାର ଲୋକପ୍ରିୟତାର କାରଣ ହେଉଛି, ଏଥିରେ ପ୍ରଯୁକ୍ତ ହୋଇଥିବା କାଳୋଚିତ୍ତ ବିଷୟବସ୍ତୁ ଓ ପାତ୍ରୋଚିତ୍ତ ସଂଳାପ । ଓଡ଼ିଶାର ଏକ ବଳିଷ୍ଠ ଦୁର୍ଭିକ୍ଷର ଚିତ୍ରକୁ ଆଧାର କରି ଗଢ଼ି ଉଠିଛି ଏହାର କଳେବର । ଉଦାହରଣ ଛଳରେ ଏଥିରେ ସଂଯୋଜିତ ହୋଇଥିବା ସଂଗୀତ ଗୁଡ଼ିକର ଯଥାର୍ଥତା ଉପରେ ଆଲୋକପାତ କରିବା ପ୍ରାସଙ୍ଗିକତା ମନେ କରୁଛି ।

ଏହି ନାଟକର ପ୍ରଥମ ଅଙ୍କ ୪ର୍ଥ ଦୃଶ୍ୟରେ ଜମିଦାରଙ୍କ ସଦର ମେଳା ଆଗରେ ରାସ୍ତାରେ ଭିକାରୀଟିଏ ଗାଇ ଗାଇ ଯାଉଥିବା ଗୀତଟିରେ ଅଛି କରୁଣ ରସର ଅଖଣ୍ଡ ପ୍ରବାହ । ଦୁର୍ଭିକ୍ଷ ପ୍ରପୀଡ଼ିତ ନିରନ୍ନ ଭୋକିଲା ପ୍ରାଣର ମର୍ମ ବେଦନା ଅତି ଚମତ୍କାର ଢଙ୍ଗରେ ପ୍ରକଟିତ ହୋଇଛି :-

"ଜଳିବାକୁ ନାହିଁ କାହାଘରେ ସଞ୍ଜସଳିତା / ଖାଇବାକୁ ମିଳୁନାହିଁ ପେଜ ପଳିତା ।"

ଏତଦ୍ ବ୍ୟତୀତ ତତ୍‌କାଳୀନ ଦୂରବସ୍ଥାର ବାସ୍ତବ ଚିତ୍ର ଉପସ୍ଥାପନ କରିବାକୁ ଯାଇ ପୁଣି ସିଏ ଗାଇଛି -

"ପାଟ ପିତାମ୍ବର କିଏ ପିନ୍ଧୁଛି ଅସୁମାର /ଗଇଁଠା କବଟା ଖଣ୍ଡ ପେଡ଼ିଲୁଗା କାହାର ।"

ପୁଣି ମାଟିମାଆର ଦାନକୁ କାଳେ କାଳେ ମଣିଷ ସ୍ୱୀକାର କରି ଆସିଛି । ତାକୁ ଅବହେଳା କଲେ ମଣିଷ ବିପଦ ଆଡ଼କୁ ପ୍ରଧାବିନି ହୋଇଥାଏ । ଷଷ୍ଠ ଦୃଶ୍ୟରେ ଏଇ କଥାକୁ ନାଟ୍ୟକାର ପାତ୍ରୀ ରମା ମୁଖରେ ଉପସ୍ଥାପନ କରିଛନ୍ତି, ଯଥା:-

"ଦେଇ ବୁକୁ ବିଦାରି / ମାଆ ରଖିଛି ଖଣ୍ଡ କ୍ଷୀରିରେ । / ଅଣହେଳା କଲେ ମାଆକୁ / ଭାଙ୍ଗିବ ବାଟ ବଧା ଘରଖଣ୍ଡି, / ଆଗପଛ ସାହା କେହି ନ ହୋଇବେ / ମରିବୁ ସିନା ଦରାଣ୍ଡିରେ ।"

ଏତଦ୍ ବ୍ୟତୀତ ଦୁର୍ଭିକ୍ଷର କରାଳ ଗ୍ରାସରେ ପ୍ରପୀଡ଼ିତ ହୋଇଥିବା ପ୍ରଜାମାନଙ୍କର ଆର୍ତ୍ତଚିତ୍କାର ସତେ ଯେପରି ରାଜାଙ୍କର ହୃଦୟ ସିଂହାସନକୁ ଦୋହଲାଇ ଦେଇଛି । ଦ୍ୱିତୀୟ ଅଙ୍କର ଦ୍ୱିତୀୟ ଦୃଶ୍ୟରେ ସଙ୍ଗୀତ ମାଧମରେ ଏ ଚିତ୍ର ସ୍ପଷ୍ଟ ପ୍ରତିଭାତ ହୋଇଛି ।

ପ୍ରେମ ଓ ଭଲ ପାଇବାର ଏକ ଆଲେଖ୍ୟ ଦେବାକୁ ଯାଇ କବି ଜୟୀ ଜରିଆରେ ଉପସ୍ଥାପନ କରିଛନ୍ତି -

"ସେ ନହୁଲୀ ବୟସୀ କାଖରେ କଳସି ଗଢ଼ି ମନ୍ଥର ତା'ର
କିଏ ଜାଣିଥିଲା ପଡ଼ିଯିବ ଧରା ଆଖି ସତେ ହେବ କାଳ ।"

ସର୍ବୋପରି ସାମ୍ପ୍ରତିକ ସ୍ଥିତି, ସୌନ୍ଦର୍ଯ୍ୟର ଉପାସନା ଓ ପ୍ରେମର ଅଫୁରନ୍ତ ପ୍ରବାହ ସହିତ କବି ଥିଲେ ଗଭୀର ସଂସ୍କୃତି ପ୍ରେମୀ ଓ ପରମ୍ପରାଶ୍ରୟୀ । ସେଥିପାଇଁ ଷଷ୍ଠଦୃଶ୍ୟରେ ଦୁଇଜଣ ଯୋଗୀକଣ୍ଠରେ ଅନୁପମ ସଙ୍ଗୀତର ଇସ୍ତାହାର ବାଢ଼ିଛନ୍ତି । ଦୁର୍ଭିକ୍ଷ ଜନିତ କରାଳଚିତ୍ରକୁ ରାମାୟଣର କଥାବସ୍ତୁ ଭିତରେ ଅତି ଚମତ୍କାର ଶୈଳୀରେ ଉପସ୍ଥାପନ କରିଛନ୍ତି । ଯଥା :-

"ଅଖ ବୁଲୁଥିଲେ ଚକ ବୁଲୁଥାଇ, ପଥର ପଡ଼ିଲେ ସହି
ଅଢ଼େଇ ଦିନକୁ କୁଣିଆ ସଭଏଁ, କାହାର ନୁହେଁ ଏ ମହୀ ।"

ଯାହା ହେଉ ଜୀବଦ୍ଦଶାରେ ନାଟକ ସହିତ ଅନେକ ଶିଶୁ କବିତା, ଭଜନ, ଜଣାଣ, କବିତା, ଆଦି ରଚନା କରି ସେ ସାରସ୍ୱତ ଜଗତକୁ ଋଦ୍ଧିମନ୍ତ କରି ଯାଇଛନ୍ତି । ବିଶେଷ କରି ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ସମ୍ବନ୍ଧରେ ଗବେଷଣାତ୍ମକ ପ୍ରବନ୍ଧମାନ ଲେଖି ଓଡ଼ିଶା ସଙ୍ଗୀତ ଓ ନୃତ୍ୟର ପ୍ରାଚୀନତା ତଥା ଆନ୍ତର୍ଜାତୀୟ କ୍ଷେତ୍ରରେ ଏସବୁର ଆଦର ବୃଦ୍ଧି କରାଇବାରେ କ୍ଷମ ହୋଇଥିଲେ । ଅଧିକନ୍ତୁ ତାଙ୍କର ଏହି ଅସାମାନ୍ୟ ସଙ୍ଗୀତଜ୍ଞାନ ଓ ସାଧନା ପାଇଁ ୧୯୨୬ ଖ୍ରୀଷ୍ଟାବ୍ଦ ସୁନିଆଁ ଦିନ ପୁରୀର ଗଜପତି ରାମଚନ୍ଦ୍ରଦେବ ତାଙ୍କୁ 'କବିଚନ୍ଦ୍ର' ଉପାଧିରେ ଭୂଷିତ କରିଥିଲେ । ଏତଦ୍‌ବ୍ୟତୀତ ଉତ୍କଳସାହିତ୍ୟ ସମାଜ ଦ୍ୱାରା "ନାଟ୍ୟାଚାର୍ଯ୍ୟ" ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ସମ୍ମାନ ସୂଚକ ଡ଼କ୍ଟରେଟ୍ ଉପାଧିରେ ମଧ୍ୟ ସିଏ ବିଭୂଷିତ ହୋଇଥିଲେ ।

କାଳର କରାଳ ଗତି ନିୟତିର ଧାରାକୁ ପ୍ରତିହତ କରିବାକୁ ବା ଶକ୍ତି ଅଛି କାହାର ? ଉତ୍କଳ ଜନନୀଙ୍କର ଏ ସୁଯୋଗ୍ୟ ସନ୍ତାନ ବେଶିଦିନ ତାଙ୍କ ପାଖରେ ରହିପାରିଲେ ନାହିଁ । ୧୯୭୮ ମସିହା ଜୁଲାଇ ମାସ ୨୪ ତାରିଖ ଦିନ କାଳ ଡୋରିରେ ବନ୍ଧା ହୋଇ ଆର ପାରିକୁ ଚାଲିଗଲେ । ହେଲେ ଏ କାଳଜୟୀ ସ୍ରଷ୍ଟାଙ୍କର ନାମ ଯେ ଓଡ଼ିଆ ସାହିତ୍ୟ ଇତିହାସରେ ଚିରକାଳ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଗଲା; ଏହା ନ କହି ରହି ହୁଏ ନାହିଁ ।

# କବି ଗୋଦାବରୀଶ ମହାପାତ୍ର : ସଂକ୍ଷିପ୍ତ ଆକଳନ

ପ୍ରଫେସର ନିତ୍ୟାନନ୍ଦ ଶତପଥୀ

କବି ଗୋଦାବରୀଶ ମହାପାତ୍ରଙ୍କ ଜୀବନ ଅବଧି ହେଉଛି ୧୮୯୮ ରୁ ୧୯୬୫ ଅର୍ଥାତ୍ ମାତ୍ର ୬୭ ବର୍ଷ । ଏହି ଅବଧି ମଧ୍ୟରେ ବିପୁଳ ଯଶା କବି 'ଉଠ କଙ୍କାଳ', 'ବଙ୍କା ଓ ସିଧା', 'କଣ୍ଟା ଓ ଫୁଲ', 'ପାହାଚ ତଳର ଘାସ', 'ଯେ ଫୁଲ ଫୁଟିଥିଲା', ଆଦି ୮ଟି କବିତା ପୁସ୍ତକ, 'ନିଆଁଖୁଣ୍ଟା'ର ବିଭିନ୍ନ ସଂଖ୍ୟାରେ ରାଶି ରାଶି କବିତା ଲେଖି ଯାଇଛନ୍ତି ଯାହାର ମୂଲ୍ୟାୟନ ଏ ଯାବତ୍ ଯଥାର୍ଥ ଭାବେ ହୋଇନାହିଁ । ତାଙ୍କର ପ୍ରଥମ ପର୍ଯ୍ୟାୟ କବିତା ଗୁଡ଼ିକ ୧୯୧୪-୨୧ ମଧ୍ୟରେ ରଚିତ ଓ ତହିଁରେ ରାଧାନାଥ, ଗୋଦାବରୀଶ ମିଶ୍ରଙ୍କ ପ୍ରଭାବ ସ୍ପଷ୍ଟ। ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ର ଭାବେ ଯୋଗ ଦେବା ପରେ (୧୯୧୫) ସେ ଓଡ଼ିଶାର ମହାନ୍ ବ୍ୟକ୍ତିମାନଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ କବିତାର ମୁଖ୍ୟ ଚେତନା ଜାତୀୟ ଭାବନା ଦ୍ୱାରା ପ୍ରଭାବିତ ହୋଇଥିଲେ ।

ଏହି ଭାବନାର ଫଳଶ୍ରୁତି ତାଙ୍କ ପ୍ରଥମ ପ୍ରଭାବଶାଳୀ କବିତା 'ଉଠ କଙ୍କାଳ' (୧୯୩୧), ଯାହା ୧୯୩୨ରେ 'ସହକାର' ମାସିକ ପତ୍ରିକାରେ 'ଶ୍ମଶାନ ପୂଜାରୀର ଆହ୍ୱାନ' ଶୀର୍ଷକରେ ପ୍ରଥମେ ପ୍ରକାଶ ପାଇଥିଲା । କିନ୍ତୁ ରଚିତ ହୋଇଥିଲା ମେଦିନୀ ପୁର ଅଞ୍ଚଳରେ ୧୯୩୧ରେ ବୋଲି କବି ନିଜେ ଉଲ୍ଲେଖ କରିଛନ୍ତି । ଓଡ଼ିଶୀ ଜାତୀୟତାର ଉଗ୍ର ଉଦ୍‌ବୋଧନ ସଙ୍ଗୀତ 'ଉଠ କଙ୍କାଳ' ଖୁବ୍ ପ୍ରଭାବଶାଳୀ ଥିଲା ସେତେବେଳେ ଓ ଆଜି ମଧ୍ୟ । ଏଇ ପର୍ଯ୍ୟାୟରେ ଭାରତ ସ୍ୱାଧୀନତା ପର୍ଯ୍ୟନ୍ତ ସେ ଯେତେ ଯେତେ କବିତା ଲେଖିଥିଲେ, ସେ ସବୁର ଆହ୍ୱାନଧର୍ମିତା ଓ ଉଦ୍‌ବୋଧନଶୀଳତା ଥିଲା ଉତ୍କଳ ଓ ପରେ ଭାରତକୁ କେନ୍ଦ୍ର କରି । 'ଦେଖେ ମୁହିଁ ବିରାଟ ଉତ୍କଳ' କବିତାରେ କବି ଲେଖିଛନ୍ତି :-

"ମୋ ଉତ୍କଳ ଛଡ଼ା ଆଉ ଦେବତା କେ ନାହିଁ / ଶୁଣିଲି ସେ ଉତ୍କଳର ଜୟ ଜୟକାର / ନିର୍ଜୀବ, ନିର୍ବେଦ ଶିଳା ଗାଏ ଅନିର୍ବାର ।" (ନବଭାରତ-୧୯୩୫)

ସେତେବେଳେ ଏଇ ଭାବଧାରାରେ ଯେତେ ଯେତେ କବିତା ରଚିତ ହୋଇଥିଲା 'ଉଠ କଙ୍କାଳ' ଥିଲା ସବୁଠାରୁ ଉଦ୍‌ବୋଧନଶୀଳ କବିତା ।

"ଉଠ କଙ୍କାଳ, ଉଠ ଦୁର୍ବଳ, ଜାଗ କଙ୍କାଳ ଆଦି
ଉଠୁ ଗତଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।"

ଏହାହିଁ ସତ୍ୟବାଦୀ କାବ୍ୟାନୁଚିନ୍ତାର ଐତିହାସିକ ଦୃପ୍ତ ପ୍ରେରଣା ଓ ଅଗଣିତ ସ୍ତବ । ଓଡ଼ିଆ କଣ୍ଠର ଭାଷା ଯାହା ଅଭିନବ ପ୍ରାଣଶକ୍ତିରେ ହୋଇଥିଲା ସଜୀବ ଓ ଜାଗ୍ରତ । ଜାତୀୟ ଐତିହ୍ୟର ଗଭୀର ସମ୍ମାନବୋଧରେ, ଅତୀତର ଗୁରୁଗୌରବ ଗାନରେ ପୁଣି ଭବିଷ୍ୟତର ବଳିଷ୍ଠ ଆଶାବାଦିତାରେ ଏଇ କବିତାଟି ସହସ୍ର କଣ୍ଠରେ ସେତେବେଳେ ନିର୍ଘୋଷିତ ହୋଇ ଓଡ଼ିଶାର ଜାତୀୟ ଜୀବନରେ ତୋଫାନ ସୃଷ୍ଟି କରିଥିଲା । ଏହା ରଚିତ ହେବାର ପାଞ୍ଚ ବର୍ଷ ପରେ ୧୯୩୬ ଏପ୍ରିଲ୍ ପହିଲାରେ ହିଁ ବ୍ରିଟିଶ୍ ଶାସିତ ଭାରତରେ ପ୍ରଥମ ଭାଷାଭିତ୍ତିକ ରାଜ୍ୟ ଭାବେ ଓଡ଼ିଶା ସ୍ୱୀକୃତି ପାଇଲା ।

ତାଙ୍କ କାବ୍ୟ ସାଧନର ଦ୍ୱିତୀୟ ପର୍ଯ୍ୟାୟ (୧୯୨୧-୪୭) ମୁଖ୍ୟତଃ ତାଙ୍କ ପ୍ରତିଭା ବିକାଶର ଏକ ସଂଘର୍ଷୀୟ ସମୟ । ସତ୍ୟବାଦୀ କାବ୍ୟ ଚେତନାରେ ଏ ଦେଶର ଅତୀତ ଓ ଐତିହ୍ୟ ପ୍ରତି ଯେଉଁ ଗୌରବବୋଧ ଆସିଥିଲା ତାହାହିଁ ଉତ୍କଳଠାରୁ ଭାରତ ପର୍ଯ୍ୟନ୍ତ ତାଙ୍କ କବିତାରେ ଏ ସମୟରେ ସଂପ୍ରସାରିତ ହୋଇଥିଲା । ପୁନଶ୍ଚ ସାମାଜିକ କୁସଂସ୍କାର ଓ ଅସଂଗତି ବିରୋଧରେ ସତ୍ୟବାଦୀ ଚେତନା ତାଙ୍କ କବିତାରେ ବହୁମୁଖୀ ପ୍ରତିଫଳନ ଲାଭ କରିଛି । ଦେଖନ୍ତୁ 'ପାପୀ' ଶୀର୍ଷକ କବିତାରେ ସେ କ'ଣ କହିଛନ୍ତି -

"ପାପୀ କହେ ବାଣୀ ଆହୁରିକି ପାପ ରହିଲା ବାକି / ଦେବତା କି ହେଲେ ପାଷାଣ ଦେଉଳେ ପାଷାଣ ସାକ୍ଷୀ ? / ଲୋଚନୁ ଲୋତକ ନିଗାଡ଼ିଲେ ଯଦି ନାହିଁ ନିଷ୍କୃତି । / ପତିତ ପାବନ ନାମ ତଳେ ଅବା କାହିଁ ଅଛି ଗତି ?"

ତାହେଲେ କ'ଣ ମନ୍ଦିର-କାନ୍ଥ ମଧରେ ଧର୍ମର ନୀତି ବନ୍ଦୀ ହୋଇ ରହିଛି ? ଏହା ଏକ ବୈପ୍ଳବିକ ପ୍ରଶ୍ନ ନିଶ୍ଚୟ । ସବୁଜର ସାମସମୟିକ କବି ହେଲେ ବି ସେ ସବୁଜଠାରୁ ଖୁବ୍ ଦୂରରେ ରହି କବିତାରେ ବିପ୍ଳବର ସ୍ୱର ପ୍ରକାଶ କରିଛନ୍ତି । ସବୁଜମାନେ ଯୌବନକୁ ସାର୍ଥକ ଉପଭୋଗର ସମୟ ଭାବେ ପରିକଳ୍ପନା କରିଥିଲା ବେଳେ କବି ଗୋଦାବରୀଶ ଯୌବନକୁ କାମନାର ଓ ସ୍ୱପ୍ନ ପ୍ରଣୟର ବେଦିକା ଭାବେ ନିଜର ଅଜସ୍ର ଶକ୍ତି ଓ ସାମର୍ଥ୍ୟର, ସଂକଳ୍ପ ଓ ସମ୍ଭାବନାର ପ୍ରତୀକ ଭାବେ ପ୍ରତିଭାତ କରିଛନ୍ତି ।

"ଯୌବନ ତବ ଉତ୍ପ୍ଳବ ଅଭିସାରେ / ଗିରିଚୂଡ଼ା ଧରା ଗଭୀର ଗଣ୍ଡ, ମିଶିଯାଉ ଏକାକାରେ ।" ('ଉଠ କଙ୍କାଳ' ପୁସ୍ତକରୁ)

ଏଇ ଭାବନାରେ ୧୯୨୯-୩୫ ପର୍ଯ୍ୟନ୍ତ ରଚିତ ବହୁ କବିତା ତାଙ୍କୁ

ସତ୍ୟବାଦୀ ଚେତନାର ଉତ୍ତର-ସୂରୀ ଭାବେ ସାବ୍ୟସ୍ତ କରେ । ସେସବୁ କବିତା ମଧ୍ୟରେ 'ଶିଶୁ ମନାଇ', 'ଦେଖେ ମୁହିଁ ବିରାଟ ଉତ୍କଳ', 'ବାରବାଟି ବକ୍ଷେ', 'ଦୁର୍ଗପଥେ', ଓ 'ଉଠ କଙ୍କାଳ', 'ପୃଥ୍ୱୀରାଜଙ୍କ ପତ୍ର', 'ଛନ୍ଦେ ଛନ୍ଦେ', 'ବିପ୍ଳବ ପଥେ' ଆଦି କେତୋଟି କବିତାକୁ ଉଲ୍ଲେଖ କରାଯାଇପାରେ ।

୧୯୩୬ ମସିହା ପରେ କବି ଗୋଦାବରୀଶଙ୍କ କାବ୍ୟସ୍ୱର ଅଧିକ ତୀକ୍ଷ୍ଣ; ସାମାଜିକ ଶ୍ଳେଷ ତଥା ଜାତୀୟ ମୁକ୍ତି ସମ୍ପୃକ୍ତିର ଅଧିକ ପରିପୃକ୍ତ । ଏ ଜାତିର ମହାମାନବମାନଙ୍କ ଶ୍ମଶାନପୀଠରେ ସେ ମୁଖ୍ୟତଃ ନବଜୀବନର ଆଶୀର୍ବାଦ କାମନା କରୁଛନ୍ତି । ତେଣୁ ଏ ପର୍ଯ୍ୟାୟର କବିତାର ଜୟକାରରେ ଉଦ୍‌ବୁଦ୍ଧ ତଥା ଖୁବ୍ ପ୍ରଭାବଶାଳୀ ହୋଇ ଉଠିଛି । ୧୯୪୭ ମସିହା ସ୍ୱାଧୀନତା ଲାଭ ପରେ ପରେ ସେ 'ମୁକୁଟର ପରାଜୟ' ନାମରେ ଯେଉଁ କବିତାଟି ଲେଖିଛନ୍ତି ତାର ବାସ୍ତବତା ପ୍ରତି ନିଘା କରନ୍ତୁ ପାଠକେ-

"କୌପୀନ ଆଉ ମୁକୁଟ ମଝିରେ, ବିରାଟ ଯେ ବ୍ୟବଧାନ /କହେ କୌପୀନ ଗଲା ଏ ମୁକୁଟ, ଛାଡ଼ି ଦେଇ ତାର ଥାନ / ସେ ଥାନ ଦଖଲ କରିବା ପାଇଁକି, ସଂଗ୍ରାମ ଲାଗିବ କାଲି / ସାମ୍ୟବାଦର ଶଙ୍ଖ ବଜାଇ, ସମତା ଆଣିବ ବୋଲି ।"

ଏଇ ଭାବନା ପୁନଶ୍ଚ 'ମୁକୁଟ ଓ କୌପୀନ', 'ଜମିଦାରର ମୃତ୍ୟୁ' ଆଦି କବିତାରେ ପ୍ରତିଫଳିତ। କୌପୀନଧାରୀ ଦରିଦ୍ର ଭାରତୀୟ ସାଧାରଣ ଜନତା ପାଖରେ ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟବାଦର ମୁକୁଟର ପରାଜୟ ପୃଥିବୀ ଇତିହାସରେ ଏକ କ୍ରାନ୍ତିକାରୀ ଘଟଣା । କିନ୍ତୁ ସମାଜରେ ଏଇ କୌପୀନଧାରୀ ଦରିଦ୍ରମାନେ ସ୍ୱାଧୀନତା ପରେ ଯଦି ତାଙ୍କର ନ୍ୟାୟଗତ ଅଧିକାର ନ ପାଆନ୍ତି ତେବେ ସଂଗ୍ରାମ ଯେ ଅବ୍ୟାହତ ରହିବ ଏକଥା କବି ଆଶଙ୍କାର ସହ ପ୍ରକାଶ କରିଛନ୍ତି । କବି ଆଶଙ୍କା କରିଛନ୍ତି ସାମ୍ରାଜ୍ୟବାଦର ସିନା ଲୋପ ହେଲା, ଗଡ଼ଜାତ ରାଜ ଶାସନ ସିନା ଲୋପ ହେଲା, କିନ୍ତୁ ଏମାନଙ୍କ ସ୍ଥାନରେ ପୁଞ୍ଜିବାଦୀ ବସିଲା, ଯାଯୋଡ଼ି ଆମାନେ ମୁଣ୍ଡ ଟେକିବେ । ନୂତନଭାବେ ପୁଞ୍ଜିପତିମାନେ ଜାଲ ବିସ୍ତାରି କରିବେ, ହାଟ ବଜାରରେ ରାଜନୀତି ବିକାକିଣା ହେବ, ଗରିବମାନେ ଯେଉଁ ଗରିବକୁ ସେଇ ଗରିବ ରହିବେ - ସତେ ଯେପରି ସେ ଜଣେ ଭବିଷ୍ୟତ ଦ୍ରଷ୍ଟା ଭାବେ ଭାରତର ଭବିଷ୍ୟତକୁ ଦେଖି ପାରୁଥିଲେ । 'ନିଆଁଖୁଣ୍ଟା'ର ବିଭିନ୍ନ ପୃଷ୍ଠାରେ ସେ ସେହି ଆପଣାକୁ ଉନ୍ମୁକ୍ତ କରି ଦେଇଛନ୍ତି କବିତା ଆକାରରେ । ଏହାହିଁ ତାଙ୍କ କାବ୍ୟଚେତନାର ତୃତୀୟ ପର୍ଯ୍ୟାୟ । ସେ ସ୍ପଷ୍ଟ ଦେଖିପାରୁଥିଲେ ବେଠି, ଭେଟୀ, କରପୀଡ଼ା ଓ ଋଣଭାରରେ ଭାରତୀୟ

ଗ୍ରାମବାସୀମାନେ ପ୍ରପୀଡ଼ିତ ହେବେ, ସେମାନଙ୍କ ମୁହଁରୁ ହସ ଲିଭିଯିବ । ତଥାପି ସେ ଆଶାରେ ଆଶାରେ ବଞ୍ଚି ରହିବାକୁ ବାଧ ହେବେ । ଦିନେ ହୁଏତ ମଠ, ମହନ୍ତ, ଜମିଦାରମାନଙ୍କ ବିଲୋପ ହେବ । ସାହୁକାରର ସର୍ବଗ୍ରାସୀ ଆଶା-ଅନଳରୁ ଗରିବ ଆଦିବାସୀମାନେ ମୁକ୍ତି ପାଇବେ । କବି ମହାପାତ୍ରଙ୍କ କାବ୍ୟକବିତାରେ ସାମ୍ୟବାଦୀ ଚେତନାର ଏହି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ପ୍ରଚଣ୍ଡ ମାନବିକତା ବୋଧ ଉପରେ ସଂଗଠିତ । ସେ ଲେନିନ୍‌ଙ୍କୁ ସ୍ୱୀକାର କରିଛନ୍ତି ଓ ଋଷ ବିପ୍ଳବର ଜୟକାର କରିଛନ୍ତି - କିନ୍ତୁ ରାଜନୀତିକ କୋଣରୁ ସେ ସାମ୍ୟବାଦୀ (Communist) ନୁହନ୍ତି । ତେଣୁ ତାଙ୍କୁ ସାମ୍ୟବାଦୀ ନକହି ସଂଗ୍ରାମୀ ମାନବବାଦୀ କହିଲେ ବୋଧହୁଏ ଯଥାର୍ଥ ହେବ ।

'ବଙ୍କା ଓ ସିଧା' (୧୯୬୪), 'କଣ୍ଟା ଓ ଫୁଲ' (୧୯୫୮), 'ହେ ମୋର କଲମ' (୧୯୫୧), 'ହାଣ୍ଡିଶାଳର ବିପ୍ଳବ' (୧୯୫୨), ଏପରିକି 'ଉଠକଙ୍କାଳ' (୧୯୬୧) ଦ୍ୱିତୀୟ ବର୍ଦ୍ଧିତ ସଂସ୍କରଣ ଆଦିରେ ସନ୍ନିବିଷ୍ଟ କବିତା ଗୁଡ଼ିକ କାଳାନୁକ୍ରମିକ ହୋଇ ନଥିବାରୁ ତାଙ୍କୁ ଆଲୋଚନା କଲାବେଳେ ବିଭିନ୍ନ ଭାବଧାରାର ମିଶ୍ରଣକୁ ହିଁ ଲକ୍ଷ୍ୟ କରିବାକୁ ହେବ । ୧୯୪୭ ପରବର୍ତ୍ତୀ ଏ କବିତା ସଂକଳନ ଗୁଡ଼ିକର ଅଧିକାଂଶ କବିତା 'ନିଆଁଖୁଣ୍ଟା'ରେ ବିଭିନ୍ନ ସମୟରେ ପ୍ରକାଶିତ । ନିଆଁଖୁଣ୍ଟାର ନାମକରଣରୁ ଜାଣିବାକୁ ହେବ ଯେ କବି ନିର୍ଭୀକ ଭାବେ ସମାଜ ଓ ଶାସନର ଅସମାନତାକୁ ପୋଡ଼ି ଜାଳିଦେବାକୁ ଶ୍ଳେଷଧର୍ମୀ ଅନେକ ବ୍ୟଙ୍ଗକବିତା ଏ ସମୟରେ ରଚନା କରିଥିଲେ । ତା ମଧ୍ୟରୁ କିଛି କବିତା ତାର ନିଜସ୍ୱ କଳା ଓ କଳ୍ପନାରେ, ଚମତ୍କାର ଉଚ୍ଚତାକୁ ଉତ୍ତୁରି ଯାଇଥିବା ସ୍ୱାଭାବିକ ଥିଲା । ସମାଜର ଦୋଷ, ଦୁର୍ବଳତା, ଅସଂଗତି ଓ ଅଧୋଗତିରୁ ମର୍ମାହତ କବି ନିଆଁ ବରିଆ ଧରି ସେ ସବୁକୁ ଜାଳିପୋଡ଼ି ପାଉଁଶ କରିଦେବାର ସଂକଳ୍ପ ରଖିଥିଲେ ବି ପ୍ରତିପକ୍ଷ ପ୍ରବଳ ମାନଙ୍କୁ ଦମନ କରି ପାରୁନଥିଲେ । ନିଜେ ଶୋକାବହ କବିତ୍ୱ ଭିତରେ ଜୀବନ ବଞ୍ଚୁଥିଲେ । କାଳିମାଗ୍ରସ୍ତ ରାଜନୀତିର ସଂକଟ ସମାଜକୁ ବରଂ ଅଧିକରୁ ଅଧିକ ଅପନ୍ତରା ଭିତରେ ନିକ୍ଷେପ କରୁଥିଲା । କିନ୍ତୁ ସେଥିରେ ନିରାଶ ନ ହୋଇ କବି ତାଙ୍କର ଲେଖନୀ ଚଳାଇ ଚାଲିଥିଲେ । ତେଣୁ ଏ ସମୟର କବିତା ସମାଜ ଓ ଜାତୀୟ ଜୀବନର ବହୁ ଘଟଣା ଓ ଦୁର୍ଘଟଣାରେ ଐତିହାସିକ ସ୍ପନ୍ଦନ ସ୍ଥାପନ କରି ଚାଲିଥିବା ପରି ମନେହୁଏ । ସମାଜପ୍ରତି ଏତେ ପ୍ରତିବଦ୍ଧତା ସମ୍ଭବତଃ ଏ ସମୟର ଅତ୍ୟାଧୁନିକ କବିମାନଙ୍କର କବିତାରେ ଶୁଣିବାକୁ ମିଳୁନଥିଲା । ସେମାନଙ୍କ କବିତାରେ ହୁଏତ ବ୍ୟଞ୍ଜନା ଥିଲା କିନ୍ତୁ ନ ଥିଲା ଶ୍ଳେଷ ଓ ବ୍ୟଙ୍ଗ । ଏପରିକି ଏକଦା ପ୍ରଗତିବାଦୀ କବିତାର

ସ୍ରୁପତି କବି ସଚ୍ଚିଦାନନ୍ଦ ରାଉତରାୟ ୧୯୫୦ ପରେ ତାଙ୍କ ସାମ୍ୟବାଦୀ ଦୃଷ୍ଟିଭଙ୍ଗୀକୁ ହରାଇ ବିପୁଳ ସର ଚେତନା ମଧ୍ୟରେ ରାସ୍ତା ପାଉ ନଥିଲା ବେଳେ କବି ଗୋଦାବରୀଶ ଜୀବନରେ ଶେଷ ପର୍ଯ୍ୟନ୍ତ ସମାଜକୁ ବାଟ ଦେଖାଇ ଚାଲିଥିଲେ ।

'ନିଆଁଖୁଣ୍ଟା' ତେଣୁ ସାଧାରଣ ମାସିକ ପତ୍ରିକାଟିଏ ନଥିଲା, ଏହା ଥିଲା ଜାତୀୟ ଜୀବନର ଅଧୋଗତିର ମୂର୍ତ୍ତ ପ୍ରତୀକ - ଏକାନ୍ତ ନିର୍ଭୀକ ଓ ନିରପେକ୍ଷ ପଥପ୍ରଦର୍ଶକ ଅଗ୍ନିଶିଖା । ତେଣୁ କବିଙ୍କର ଏହି କବିତା ପୁସ୍ତକ ଗୁଡ଼ିକ ଜାତିର ବହୁ ଦୁର୍ଗତି ଓ ଅନ୍ତଃସାର ଶୂନ୍ୟତାର ପ୍ରସ୍ତାବ ବହନ କରି ଇତିହାସର ମର୍ଯ୍ୟାଦା ଲାଭ କରି ପାରିଛି ବୋଲି କହିବାକୁ ହେବ । ସାଧୀନତା ଏହାର ପ୍ରଥମ ମୋହ ଓ ମୋହଭଙ୍ଗ, ଜମିଦାରୀ ଉଚ୍ଛେଦ ଓ ସମାଜ ଉପରେ ଏହାର ପ୍ରତିଘାତ, ଯୋଜନା ଓ ଏହାର ବିଫଳତା, ସୀମା ସମସ୍ୟା, ବିଭିନ୍ନ ନିର୍ବାଚନ ଓ ନେତାମାନଙ୍କ ଶୁଷ୍କ ପ୍ରତିଶ୍ରୁତି, ମନ୍ତ୍ରିମଣ୍ଡଳ ଗଠନ ଓ ନିଷ୍ପ୍ରାଣ, ରାଜନୀତିକ ଅନିଶ୍ଚିତତା, ୧୯୬୨ରେ ଭାରତ-ଚାଇନା ଯୁଦ୍ଧ - ଏହିପରି ବ୍ୟାପକ ପୃଷ୍ଠଭୂମିରେ ଏହିସବୁ ପୁସ୍ତକର କବିତା ଗୁଡ଼ିକ ସଂରଚିତ ହୋଇ ଯଥାର୍ଥରେ ସାଧୀନତା ପରବର୍ତ୍ତୀ ୧୫ ବର୍ଷର ଐତିହାସିକ ସାକ୍ଷ୍ୟ ପରିବର୍ତ୍ତନ କରିପାରିଛି । ଆମ ଜାତୀୟ ଜୀବନରେ ଯେତେବେଳେ ଆକୃତି ଓ ବିକୃତି, ତତ୍ପରତା ଓ ଅଂଶ, ପ୍ରତିଶ୍ରୁତି ଓ ପୃଷ୍ଠଭଙ୍ଗ ଆସିଛି ସେ ସବୁର ବ୍ୟଙ୍ଗଧର୍ମୀ ଶ୍ଳେଷରେ ଏ କବିତା ଗୁଡ଼ିକ ବେଶ୍ ରୁଚିଶୀଳ ଓ ଲକ୍ଷ୍ୟନିଷ୍ଠ । ହୁଏତ ଐତିହାସିକ ଦୃଷ୍ଟିକୋଣରୁ ଏସବୁ କବିତାର ପ୍ରସଙ୍ଗାବଳୀ ତତ୍‌କାଳୀନ ହୋଇଥିବାରୁ ଚିରନ୍ତନତାର ସ୍ୱୀକୃତି ପାଇବ ନାହିଁ ବୋଲି ମାନସିଂହଙ୍କ ପରି ସମାଲୋଚକ କହିପାରନ୍ତି; କିନ୍ତୁ ଏହା ଦୃଢ଼ତା ସହିତ କୁହାଯାଇପାରେ ଯେ ତତ୍‌କାଳୀନ ଚେତନାକୁ ଆଧାର କରି ରଚିତ ହୋଇଥିଲେ ବି ଚିରନ୍ତନତାର ଅଭିନିବେଶ ହେବାରେ ଅନେକ କବିତାର ଯେଉଁ ସାମର୍ଥ୍ୟ ରହିଛି ତାକୁ କଦାପି ଉପେକ୍ଷା କରିହେବ ନାହିଁ । ଏଠାରେ ସେହିପରି କେତୋଟି କବିତାକୁ ପାଠକମାନଙ୍କ ଦୃଷ୍ଟିକୁ ଆଣିବାକୁ ମୁଁ ବାଧ ହେଉଛି । କବି 'ବଙ୍କା ସିଧା' କବିତା ସଂକଳନରେ ମୁଖବନ୍ଧରେ ନିଜେ କହିଛନ୍ତି - "କେବଳ କବିତା ଲେଖିବାପାଇଁ ଏସବୁ କବିତା ଲେଖା ହୋଇ ନାହିଁ । ନିତିଦିନିଆ ମୋତେ ଯେଉଁସବୁ ଜାତୀୟ ଓ ସାମାଜିକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଛି ତହିଁରେ ବହୁବିଧ ରୂପ ନିଜ ଦୃଷ୍ଟି କୋଣରୁ ଏଥିରେ ଅଙ୍କନ କରିଛି ମାତ୍ର । ବ୍ୟକ୍ତିଗତ ଜୀବନର ଅନୁଭୂତି, ଆବେଗ ଓ ରସାଳ କଳ୍ପନା ଜାତୀୟ ଜୀବନର ସାମୂହିକତାର

ଜର୍ଜରିତ ହୋଇ ପଡୁଥିବା ବେଳେ କେତେ ଘାତ ପ୍ରତିଘାତ, କେତେ ନିଷ୍ଠୁର ପ୍ରତିକ୍ରିୟା, କେତେ ହାସ ପରିହାସପୂର୍ଣ୍ଣ ଘଟଣା ଏ ଲେଖକର ଚିତ୍ତକୁ ଆଲୋଡ଼ିତ କରିଛି ତହିଁର ବର୍ଣ୍ଣାତ୍ମକ ଆଲେଖ୍ୟ ଏଥିରେ ପରିବେଷଣ କରିବାକୁ ଚେଷ୍ଟା ହୋଇଛି ମାତ୍ର ।" ଏହି ବକ୍ତବ୍ୟ ଦୃଷ୍ଟିରୁ କବିଙ୍କୁ ବିଚାର କଲାବେଳେ ତାଙ୍କ କବିତାରେ ଏହି ଆଭିମୁଖ୍ୟର ଭାବସତୀତ୍ୱ ପ୍ରତି ସହାନୁଭୂତିଶୀଳ ହେବାକୁ ହେବ ଏବଂ ତନ୍ମଧ୍ୟରୁ କେତେ ଦୂର ସାର୍ବଜନୀନ ସତ୍ୟ ବିକାଶ ଘଟିଛି ତାହା ପରୀକ୍ଷା କରିବାକୁ ହେବ । ଏସବୁ କବିତାରୁ ଅଧିକାଂଶ ସାମୟିକ ରାଜନୀତିକ ବ୍ୟକ୍ତିତ୍ୱ ସେମାନଙ୍କ ବିକୃତ ଦୋଷତ୍ରୁଟିକୁ ନେଇ ସଂଗଠିତ । ପ୍ରତ୍ୟେକ କବିତା ଶାଣିତ ଶ୍ଳେଷ (Satire) ରେ ପରିପୂର୍ଣ୍ଣ ।

ଲେଖକଙ୍କ ଦୃଷ୍ଟିରେ ସତ୍ୟବାଦୀର ସେବା, ଆଦର୍ଶର ଯେଉଁ ଉନ୍ନତ ରୂପ ପ୍ରକଟିତ ତା'ର ମାପକାଠିରେ ସାମୟିକ (୧୯୪୭-୬୫) ରାଜନୀତିକ ଅପଦର୍ଶ ଓ ଅର୍ଥଲୋଲୁପ ଚିତ୍ରକୁ କଳନା କଲାବେଳେ ତାଙ୍କ ଅନ୍ତରର ଗଭୀର କାରୁଣ୍ୟ ପ୍ରତି ପାଠକମାନେ ଧ୍ୟାନନିଷ୍ଠ ହେବା ଉଚିତ୍ । ସେ କେବେବି ତାଙ୍କ ପରିଣତ ବୟସରେ ସାମାଜିକ ମୂଲ୍ୟାୟନ ସହିତ ମାନସିକ ଭାବେ ସାଲିସ୍ କରି ପାରି ନାହାନ୍ତି । ଲେଖକଙ୍କର ଗଭୀର କ୍ଷୋଭ ଯେ ଏ ଜାତିଟା ବୁଡ଼ି ବୁଡ଼ି ଯାଉଛି । ତାକୁ ତାର ଅଧୋଗତିରୁ ଉଦ୍ଧାର କରିବା ପାଇଁ ଗୋପବନ୍ଧୁ, ମଧୁବାବୁ ଓ ନୀଳକଣ୍ଠ-ଗୋଦାବରୀଶଙ୍କ ପରି ବରପୁତ୍ର ଦେଶସେବୀ ଆଉ ନାହାନ୍ତି । ଏଠି କେବଳ ଦେଶ ସେବା ନାମରେ ଛଳନା ଓ ମିଥ୍ୟାଚାର ରାଜୁତି କରୁଛି । 'କଣ୍ଟା ଓ ଫୁଲ'ରେ ପ୍ରକାଶିତ ଚଟି, ପେଚା, ଶାଗୁଣା, ଗରିବର ଦୁର୍ଗୋତ୍ସବ, ଲାଠି ଓ ବନ୍ଧୁକ, ଖଣ୍ଡଗିରି ତଳେ, ପ୍ରାର୍ଥୀ ଅଭ୍ୟର୍ଥନା, ଦଳେଇଘାଇ, ଉଦ୍ୟାନଭୋଜି ଆଦିରେ ଏଥିସବୁ ଆଭିମୁଖ୍ୟ ପ୍ରକାଶ ପାଇଛି । ତତ୍‌କାଳୀନ ବହୁ ପ୍ରସଙ୍ଗ ଉପରେ ଏ କବିତାଗୁଡ଼ିକ ପିଣ୍ଡିତ ହୋଇଥିଲେ ହେଁ ଅଶ୍ରୁ ଓ କାରୁଣ୍ୟର ଖୁବ୍ ଆବେଗମୁଖୀ ମନେ ହେବ । 'କଣ୍ଟା ଓ ଫୁଲ' ପୁସ୍ତକରେ ସନ୍ନିବିଷ୍ଟ ତିନୋଟି ମାତ୍ର କବିତା ପଢ଼ିଲେ ମହାପାତ୍ରଙ୍କ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ହେବ ।

୧. "କୀଟଦଂଷ୍ଟ କାଷ୍ଠସମ ଏ ଜାତିଟା ହେଲାଣି ଦୁର୍ବଳ / ରାଜଯକ୍ଷ୍ମା ଗାଳେ ରକ୍ତ ବୁକୁତଳୁ ନିତି ଅନର୍ଗଳ / ବାତଗ୍ରସ୍ତ କରପଦତଳ / ନିମୀଳିତ ନେତ୍ର ପଦ୍ମ ଦଳ / ଅନୁଗ୍ରହ କର / ତୁମ ତାଲିକାରୁ ପୋଛିଦିଏ ଏ ଉତ୍କଳ ।" (ପ୍ରାର୍ଥନା)

୨. "ସ୍ଥିର ରହ ହେ ତପନ ଗତି ତବ ବନ୍ଦକର ମେଘ / ବନ୍ଦକର ସମୀରଣ ତୁମର ଏ ପ୍ରଭଞ୍ଜନ ବେଗ / ଜୀବନର ଅଭିଯୋଗ ଆଜି ଟେକି ଶତମୁଖେ ଫଣା / କର

ରସାତଳଗାମୀ ଏ ସମାଜ ଯେତେ ବାଟବଣା ।" (ମୃତ୍ୟୁର ଶୋଭାଯାତ୍ରା)

ଏପରି ଶୁଦ୍ଧ ପ୍ରତିବଦ୍ଧ କବିତା ଏ ସମୟରେ କ୍ୱଚିତ୍ ଲେଖାଯାଇଛି; କାରଣ କବିମାନେ ପରୀକ୍ଷା ପ୍ରବଣତା ଓ ପ୍ରୟୋଗବାଦ ନାମରେ ବିଦେଶୀ ଭାବନା ପ୍ରତି ଅଧିକ ଆସକ୍ତ ହୋଇ ପଡ଼ିଥିଲେ । କବିତାରେ ବ୍ୟକ୍ତିଗତତା ଓ ପାଣ୍ଡିତ୍ୟ ପ୍ରଦର୍ଶନରେ ପ୍ରାୟ ମାତିଥିଲେ । ଗୋଦାବରୀଶ କିନ୍ତୁ ସେଥିରେ ଅନୁରାଗ ପ୍ରକାଶ ନ କରି ଜାତିର ଓ ମଣିଷର ଦୁଃଖ, ଶୋକ, ଦୈନ୍ୟ ଓ ନିର୍ଯ୍ୟାତନା ଆଡ଼କୁ ଅଧିକ ଦୃଷ୍ଟିପାତ କରିଥିଲେ । ତାଙ୍କର ଅପେକ୍ଷାକୃତ ପରିଣତ କାବ୍ୟଗ୍ରନ୍ଥ 'ବଙ୍କା ଓ ସିଧା'ର କେତେକ ପଂକ୍ତି ଉଦ୍ଧାର କଲେ ତାଙ୍କ ଚିନ୍ତା ଓ ଚେତନାର ସୀମା ଓ ସରହଦରେ ସହଜରେ ପ୍ରବେଶ କରିହେବ । କେଉଁଠି ଗୃହସ୍ଥଟିଏ ଅଭାବରେ ଘୂର୍ଣ୍ଣିତ ମ୍ରିୟମାଣ (ଏ ନୁହେଁ କବିତା) କେଉଁଠି ଦାରିଦ୍ର୍ୟର କଷାଘାତରେ ନାରୀଟିଏ ସଦ୍ୟଜାତ ଶିଶୁକୁ ରାଜଧାନୀର ପ୍ରଶସ୍ତ ରାଜପଥରେ ରାତ୍ରିର ଜୁଆରେ ଦେଇ ଅନ୍ତର୍ହିତ ହୋଇ ଯାଇଛି ତାଙ୍କ କବିତାରେ ସେମାନଙ୍କ ପାଇଁ ମାନବିକ ଦରଦ ଓ ସମ୍ବେଦନ କିପରି ପ୍ରକାଶ ପାଇଛି ଲକ୍ଷ୍ୟ କରନ୍ତୁ -

"ହେ ବନ୍ଧୁ ହେ ନବାଗତ ! ଧରଣୀର ହେ ନବଜାତକ / କା' ପ୍ରାଣ ଶଙ୍ଖାଳି ତୁମେ କାହାର ବା ସ୍ନିଗ୍ଧ ଲୋତକ / ହେ ଅଜ୍ଞାତ, କାର କୋଳେ ଥିଲ ଜନ୍ମି ଲୋକ ଅଗୋଚରେ / ଥୋଇଲ ଏ ରାଜପଥେ ନଥିଲେକେ ଆଗ ଓ ପଛରେ ।" (ହେ ନବାଗତ)

କେଉଁଠି କୁମାରୀ ମାତାଟିଏ ସମାଜ ଭୟରେ ତାର ଅବୈଧ ସନ୍ତାନକୁ ରାଜଭବନ ରାସ୍ତାରେ ଛାଡ଼ିଦେଇ ଆଖିର ଲୁହ ଓ ଛାତିର ଲହୁ ଢାଳୁଛି -

"ଯେ ଛବି ଦେଖିଲ ତୁମେ ଯୌବନର ତରଙ୍ଗମାଳାରେ / ଯେ ଦେଲା କୁସୁମମାଳା ତୁମରି ସେ କମ୍ପିତ ଗଳାରେ / ସେ ସ୍ୱପ୍ନ ଗଲାକି ତୁଟି, ମାତା କି ରହିଲା କେବଳ / ଖୁଆଇ ଏ ପଥପ୍ରାନ୍ତେ ଛାଡ଼ିଗଲ ଶୂନ୍ୟ କରି କୋଳ ?" (ରାଜଭବନର ତଳେ)

ଏସବୁ କବିତା ସମ୍ଭବତଃ ଖବର କାଗଜରେ ପ୍ରକାଶିତ ସମ୍ବାଦ ଉପରେ ଲିଖିତ, ଅଥଚ ଏ କବିତାର ଶୁଦ୍ଧ ସରଳ ଆବେଗ, ଚିରନ୍ତନ କାରୁଣ୍ୟ ଯେ କୌଣସି ବୟସର ପାଠକକୁ ଆଚ୍ଛନ୍ନ କରିପାରେ - ଏହାହିଁ ମହାପାତ୍ରଙ୍କ କବିତାର ବିଶେଷତ୍ୱ । ଦାର୍ଶନିକ କ୍ରୋଚେ ଥରେ କହିଲେ "କାବ୍ୟଗତ ଭାବର ସ୍ଫୁରଣ ଏକ ତୁଚ୍ଛ ଅଳଂକରଣ ନୁହେଁ, ତାହା ଏକ ଗଭୀର ବିଦାରଣ ଯାହା ଫଳରେ କି ଆମେ ଏକ କ୍ଳେଶାବହ ଭାବାବସ୍ଥା ଅତିକ୍ରମ କରି ଏକ ପ୍ରଶାନ୍ତ ଧ୍ୟାନାବସ୍ଥାରେ ଉପନୀତ

ହୋଇଥାଉଁ ।" ଏ ମନ୍ତବ୍ୟ ମହାପାତ୍ରଙ୍କ କବିତା ପ୍ରତି ସମ୍ପୂର୍ଣ୍ଣ ପ୍ରଯୁଜ୍ୟ ହୋଇପାରେ - ଏଥିରେ ମତ ଦ୍ୱୈଧ ନାହିଁ । ଘଟଣା ଓ ତାର ପ୍ରଥମ ଉଦ୍ଦୀପନାମୂଳକ ଆକର୍ଷଣ ତୁଟିଗଲାପରେ ମନ ମଧ୍ୟରେ ତାଙ୍କ କବିତାର ଯେଉଁ ଗଭୀର ମାନବବାଦୀ ଆବେଦନ ଆଲୋଡ଼ନ ସୃଷ୍ଟି କରେ ତହିଁ ତାଙ୍କ ଲେଖନୀର ସଫଳତା । କବିତା କବିମନର ତରଙ୍ଗାୟିତ ପ୍ରବାହ, ଭାବନାର ଶିହରଣ, ରୋମାଞ୍ଚକ ଏବଂ ଏକ ଆବିଷ୍କାର କବିତାର ଆଶ୍ଚର୍ଯ୍ୟ ପ୍ରକ୍ରିୟା ମଧ୍ୟରେ ପ୍ରଦିନର ବସ୍ତୁଜଗତ ଯେ ପୁନରାବିଷ୍କୃତ ହୋଇଥାଏ ହୋଇଥାଏ ଏ ସତ୍ୟ ମହାପାତ୍ରଙ୍କ କାବ୍ୟାଲୋକରେ ସୁପ୍ରତିଷ୍ଠିତ । ସେ ହିଁ କେବଳ ଖୋରଧାର ବହୁ ଇତିହାସର ମୂକ ସାକ୍ଷୀ କଚେରୀ ବରଗଛଟିକୁ କର୍ତ୍ତୃପକ୍ଷ କାଟି ଦେଶରେ ଅତ୍ୟନ୍ତ ବ୍ୟଥିତ ଓ କ୍ଷୁବ୍‌ଧ ହୋଇ ଲେଖିପାରନ୍ତି - "ପତନ ଓ ଅଭ୍ୟୁତ୍ଥାନ ଦେଖିଥିଲା ଏ ବିରାଟ ତରୁ / ଚନ୍ଦନ ହୋଇଛି ମାଟି ଏ ଚଂଦନ ନେଇଛି ମୁଁ ତଳୁ ।" (କଚେରୀ ବରଗଛ)

'ବଙ୍କା ଓ ସିଧା' ସଂକଳନର ବହୁ କବିତା ଏହିପରି ମଣିଷତର ହେଲେ ବି ତା ମଧ୍ୟରେ ସେ ମଣିଷର ବେଦନାବୋଧ, ବିସ୍ମୟ, ଅଶ୍ରୁ ଓ ଆଲୋଡ଼ନକୁ ସନ୍ଧାନ କରିଛନ୍ତି । Frenz Katka ଏକଦା କହିଥିଲେ A book should leave as the axe breaking the frozen iee within us (His Diary) । ସେହି ମର୍ମରେ କବି ଗୋଦାବରୀଶଙ୍କ କବିତା ଆମ ଗଣଜୀବନରେ ଥିବା କ୍ଲୀବତା ଓ ଶଠତାକୁ ଭାଙ୍ଗିଚୁରି ଏକ ନୂତନ ସ୍ପନ୍ଦନ ସୃଷ୍ଟି ପାଇଁ ଜାଗ୍ରତ ହୋଇ ଉଠିଛି । ସେ ସ୍ୱେଚ୍ଛାକୃତ ଭାବେ ସମାଜକୁ ଗଢ଼ିବା ପାଇଁ ଏକ ସଂଗ୍ରାମ ଦାୟିତ୍ୱ ବରଣ କରି ନେଇଥିବାରୁ ତାଙ୍କ ସମକାଳୀନ ନେତାବର୍ଗ ଓ ସାହିତ୍ୟିକମାନେ ହୁଏତ ତାଙ୍କୁ ବେଳେ ବେଳେ ଭୁଲ୍ ବୁଝିଛନ୍ତି । ଅନେକବାର ସେ ନିର୍ଯ୍ୟାତିତ ଓ ଅପମାନିତ ହୋଇଛନ୍ତି । ତାଙ୍କ ବିରୋଧରେ ନାନାଦି ଅପପ୍ରଚାର ହୋଇଛି । କିନ୍ତୁ ଏ ସବୁକୁ ଆନନ୍ଦରେ ବରଣ କରି ସେ କବିତାରେ ଯେଉଁ ଉତ୍ତର ଦେଇଛନ୍ତି ତାହାହିଁ ଯୁଗବକ୍ଷରେ ତାଙ୍କ ସ୍ଥିତିକୁ ଅଧିକ ଦୃଢ଼ କରିଛି । ୧୯୬୨ ମସିହା ୨୬ ଜାନୁୟାରୀ ଉପଲକ୍ଷେ ସେ ଯେଉଁ କାଳଜୟୀ କବିତାଟି ଲେଖି ଯାଇଛନ୍ତି ତାହାର ପ୍ରଭାବ ବୋଧହୁଏ ଏତେ ଶୀଘ୍ର ସୁସ୍ଥ ଗଣଶାସନରୁ ଅନ୍ତର୍ହିତ ହୋଇଯିବ ନାହିଁ । ସମଗ୍ର କବିତାକୁ ଉଦ୍ଧାର କରିବାକୁ ଚେଷ୍ଟା ହେଉଥିଲେ ବି ଲେଖାର ଦୀର୍ଘତା ହେତୁ ମୁଁ କେବଳ କେତୋଟି ମାତ୍ର ପଂକ୍ତି ଏଠି ଉଦ୍ଧାର କରୁଛି -

"ଉଦର ସଂଗ୍ରାମ ତୀବ୍ର, ନିରପେକ୍ଷ ଧର୍ମ ଆଜି ଦେଶ / ବୁଦ୍ଧିନାମେ ଶକୁନିର

ରାଜନୀତି ଚତୁର୍ଦ୍ଦିଗେ ଘେରିଲେ, / ଅଜ୍ଞ ଯହିଁ ବିଶେଷଜ୍ଞ, ରାମରାଜ୍ୟ ବନ୍ଧା ନାଗଫାଶେ / ପାଣ୍ଡିତ୍ୟ ଯାଉଛି ଲୁଚି, ଶଠତାର ଘୋର ଇନ୍ଦ୍ରଜାଲେ । / ଏତେବେଳେ ଏ ଛବିଶ ! କି ଗାଇବ ତୁମର ବନ୍ଦନା ? / କରଭାରେ ଦରିଦ୍ରର ମେରୁଦଣ୍ଡ ପଡୁଅଛି ଭାଜି / ସାର୍ବଭୌମ ରାଷ୍ଟ୍ର ନାମେ ନ୍ୟସ୍ତ ସ୍ୱାର୍ଥ ରଚେ ବିଡ଼ମ୍ବନା / ଭାଷା ମୋ ବନ୍ଦିନୀ, ଡ଼ାକେ ପ୍ରତିବାଦେ ତୁମ ଦ୍ୱାରେ ଆଜି ।" (ଛବିଶ ଜାନୁୟାରୀ (୧୯୬୨)-ବଙ୍କା ଓ ସିଧା-ପୃ-୨୩୨)

ଜାତୀୟ ଜୀବନର ପ୍ରତିଟି ବାର୍ତ୍ତା ଓ ବିଚଂବାଦକୁ କାବ୍ୟିକ ସତ୍ୟରେ ରୂପାନ୍ତରିତ କରି ବ୍ୟଙ୍ଗ ମାଧ୍ୟମରେ ଅପରାଧିକୁ ଆଘାତ କରିବାରେ ତାଙ୍କ ଲେଖନୀର ଦକ୍ଷତା ଅନନ୍ୟ ସୁଲଭ । ଏହାହିଁ ଥିଲା କାବ୍ୟ ମାନସର ସର୍ବହୀନ ଆଭିମୁଖ୍ୟ । ଘଟଣା ଓ ତାର ପ୍ରଥମ ଉଦ୍ଦୀପନା ମୂଳକ ଆକର୍ଷଣ ତୁଟିଗଲା ପରେ ମନ ମଧ୍ୟରେ ତାଙ୍କ କବିତାର ଯେଉଁ ଗଭୀର ମାନବବାଦୀ ଆବେଦନ ଆଲୋଡ଼ନ ସୃଷ୍ଟି କରେ ତାହାହିଁ ତାଙ୍କ ଲେଖନୀର ସଫଳତା ବୋଲି କହିବାକୁ ହେବ ।

ମହାପାତ୍ରଙ୍କ କବିତା ହେଲା ସଂଗୀତ ମୁଖର, ତେଣୁ ତାହା ତତ୍କ୍ଷଣାତ୍ ପାଠକର ହୃଦୟ କନ୍ଦରକୁ ସ୍ପନ୍ଦିତ କରି ପାରୁଥିଲା । ନୀଳକଣ୍ଠ ତାଙ୍କ କବିତାର ଏଇ ବିଶେଷତ୍ୱ ସପକ୍ଷରେ କହିଛନ୍ତି: ଇଂରାଜୀରୁ ଅନୁକରଣ କରି ଅନେକ ଲିରିକ୍ ଲେଖନ୍ତି, ବଲାଡ୍ ଲେଖନ୍ତି, ସନେଟ୍ ମଧ୍ୟ ଲେଖନ୍ତି । ଗୋଦାବରୀଶଙ୍କ ଏସବୁ କବିତା ଏକାଧାରରେ ସେ ସବୁ ପୁଣି ତହିଁରୁ ବେଶୀ । ତେଣୁ କହେ ଯେ କୌଣସି ପାଠକ ପକ୍ଷରେ ଏସବୁ ଅନୁଭବ୍ୟ ଆଲୋଚନାରେ ଏହାର ପୂରା ପ୍ରକାଶ ସମ୍ଭବ ହେବ ବୋଲି ମନେ ହେଉନାହିଁ । ("କଣ୍ଟା ଓ ଫୁଲ"ର ମୁଖବନ୍ଧ) । ତେଣୁ ତାଙ୍କ କବିତା ଏକ ପକ୍ଷରେ ସଂଗୀତ ଓ ଅପରପକ୍ଷରେ କବିତା ଥିବାରୁ ଏତେ ଆକର୍ଷଣୀୟ ମନେ ହେଉଥିଲା । ଏଥିରେ ସାଧାରଣ ମଣିଷର ଭାବ ଓ ଭାଷାର ଯେଉଁ ସଂଗମ ଦେଖିବାକୁ ମିଳୁଥିଲା ତାହାହେଲା ଓଡ଼ିଆ ଚଳନ୍ତି ଭାଷାର ଆତ୍ମସତ୍ତା । ଯେତିକି ଓଜ ଓ ମାଧୁର୍ଯ୍ୟ ସେତିକି ଆବୃତ୍ତି ଉପଯୋଗୀ ସମ୍ମୋହ । "T.S. Eliot u The Music of Poetry" ପ୍ରବନ୍ଧରୁ ଉଦ୍ଧାର କରାଯାଇ କୁହାଯାଇପାରେ ଯେ "For Pochie idealitation is not a frivolous enbelleshment, but a profound pentration in vritue of which we pan from troubulous emotion to the serinity of contemplation." ମନ୍ତବ୍ୟ କବି ଗୋଦାବରୀଶ ମହାପାତ୍ରଙ୍କ ପାଇଁ ପ୍ରଯୁଜ୍ୟ ହୋଇପାରେ ।

# କୁନ୍ତଳା କାବ୍ୟବିଭା

ପ୍ର. ସଂଘମିତ୍ରା ମିଶ୍ର

କବି କୁନ୍ତଳା କୁମାରୀ ଏକ ଅନମନୀୟ ଉଜ୍ଜ୍ୱଳ ବ୍ୟକ୍ତିସତ୍ତା ଯିଏ ବିଂଶଶତାବ୍ଦୀର ପ୍ରଥମ ପାଦରେ ଜନ୍ମ ହୋଇ ମଧ୍ୟ ଆଜି ପର୍ଯ୍ୟନ୍ତ ପ୍ରସଙ୍ଗିକ ହୋଇ ରହିଛନ୍ତି । ନିଜର କବିତା 'ଶେଫାଳି ପ୍ରତି' ଭଳି ସେ ଅଳ୍ପାୟୁ, ମାତ୍ର ତାଙ୍କର ଜୀବନ ଅସାଧାରଣ । ତାଙ୍କର ସାହିତ୍ୟ ସୃଷ୍ଟି ପ୍ରାୟ ୧୯୨୪-୨୮ ମଧ୍ୟରେ ସୀମିତ । କାରଣ ୧୯୨୮ରେ ସେ ଦିଲ୍ଲୀ ଯାତ୍ରା କରିଛନ୍ତି ଓ ସେଠାରେ ୨୩.୦୮.୧୯୩୮ରେ ତାଙ୍କର ଦେହାନ୍ତ ହୁଏ । କୁନ୍ତଳାକୁମାରୀଙ୍କ କାବ୍ୟ ପ୍ରତିଭା, ଉପନ୍ୟାସ ତଥା ଗଦ୍ୟ ରଚନା ସମ୍ପର୍କରେ ବହୁ ଆଲୋଚନା ହୋଇଛି । ଅନେକ ପି.ଏଚ୍.ଡ଼ି. ସନ୍ଦର୍ଭ ମଧ୍ୟ ରଚିତ ହୋଇଛି । ଏହି କ୍ଷୁଦ୍ର ନିବନ୍ଧରେ କବି କୁନ୍ତଳାକୁମାରୀଙ୍କ ସମ୍ୟକ୍ ଆଲୋଚନା କରାଯିବ ।

**କୁନ୍ତଳାଙ୍କ ବାଲ୍ୟକାଳ :-**

୧୯୦୦ ମସିହା ଫେବୃଆରୀ ୮ ତାରିଖରେ ମଧ୍ୟପ୍ରଦେଶ ବସ୍ତର ଇଷ୍ଟେଟର ଗଜଦଳପୁରରେ କୁନ୍ତଳା ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜେଜେବାପା ଶ୍ୟାମ୍‌ରନ୍‌ଙ୍କ ଅନିଚ୍ଛା ସତ୍ତ୍ୱେ ଡୁବନ୍ ବିଧିରେ ଖ୍ରୀଷ୍ଟିୟାନ୍ ଧର୍ମ ଗ୍ରହଣ କରିଥିଲେ । ଶ୍ୟାମ୍‌ରନ୍‌ଙ୍କ ପୈତୃକଗୃହ ଥିଲା ପୁରୀର କୁଣ୍ଢେଇବେଣ୍ଟ ସାହିରେ । ପାଦ୍ରୀମାନେ ଶ୍ୟାମ୍‌ରନ୍‌ଙ୍କ ବିବାହ ସାଧବୀନାମ୍ନୀ କନ୍ୟାଙ୍କ ସହିତ କରିଦେଇଥିଲେ । କୁନ୍ତଳାଙ୍କ ପିତା ଦାନିଏଲ୍ ଏହି ଶ୍ୟାମରନ୍ ଓ ସାଧବୀଙ୍କ ସନ୍ତାନ । ଦାନିଏଲ୍ ସାବତ ଏଣ୍ଟ୍ରାନ୍‌ସ ପରେ ଡାକ୍ତରୀ ପଢ଼ି ଜଗଦଳପୁରରେ ଚାକିରି କରୁଥିଲେ । ସେ ଖ୍ରୀଷ୍ଟିଆନ୍ କନ୍ୟା ମନିକାଙ୍କୁ ବିବାହ କରିଥିଲେ । ଏମାନେ କୁନ୍ତଳା, ସରଳା ଓ ପ୍ରଫୁଲ୍ଲା ନାମକ ତିନି କନ୍ୟା, ସାମୁଏଲ୍ ଓ ନିଧିନିହେଲ୍ ନାମକ ଦୁଇ ପୁତ୍ରଙ୍କର ଜନକ ଜନନୀ ହୋଇଥିଲେ । ସେମାନଙ୍କର ବାଲ୍ୟକାଳ ବର୍ମାରେ ଅତିବାହିତ ହୋଇଥିଲା ।

ହିନ୍ଦୀରେ ପ୍ରଥମେ କଥା କହିବାକୁ ଆରମ୍ଭ କରିଥିବା କୁନ୍ତଳା ତେର ବର୍ଷ ପର୍ଯ୍ୟନ୍ତ ଓଡ଼ିଆ ଜାଣି ନଥିଲେ । ବର୍ମୀୟ ମହିଳାମାନଙ୍କର ଦୃଢ଼ତା ଦ୍ୱାରା ସେ ପ୍ରଭାବିତ ହୋଇଥିଲେ । ଯୀଶୁଙ୍କ ଭଜନ ଧ୍ୟାନ କରିବାରେ ତାଙ୍କର ଆଗ୍ରହ ଥିଲା । ମାତ୍ର ଆଉ ପାଞ୍ଚଜଣ ଝିଅଙ୍କ ଭଳି କୁନ୍ତଳାଙ୍କୁ ପିତାମାତାଙ୍କର ସ୍ନେହ ଶ୍ରଦ୍ଧା ଦୀର୍ଘଦିନ ମିଳିନଥିଲା । ପିତା ଦାନିଏଲ୍ ମାତା ମନିକାଙ୍କର ସାନଭଉଣୀଙ୍କ ପ୍ରତି ଆକର୍ଷିତ

ହୋଇ ତାଙ୍କୁ ବିବାହ କରିବାକୁ ମନସ୍ଥ କରିବାରୁ ଦୃଢ଼ବ୍ୟକ୍ତିତ୍ୱସଂପନ୍ନ କୁନ୍ତଳା ମାତ୍ର ପନ୍ଦର ବର୍ଷ ବୟସରେ ଭାଇଭଉଣୀ ଓ ମାଆଙ୍କ ସହିତ ବର୍ମା ଛାଡ଼ି ଖୋର୍ଦ୍ଧା ଚାଲି ଆସିଥିଲେ । ବାପାଙ୍କର ଅବିଚାର ହିଁ ତାଙ୍କ ଜୀବନର ସ୍ୱାଭାବିକତା ନଷ୍ଟ କରିଦେଇଥିଲା । ମାଆଙ୍କର ବାପାଙ୍କୁ ଛାଡ଼ି ଆସିବାର ନିଷ୍ପତ୍ତିକୁ ସେ ପସନ୍ଦ କରିଥିଲେ ଓ ବଡ଼ ଭଉଣୀଭାବେ ସାନ ଭାଇଭଉଣୀମାନଙ୍କ ପ୍ରତି ଅତୀବ ସ୍ନେହଶୀଳା ହୋଇଥିଲେ । ଖୋର୍ଦ୍ଧାରେ ସେ ହିନ୍ଦୁ ମହିଳାମାନଙ୍କ ସହ ମିଶି ନାନା ପର୍ବ ପାଳନ କରୁଥିଲେ ଓ ସେମାନଙ୍କର ସରଳତା ଦ୍ୱାରା ପ୍ରଭାବିତ ହୋଇଥିଲେ । ୧୯୧୭ରେ କଟକର କେଦାରପୁରରେ ଜଣେ ଆତ୍ମୀୟଙ୍କ ଘରେ ରହି ସେ ରେଭେନ୍‌ସା ଗାର୍ଲ୍ସ ସ୍କୁଲରେ ପଢ଼ିଲେ ଓ ୧୯୧୮ରେ କଟକ ମେଡ଼ିକାଲ୍ ସ୍କୁଲରେ ପଢ଼ିବା ପାଇଁ ଆସିଲେ । ରେଭେନ୍‌ସା ଗାର୍ଲ୍ସ ସ୍କୁଲରୁ ବିଦାୟ ନେବା ଦିନ ସେ ସ୍ୱରଚିତ କବିତାଟିଏ ଆବୃତ୍ତି କରି ସମସ୍ତଙ୍କୁ ଚମତ୍କୃତ କରି ଦେଇଥିଲେ । ୧୯୨୧ରେ ସେ ବିହାର ମେଡ଼ିକାଲ ବୋର୍ଡ଼ ପରିକ୍ଷାରେ ସର୍ବାଧିକ ନମ୍ବର ରଖି ସ୍ୱର୍ଣ୍ଣ ପଦକ ବିଜୟିନୀ ହୋଇଥିଲେ । ସେ ନିଜ ଚେଷ୍ଟାରେ ଏକାଧିକ ଭାଷା ଆୟତ୍ତ କରିଥିଲେ ଓ ଡାକ୍ତର ଭାବରେ ତାଙ୍କର ଯଥେଷ୍ଟ ସୁନାମ ଥିଲା ।

**ତାଙ୍କର ସମକାଳୀନ ସାହିତ୍ୟିକ ପାଣିପାଗ :-**

ସେହି ସମୟ ଥିଲା ଜାତୀୟ ଆନ୍ଦୋଳନର ସମୟ । ସବୁଜର ସମକାଳୀନ ଏହି ପ୍ରତିଭା ଭିତରେ ପ୍ରାଣର ଉଲ୍ଲାସ ସହିତ ଜାତୀୟ ଚେତନା ଓ ସାଧାରଣ ମଣିଷ ପ୍ରତି ସମ୍ବେଦନାର ଧାରା ଏକୀଭୂତ ହୋଇଥିଲା । ୧୯୨୧ର ଅସହଯୋଗ ଆନ୍ଦୋଳନ, ୧୯୩୦ର ଲବଣ ସତ୍ୟାଗ୍ରହ ଆକୁମାରୀ ହିମାଚଳରେ ଦେଶପ୍ରେମର ବନ୍ୟା ଆଣିଥିଲା । ୧୯୨୮ରେ ଗୋପବନ୍ଧୁଙ୍କ ଦେହାନ୍ତ ଓ ୧୯୩୪ରେ ଉତ୍କଳଗୌରବ ମଧୁସୂଦନଙ୍କର ଦେହାନ୍ତ ଓଡ଼ିଶାର ଜନମାନସରେ କିନ୍ତୁ ହତାଶାଭାବ ମଧ ଆଣିଥିଲା, ୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ସେହି ହତାଶା ଭାବକୁ ପରିଚିତ କରିଥିଲା । କୁନ୍ତଳା ରାଧାନାଥ, ମଧୁସୂଦନ ପ୍ରଭୃତିଙ୍କୁ ପାଠ କରିଛନ୍ତି ଓ ନିଜ କବିତାରେ ଭକ୍ତକବି ମଧୁସୂଦନଙ୍କୁ ଗୁରୁ ଭାବରେ ମଧ ସ୍ୱୀକାର କରିଛନ୍ତି, ସବୁଜ କବିଙ୍କର ରୋମାଣ୍ଟିକ୍ ଭାବବିଳାସ, ଅତୀତପ୍ରୀତି ଓ ସୁନ୍ଦର ପ୍ରତି ମୋହ ସହିତ ବାସ୍ତବବାଦର ମଧୁର ସମିଶ୍ରଣ ତାଙ୍କୁ ଅବଶ୍ୟ ପ୍ରଭାବିତ କରିଛି । ସମକାଳୀନ ପଦ୍ମଚରଣ, କାନ୍ତକବି ଲକ୍ଷ୍ମୀକାନ୍ତ, ଗୋଦାବରୀଶ ମହାପାତ୍ର, ମାୟାଧର ମାନସିଂହ ଓ ରାଧାମୋହନ ଗଡ଼ନାୟକଙ୍କ ସହିତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ସାହିତ୍ୟ

ସାଧନା ସହିତ ନିଜର ସାଧନା ସେ ଅବ୍ୟାହତ କରିଛନ୍ତି । ସମକାଳୀନ ନନ୍ଦକିଶୋର ବଳ, ବିଶ୍ୱନାଥ କର, ଲକ୍ଷ୍ମୀନାରାୟଣ ସାହୁ, ବାଳକୃଷ୍ଣ କର, ହରେକୃଷ୍ଣ ମହତାବ, ପଣ୍ଡିତ ନୀଳକଣ୍ଠ, କୁଞ୍ଜବିହାରୀ ଦାଶ, ଚକ୍ରଧର ମହାପାତ୍ର ପ୍ରଭୃତି ତାଙ୍କ ସୃଷ୍ଟିର ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରିଛନ୍ତି । ଏପରିକି ବିଜୟ ଚନ୍ଦ୍ର ମଜୁମ୍‌ଦାର ତାଙ୍କର ସମ୍ପାଦିତ "Typical Selections from Oriya Literature"ର ୩ୟ ଖଣ୍ଡରେ ତାଙ୍କର କବିତାକୁ ପୂର୍ବଜମାନଙ୍କ ସୃଷ୍ଟି ସହିତ ସ୍ଥାନିତ କରିଛନ୍ତି ।

**ବ୍ୟକ୍ତିଗତ ଜୀବନ ଓ ବିବାହ :-**

ବିବାହ ବ୍ୟକ୍ତିକୁ ଭାଙ୍ଗିପାରେ, ଗଢ଼ିପାରେ ପୁଣି ଯୋଡ଼ିପାରେ । ଯେକୌଣସି ସ୍ରଷ୍ଟାର ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଜାଣିବାକୁ ପାଠକର ଆଗ୍ରହ ଥାଏ । ସେ ସ୍ରଷ୍ଟା ଯଦି ନାରୀ ହୋଇଥାଏ, ତେବେ କୌତୂହଳର ମାତ୍ରା ନିଶ୍ଚୟ ଅଧିକ ହୁଏ । ସେହି ଦୃଷ୍ଟିରୁ କୁନ୍ତଳାଙ୍କ ଜୀବନ ସମ୍ପର୍କରେ କିଛି ଆଲୋଚନା କରାଯାଉଛି । କୈଶୋରରେ ପିତାଙ୍କ ଚାରିତ୍ରିକ ଅସଂଗତିକୁ ଯିଏ ଦୂରରେ ଛାଡ଼ି ନିଜ ଗୋଡ଼ରେ ଠିଆ ହୋଇଥିଲେ ପୁନର୍ବାର ସେ ପ୍ରେମରେ ଅସଫଳ ହେଲେ । କଟକ ମେଡ଼ିକାଲ୍ ସ୍କୁଲର ଆନାଟୋମି ଓ ଫିଜୋଲୋଜି ଡେମନ୍‌ଷ୍ଟ୍ରେଟ୍‌ର ଶ୍ରୀ କୈଳାସ ଚନ୍ଦ୍ର ରାଓ ଥିଲେ ତାଙ୍କର ପଥପ୍ରଦର୍ଶକ । ଭାବପ୍ରବଣା କୁନ୍ତଳା ତାଙ୍କୁ ପ୍ରେମ କରି ବସିଲେ ମାତ୍ର ବିବାହିତ ତଥା ସନ୍ତାନର ଜନକ କୈଳାସ ରାଓ ତାଙ୍କୁ ଆଶ୍ୱାସନା ଦେଇ ପାରିଲେ ନାହିଁ । ଅପରପକ୍ଷରେ କୁନ୍ତଳାଙ୍କ ଲିଖିତ ଛଳଛଳ ଆବେଗ ପ୍ରବଣ ପ୍ରେମ କବିତାକୁ ସେ ଈଶ୍ୱରଙ୍କ ଆଡ଼କୁ ମୁହାଁଇ ନେବାକୁ ତାଙ୍କୁ ଉପଦେଶ ଦେଇଥିଲେ । ସେହି ସମୟରେ କୈଳାସଙ୍କ ଆଗ୍ରହ ଫଳରେ କୁନ୍ତଳା ସାହିତ୍ୟ ଜଗତରେ ଅଳ୍ପଦିନରେ ପରିଚିତା ହୋଇପାରିଥିଲେ । କୈଳାସଙ୍କୁ ପତି ରୂପରେ ପାଇବାକୁ ସେ ପୁନର୍ବାର କଲିକତାରେ ଧର୍ମାନ୍ତରିତ ହୋଇ ବ୍ରାହ୍ମଧର୍ମ ଗ୍ରହଣ କଲେ । କୁନ୍ତଳାଙ୍କର ଆର୍ଥିକ ସ୍ୱଚ୍ଛଳତା, ସାମାଜିକ ପ୍ରତିପତ୍ତି ପ୍ରଭୃତିକୁ ଦୃଷ୍ଟିରେ ରଖି କ୍ରମେ ତାଙ୍କର ନିକଟରେ ରହିଥିବା କୃଷ୍ଣ ପ୍ରସାଦ ବ୍ରହ୍ମଚାରୀ ନାମକ ଯୁବକଙ୍କୁ ସେ ବିବାହ କଲେ । ପ୍ରେମରେ ଅସଫଳ କୁନ୍ତଳା ପାରିବାରିକ ଜୀବନରେ ମଧ୍ୟ ସୁଖୀ ହେଲେ ନାହିଁ । ବ୍ୟକ୍ତିତ୍ୱମୟୀ କୁନ୍ତଳାଙ୍କ ବ୍ୟକ୍ତିତ୍ୱର ଲାଳନରେ କୃଷ୍ଣପ୍ରସାଦ ଅସଫଳ ହେଲେ । ତେବେ ସେ ତିନୋଟି ସନ୍ତାନଙ୍କର ଜନନୀ ହୋଇଥିଲେ । ଚିକିତ୍ସକ ଭାବେ ଅନେକଙ୍କୁ ରୋଗମୁକ୍ତ କରିଥିବା ବିଜ୍ଞାନୀ ମହିଳାଟି ତୃତୀୟ ସନ୍ତାନ ଜନ୍ମ ହେଲେ ତାଙ୍କ ସହିତ କଥା କହିବ ବୋଲି ବିଶ୍ୱାସ କରୁଥିଲେ । ତେଣୁ ଡାକ୍ତରବନ୍ଧୁମାନଙ୍କ ପରାମର୍ଶକୁ ଉପେକ୍ଷା କରି

ସେ ଗୃହ ମଧ୍ୟରେ ସନ୍ତାନ ଜନ୍ମ ଦେଲେ । ପୁତ୍ର ସନ୍ତାନ ଦେଖି ଆନନ୍ଦିତା କୁନ୍ତଳା ଏକ ଅବିଶ୍ୱାସ୍ୟ ପରିବେଶରେ ଦେହ ତ୍ୟାଗ କରିଥିଲେ ।

ନିଜକୁ ଡାକ୍ତର ଭାବେ ଦର୍ଶାଉଥିବା କୃଷ୍ଣପ୍ରସାଦଙ୍କର ନାନାଦି ତ୍ରୁଟିପୂର୍ଣ୍ଣ ଚିକିତ୍ସା ପାଇଁ ବାରମ୍ବାର କୋର୍ଟ କଚେରୀରେ ଖର୍ଚ୍ଚାନ୍ତ ହେଉଥିଲେ । ନିଜ ପାଖରେ ଲକ୍ଷେ ଟଙ୍କା ଏକାଠି କରିପାରିଲେ ସେ ଓଡ଼ିଶା ଫେରି 'ଭାରତୀ ତପୋବନ ସଂଘ' କାର୍ଯ୍ୟ କରିବେ ବୋଲି ବାରମ୍ବାର 'ସହକାର'ର ସମ୍ପାଦକ ବାଳକୃଷ୍ଣ କରଙ୍କୁ ପତ୍ର ଲେଖୁଥିଲେ । ମାତ୍ର ତାହା ଶେଷ ପର୍ଯ୍ୟନ୍ତ ସମ୍ଭବ ହୋଇପାରିନଥିଲା । କୁନ୍ତଳା କୁମାରୀ କବିତା ଭଳି ଉପନ୍ୟାସ ଜଗତରେ ମଧ୍ୟ ନିଜର କୃତିତ୍ୱ ପ୍ରଦର୍ଶନ କରିଛନ୍ତି । "ଭ୍ରାନ୍ତି", "ନଅତୁଣ୍ଡୀ", "କାଳୀ ବୋହୂ", "ପରଶମଣି", "ରଘୁ ଅରକ୍ଷିତ" ଓ "ଚିତ୍ରପଟ" (ଅସଂପୂର୍ଣ୍ଣ) ତାଙ୍କର ଉପନ୍ୟାସ ।

ତେବେ କବି କୁନ୍ତଳା କୁମାରୀଙ୍କୁ ଆଲୋଚନା କରାଯାଉଥିବାରୁ ଏଗୁଡ଼ିକୁ ଆଲୋଚନାର ପରିସରଭୁକ୍ତ କରାଯାଇ ନାହିଁ । ତାଙ୍କର ପ୍ରଥମ କବିତା ସଂକଳନ "ଅଞ୍ଜଳି" (୧୯୨୨)ରେ ମୁଦ୍ରିତ । "ଉଚ୍ଛ୍ୱାସ" (୧୯୨୩), "ଅର୍ଚ୍ଚନା" (୧୯୨୭), "ସ୍ଫୁଲିଙ୍ଗ" (୧୯୨୯), "ଆହ୍ୱାନ"(୧୯୩୦), "ପ୍ରେମ ଚିନ୍ତାମଣି" (୧୯୩୦), "ଓଡ଼ିଆଙ୍କ କାନ୍ଦଣା" (୧୯୩୬) ଓ "ଗଡ଼ଜାତ କୃଷକ" ତାଙ୍କ ଦେହାନ୍ତ ପରେ ୧୯୩୯ରେ ମୁଦ୍ରିତ । 'ମଣିକାଞ୍ଚନ' ରାଧାନାଥ ଶୈଳୀରେ ରଚିତ ଅସମ୍ପୂର୍ଣ୍ଣ କାବ୍ୟ ଯାହା ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା ।

କୁନ୍ତଳାଙ୍କ କବିତା ଗୁଡ଼ିକ ଆମେ ପଲ୍ଲୀପ୍ରାଣତା, ଅତୀତପ୍ରୀତି, ସ୍ୱଦେଶ ପ୍ରୀତି, ଈଶ୍ୱରଙ୍କ ପ୍ରତି ଅଭିମାନ, ସମାଜ ପ୍ରତି ସହାନୁଭୂତି, ନାରୀ ଜୀବନର ଦୁର୍ଦ୍ଦଶା, ଓଡ଼ିଶାର ଦୁଃସ୍ଥିତି ପ୍ରଭୃତିକୁ ବିଚାର ନେଇ ଆଲୋଚନା କରିପାରିବା ।

ବାଇଶି ବର୍ଷ ବୟସରେ ତାଙ୍କର ପ୍ରଥମ କବିତା 'ତାରାପ୍ରତି' ଉତ୍କଳସାହିତ୍ୟର ୨୫ଶ ଭାଗ ୩ୟ ସଂଖ୍ୟା ୧୯୨୨ରେ ପ୍ରକାଶିତ ହୋଇଥିଲା । ତହିଁରୁ କିଛି ଅଂଶ :-

""ହେଉ ବିଶ୍ୱ ସେବା ମୋ ଜୀବନ ବ୍ରତ, ଆସୁ ବାଧା ଆସୁ ଦୁଃଖ ଶତ ଶତ, / ନ ହୁଏ ଯେହ୍ନେ ମୁଁ କ୍ଷଣକେ ନିରାଶ, ହେଇ କର୍ମ ଲକ୍ଷ ନିରୁପଦେଆଶ, / କର୍ତ୍ତବ୍ୟ ମହତ, କର୍ତ୍ତବ୍ୟ ରଚିତ, କଲି ତାହା ଆଜି ଜୀବନେ ନିହିତ ।"

ସତେ ଯେପରି ଏହି କେତୋଟି ଧାଡ଼ିରେ ପ୍ରତିଫଳିତ ଜୀବନ ଦର୍ଶନକୁ ସେ ସର୍ବଦା ଅନୁସରଣ କରିଥିଲେ । ଅଂଜଳି ଦର୍ପଣୀ ଜିଲ୍ଲାଧିଶ୍ୱରୀ ରାଣୀ ଲକ୍ଷ୍ମୀ

ଦେବୀଙ୍କ ଆର୍ଥିକ ସହାୟତାରେ ମୁଦ୍ରିତ ହୋଇଥିଲା । ଏଥିରେ ୭୪ ପଦର ଦୀର୍ଘ କବିତା (ପୂଜା) ୪ ପଦର (ସ୍ତବ) ଏକତ୍ର ସ୍ଥାନିତ ହୋଇଛି । ତହିଁରୁ କିଛି ଉଦ୍ଧୃତି *** ଆମ୍ଭମାନଙ୍କର ନବୀନ କବି ଅଳ୍ପ ବୟସରେ ନିସର୍ଗ ଲାବଣ୍ୟ ମଧ୍ୟରେ ବିଶ୍ୱସ୍ରଷ୍ଟାଙ୍କର ମହୀୟାନ ସତ୍ତାର ନିଦର୍ଶନ ପାଇ ଏବଂ ଗଭୀର ଭାବରେ ତାହା ପ୍ରାଣରେ ଅନୁଭବ କରି, ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । *** ଆମ୍ଭମାନଙ୍କର ଉତ୍କଳର ଏହି ବାଳିକା କବି ପୂଜା କୁସୁମମାଳା ହସ୍ତରେ ଧାରଣା କରି, 'ମନ୍ଦିରପଥବର୍ତ୍ତିନୀ' ରୂପେ ଆଜି ଦଣ୍ଡାୟମାନ । (ଗ୍ରନ୍ଥାବଳୀ କବିତା ଭାଗ ପୃ-୮୩) ଏହି 'ମନ୍ଦରପଥବର୍ତ୍ତିନୀ' ପଦଟି ହିଁ କୁନ୍ତଳାଙ୍କ ବ୍ୟକ୍ତିତ୍ୱ ବୁଝିବାରେ ସହାୟକ । ସତେ ଯେପରି ଦେବଦର୍ଶନର ନିକଟବର୍ତ୍ତୀ ହୋଇ ସେ ଦିଅଁଙ୍କ ନିକଟରେ ପହଞ୍ଚିପାରିନାହାନ୍ତି ମାତ୍ର ପରପୀଢ଼ି ପାଇଁ ଆଲୋକିତ ମାର୍ଗଟିଏ ପ୍ରସ୍ତୁତ କରି ପାରିଛନ୍ତି । 'ଅର୍ଚ୍ଚନା', 'ବିଲ୍ୱଦଳ' ମଧୁସୂଦନ ପର୍ଯ୍ୟାୟ କବିଙ୍କର ରାଧାନାଥ ରାୟଙ୍କୁ, 'ଦୁର୍ବାଦଳ' ନନ୍ଦକିଶୋର ବଳଙ୍କୁ, 'ଚନ୍ଦ୍ରାଦଳ' ରାଓଙ୍କୁ ଓ 'ଶତଦଳ' ବ୍ରଜସୁନ୍ଦର ଦାସଙ୍କୁ ପୁତ୍ର ଶ୍ରୀମାନ୍ ସତ୍ୟସୁନ୍ଦରଙ୍କୁ ଅର୍ପିତ । 'ସ୍ଫୁଲିଙ୍ଗ୍' "ତରୁଣ ଉତ୍କଳସୁତ ମାନଙ୍କୁ" ଅର୍ପିତ । ଏତିକି କବିତାକୁ ନେଇ ଆମେ ଆଲୋଚନା କରିବା ତହିଁରେ ସଂଯୋଗ କରିବା ।

**ବ୍ୟକ୍ତିଗତ କାରୁଣ୍ୟକୁ ସାର୍ବଜନୀନ କରିବାର କଳା :-**

ଯଥାର୍ଥ କବି ଏକାଧାରରେ ସ୍ରଷ୍ଟା, ଦ୍ରଷ୍ଟା ପୁଣି ଭୋକ୍ତା । ସେ ଉଦାସୀନ ଓ ଭାବପ୍ରବଣ, ବେଦନା ଚିରକାଳ ସମ୍ବେଦନାର ମାର୍ଗଦର୍ଶକ । ଅଶ୍ରୁର ବିନିମୟରେ କବି ଯେଉଁ ସିଦ୍ଧି ଲାଭ କରନ୍ତି ତାହା ତାଙ୍କୁ ସଂସାରର ଆର୍ତ୍ତି ସହିତ ଏକାତ୍ମ କରିଦିଏ । ଜୀବନର ଅନେକ ଘାତ ପ୍ରତିଘାତକୁ ସେ ସାହିତ୍ୟର ସହୃଦୟତା ନେଇ ଅତିକ୍ରମ କରିଛନ୍ତି । 'ଅଂଜଳି'ର 'ଆମ୍ବ' କିବତାରେ :-

"ଆସ ହେ ଦେବତା ପ୍ରାଣର ସବିତା / ହୃଦୟ ମଳିରେ ଆଜି ହେ, / ଦେବୀ ଗୋ ଚରଣେ ପ୍ରେମ ଉପହାର / ଭକତି କୁସୁମ ସାଜି ହେ ।"

ତାଙ୍କ ପାଇଁ ପ୍ରେମ ଲୁଚକାଳି ନୁହେଁ ବରଂ ପରିବ୍ୟାପ୍ତ ଓ ପରିବ୍ୟାପ୍ତ । ଦହିତ ପୁରୁଷର ଆଶ୍ୱସନା ନ ପାଇ ସେ ବ୍ୟାକୁଳରେ ଗାଆନ୍ତି:

"କିମ୍ବା ଲୁଚକାଳିରା ମାନ ଅଭିମାନ / କିମ୍ବା ଲୁଚକାଳି ଖେଳ / ତୁମେ ତ ମୋହର ସଂସାର ସାଗରେ / ଜୀବନ ରକ୍ଷଣ ଭେଳା" (ଅଭିଳାଷ)

ଦୁଃଖ ତାଙ୍କର ଜୀବନ ଆକାଶର ସ୍ଥାୟୀ ରଙ୍ଗ । ସେଠି ବଜ୍ରବିଦ୍ୟୁତ ଅସ୍ତ

ମାତ୍ର ଜ୍ୟୋତ୍ସ୍ନାର କ୍ଷୀଣ ଧାରଟିଏ ହିଁ ତାଙ୍କୁ ଜୀବନର ସମ୍ମୁଖୀନ ହେବାକୁ ଦମ୍ଭ ଦେଇଛି । 'କାମନା' କବିତାରେ:

"ଦୁଃଖ ମୋର ନିତି କୁଟୀର ଅତିଥି, ସୁଖ ମୁଖ ଦେଖିନାହିଁ, / ଦୁଃଖ ମୋର ସାରଭାଗ ଏ ଜୀବନ, ସୁଖ ପାଇଁ ସ୍ଥାନ କାହିଁ ? / ଦୁଃଖ ମୋର ବନ୍ଧୁ ଦୁଃଖ ମୋର ସଖା, ଦୁଃଖ ମୋ ହୃଦୟବାସୀ / ଅର୍ଚ୍ଚନା ମନ୍ଦିରେ ଦୁଃଖ ବେଦୀପରେ ଦୁଃଖ ମୋର ଫୁଲରାଶି ।"

ଏହି ଭାବନା ଭିତରେ ଏକ ସାର୍ବଜନୀନତା ବିଦ୍ୟମାନ ଯାହା ପାଠକ ମାତ୍ରେ ଅନୁଭବ କରିପାରନ୍ତି । ସେ ପ୍ରଣୟିନୀ । ପ୍ରେମର ସାଧନାରେ ମଗ୍ନ ଏହି ଦେବଙ୍କ ପାଇଁ ମାୟାଧର ମାନସିଂହଙ୍କ ଉକ୍ତି - *** ଯେପରି ଜଣାପଡ଼େ ଗୋଟିଏ ଗୁଳ୍ମାଚ୍ଛନ୍ନ ବ୍ରତତୀ ତାର ପ୍ରାଣପଣ ଚେଷ୍ଟା କରିବୁ ସମସ୍ତ ଭାଧାବନ୍ଧକକୁ ଭାଙ୍ଗି ଓ ଏଡ଼ି ବାହାରକୁ ଆସିବାକୁ । ମୁକ୍ତ ଆକାଶରେ ସୂର୍ଯ୍ୟାଲୋକ ସହିତ ପରିଚୟ ପାଇବା ଲାଗି । ନିରବଛିନ୍ନ ସଂଗ୍ରାମରେ ଲତାର ଦେହଶ୍ରୀ ରୁଗ୍ଣ ନିସ୍ତେଜ ଦେଖାଗଲେ ମଧ ତାର ଶିରାରେ ଶିରାରେ ଆନନ୍ଦର ପ୍ରବାହ ଖେଳୁଛି ଏଇ ମାତ୍ର ଲାଗି ଯେ ସେ ସୂର୍ଯ୍ୟଙ୍କ ସହିତ ପରିଚିତ ହୋଇପାରିଛି । "ମାନସିଂହ ଗ୍ରନ୍ଥାବଳୀ", କବି ଓ କବିତା ।

ଏହି ସୂର୍ଯ୍ୟତପା କୁନ୍ତଳାଙ୍କ ପାଇଁ ଦୁଃଖ ବେଦନା ଶେଷ କଥା ନୁହେଁ । ସେ ବିଷାଦପଦରୁ ଉର୍ଦ୍ଧ୍ୱତର ହୋଇ ଜୀବନରେ ଦିବା ଆନନ୍ଦରେ ଉଲ୍ଲାସ ଅନୁଭବ କରିପାରିଛନ୍ତି । 'ବସନ୍ତେ' କବିତାରେ ସେ ଗାଇଛନ୍ତି ସେହି ଆକାର ସଂଗୀତ-

"ଦୁଃଖର କଥା ମୁଁ କହିବି ନାହିଁ ଲୋ ମଧୁ ମାସ ମଧୁ ଭାସରେ / ହୃଦବୀଣା ଛିନ୍ନ-ତାରକୁ ଯୋଡ଼ିଣ ପାଇବି ଗୀତ ମୁଁ ସୁସ୍ୱରେ ।" (ଗ୍ରନ୍ଥାବଳୀ -ପୃ-୪୪)

'ଶେଫାଳି ପ୍ରତି'ରେ ଏହି ଆଶାବାଦର ସ୍ୱର ବେଶ୍ ବଳିଷ୍ଠ । ଅଳ୍ପାୟୁ ଶେଫାଳି (ଗଙ୍ଗଶିଉଳି) ଫୁଲକୁ ଦେଖି ସେ ନିଜ ଜୀବନର ଅସାରତା ବୁଝି ପାରିଛନ୍ତି । ଶେଫାଳି ଭଳି ସେ ଘଡ଼ିକ ପରେ ମାଟିରେ ମିଶିଯିବେ ମାତ୍ର ତାଙ୍କର ଆତ୍ମାଫୁଲ ମଉଳିଯିବ ନାହିଁ । ତେଣୁ ସେ ଗାଆନ୍ତି :

"ଶେଷ ଗତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ / ମରିବାକୁ ଫୁଟି ନାହିଁ ଭବତରୁ ଡ଼ାଳରେ / ଅଛି ରମ୍ୟ ଉପବନ ଯହିଁ ଫୁଟି ଚିରଦିନ / ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ / ମୋହିବି ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।"

**ଦେଶପ୍ରୀତିର ମନ୍ଦ୍ର ସ୍ୱର :-**

ସେ ଇଂରେଜ ମାନଙ୍କୁ ବିଦେଶୀ ଭାବେ କଟୁଭାଷା ପ୍ରୟୋଗ କରିଛନ୍ତି । ବୈରାଗ୍ୟ ତ୍ୟାଗ କରି ଉତ୍କଳୀୟ ମାନଙ୍କୁ ଜାଗ୍ରତ ହେବା ପାଇଁ ଆହ୍ୱାନ ଦେଇ ସେ

ଗାଇଛନ୍ତି :-
"ହେ ପୁରୁଷେ ଯଦି ନ ଉଠ ଏଥର ଆମେ ରଣବେଶେ ହେବୁ ଅଗ୍ରସର / ତୁମେ ଯଦି ଭୟେ ଦିଅ ପଛଘୁଞ୍ଚା ଆମେ ରୀତି ଯିବୁ ଆମ ଲାଜଲୁଚ / ଆମେ ନାରୀଗଣ କୋଣରୁ ବାହାରି ଧରିବୁ ଅସହଯୋଗ ତରବାରୀ ।"

ନାରୀଶକ୍ତି ଓ ଯୁବଶକ୍ତି ଉପରେ ତାଙ୍କର ଯଥେଷ୍ଟ ଆସ୍ଥା ଥିଲା । ତେଣୁ 'ସ୍ଫୁଲିଙ୍ଗ'ରେ କବି ତରୁଣମାନଙ୍କୁ ଆବାହନ କରି କୁହନ୍ତି :
"ନିରାଶାର ଗିର ନ ଘୋଷୁ ରସନା ନଭଜୁ ତାହା ଏ ଜାତି ଶ୍ରବଣରେ, / ଦେଢ଼କୋଟି ପ୍ରାଣ ନବଜାଗରଣ ଉଠିବାକୁ ଦିଅ ନବ ବିକ୍ରମରେ" । (ଗ୍ରନ୍ଥାବଳୀ-ପୃ-୧୯୦)

ଏହିଭଳି ଆହ୍ୱାନୀ କବିତା ରଚନା କରି ସେ ନିଜର ଦେଶପ୍ରୀତିର ପରିଚୟ ଦେଇଛନ୍ତି । ସେ ସମୟ ଥିଲା ଦେଶ ପାଇଁ ତ୍ୟାଗର ସମୟ । ଗାନ୍ଧୀ, ଗୋପବନ୍ଧୁ, ମଧୁସୂଦନଙ୍କ ତ୍ୟାଗ ଓ ତପସ୍ୟାର ଗାଥା ଘରେ ଘରେ ପରିବ୍ୟାପ୍ତ ଥିଲା । ତେଣୁ ନିଜ ଘରେ ରହି ଅନ୍ୟର ଦାୟିତ୍ୱ ସ୍ୱୀକାର କରି ନିଜତ୍ୱକୁ ବିସର୍ଜନ ଦେବାଠାରୁ ଦୀନତା ଆଉ କିଛି ନାହିଁ ବୋଲି ସେ ବାରମ୍ବାର ନିଜ କବିତାରେ ଉଦ୍‌ବୋଧନ କରିଛନ୍ତି । ଆହ୍ୱାନରେ ସେ ଗାଇଛନ୍ତି ସେହି ଉଦ୍‌ବୋଧନ ସଙ୍ଗୀତ :-
"ମୁହେଁ ମିଠା ପେଟେ ଶାତା ଦିଆ ଖୁର / ଛଳ ବ୍ୟବସାୟୀ ଦୁର୍ବୁଦ୍ଧି ଚତୁର / ନିଜ ଦେଶେ ଆଜି ଆମେ ନିର୍ବାସିତ / ବାଘ ହାବୁଡ଼ରେମୃଗ ଭଳି ଭୀତ ।" (ଗ୍ରନ୍ଥାବଳୀ-ପୃ-୨୧୨)

ନାରୀ ଶକ୍ତି ହିଁ ଦେଶର ମୁକ୍ତିପଥ ଉଜ୍ଜ୍ୱଳ କରିପାରିବ । ସେହି ନାରୀକୁ ଗୃହକୋଣରେ ବନ୍ଦିନୀ କରି ପୁରୁଷ କଦାଚିତ ସମନ୍ୱିତ ସମାଜ ଗଠନରେ ସଫଳ ହେବ ନାହିଁ । ଭାରତରେ ନାରୀ ଅତ୍ୟାଚରିତା ବୋଲି ଉଠୁଥିବା ଗୁଞ୍ଜରଣ ବିଷୟରେ କୁନ୍ତଳା ଦୃଢ଼ ଭାବରେ କୁହନ୍ତି:
"ବୃଥା ଭବ ତଳେ ନ କର ପ୍ରଚର, ଭାରତରେ ଭରା ନାରୀ ଅତ୍ୟାଚର / ବିଦେଶୀ ସରବେ ଗରବେ ବଖାଣି, ନ ଗାଆନ୍ତୁ ନାରୀ ଦୁର୍ଦ୍ଦଶା ବିଭାଣୀ ।"

ନାରୀ ନିଜର ପ୍ରାଚୀନ ସାମର୍ଥ୍ୟ ନେଇ ଜାଗ୍ରତ ହେଉ । କାରଣ ଭାରତ ଯୁଗେ ଯୁଗେ ନାରୀକୁ ସମ୍ମାନ ଦେବା ଶିଖିଛି । ତେଣୁ ନାରୀକୁ ସେ ସକଳ ଶକ୍ତିର ଆଧାର ଭାବେ ପରିକଳ୍ପନା କରି ଗାଆନ୍ତି :-
"ଉଦ୍ ହେଉ ଆଜି ଦିବ୍ୟ ଦୀପ୍ତିମୟୀ ସ୍ୱାହା ଅନଳର ପାଶେ / ବଜ୍ରଧାରୀ ବାମେ ଶକ୍ତିମୟୀ ଶଚୀ ବିରାଜୁ ଗରବୋଲ୍ଲାସେ । / ହେଉ ଅବତୀର୍ଣ୍ଣ ଉମା ଘରେ ଘରେ /

ତ୍ରିଶୂଳ ଧାରିଣୀ ବିଶାଳ ଖର୍ପରେ / ପୋତୁ ନେଇ ପାପ ଦେଅନୀ ସନ୍ତପ / ଉଠୁ ଭାରତ ତା ପ୍ରାଚୀନ ଦର୍ପରେ ।"

ଏହା ହିଁ କବି କୁନ୍ତଳା କୁମାରୀଙ୍କର ସାମାଜିକ ଦର୍ଶନ, ମହିରେ ଭାଙ୍ଗିବା ଠାରୁ ଗଢ଼ିବାର ସ୍ୱର ସ୍ପଷ୍ଟ । ସେଠାରେ ନାରୀ ପୁରୁଷ ଭେଦ ନାହିଁ ବରଂ ସହଭାଗିତା ହିଁ ଗୁରୁତ୍ୱପୂର୍ଣ୍ଣ । ପାରିବାରିକ ସଂହତି ଜାତୀୟ ସଂହତିର ପ୍ରଥମ ପାହାଚ, ଏହା ସେ ନିଜ ଜୀବନ ଧାରାରୁ ଅନୁମାନ କରିପାରିଥିଲେ । ସତ୍ୟର ପ୍ରକାଶ ଓ ନିଜର ଅନୁଭବ କରିପାରିଲେ ଜୀବନ ସୁନ୍ଦର ହେବ । ଏହାକୁ ଦର୍ଶନ କରିବା ପାଇଁ ଆଗ୍ରହ ଲୋଡ଼ା । କର୍ମ ପ୍ରତି ସମର୍ପିତା କବି କୁହନ୍ତି :-

"କର୍ମ ମୋହର ମୂଲି କରିଯିବି ତୁମ ଆଦେଶକୁ ଥିବି ଗ୍ହିଁ, / ସୁଖେ ଦୁଃଖେ ମୋର ଭାଗ ବାଣ୍ଟିବାକୁ ତୁମକୁ ମୁଁ କହୁନାହିଁ ।" (ଗ୍ରନ୍ଥାବଳୀ-ପୃ-୬୮)

ଏଠାରେ ତୁମେ କୌଣସି ରକ୍ତମାଂସ ଧାରୀ ବ୍ୟକ୍ତି ହୋଇପାରନ୍ତି ଅବା ସୂର୍ଯ୍ୟାତ୍ମ ସତ୍ତା ହୋଇପାରେ ମାତ୍ର କର୍ମରେ ନିପୁଣତା ସମର୍ପଣ ଭାବନା ହିଁ କୁନ୍ତଳା କବିତାର ସ୍ୱାତନ୍ତ୍ର୍ୟ ।

**ଉତ୍କଳ ପ୍ରୀତିର ଉଜ୍ଜ୍ୱଳ ଦିଗନ୍ତ :-**

କୁନ୍ତଳାଙ୍କର ଦେଶପ୍ରୀତି ମହାଭାରତୀୟ କୋଟୀକୁ ସ୍ପର୍ଶ କରିଥିଲେ ହେଁ ମୁଖ୍ୟତଃ ଓଡ଼ିଶା ପାଇଁ ତାଙ୍କର ଆତ୍ମା କାନ୍ଦୁଥିଲା । ଦିଲ୍ଲୀରେ ଅବସ୍ଥାନ କାଳରେ ସେ 'ସହକାର'ର ସମ୍ପାଦକ ବାଳକୃଷ୍ଣ କରଙ୍କୁ ଯେଉଁ ପତ୍ରସବୁ ଲେଖିଥିଲେ ତାହା 'ଦିଲ୍ଲୀ ଚିଠି' ଶୀର୍ଷକରେ ଧାରାବାହିତ ଭାବରେ ସରକାରରେ ପ୍ରକାଶିତ ହେଉଥିଲା । ସେଥିରେ ସେ ଓଡ଼ିଆମାନଙ୍କୁ ନିଜ ନାମ ପୂର୍ବରୁ 'ବୀରଶ୍ରୀ' ଓ 'ବୀରଶ୍ରୀମତୀ' ଲେଖିବାକୁ ଉଦ୍‌ବୋଧନ ଦେଇଥିଲେ । 'ଅଂଜଳି' ଏକ କବିତାରେ ସେ ପ୍ରଭୁଙ୍କୁ ପ୍ରାର୍ଥନା କରନ୍ତି -

"ସଫଳ କର ହେ ମୋର ଏଦୀନ ଲେଖନୀ / ମାଗେ ଏହି ବର ପ୍ରଭୁ ତବ ଶ୍ରୀ ପୟରେ / ସାଦରେ ଗ୍ରହଣ କରୁ ଉତ୍କଳ ଜନନୀ / ଆଶିଷ କର ହେ ପ୍ରଭୁ ଏ ଲେଖନୀ ପରେ ।"

'ଓଡ଼ିଆଙ୍କ କାନ୍ଦଣା'ରେ ତାଙ୍କର ଓଡ଼ିଶା ପ୍ରୀତି ଆନ୍ତରିକତାର ସ୍ୱର ଅନୁରଣିତ । ଏହା ତାଙ୍କ ସ୍ୱାମୀ କୃଷ୍ଣପ୍ରସାଦ ବ୍ରହ୍ମଗିରିଙ୍କୁ ଅର୍ପିତ । ଓଡ଼ିଆଙ୍କ ବୋହୂର କାନ୍ଦ, ପତିତାର କାନ୍ଦ, ଓଡ଼ିଆ ପୁଅଙ୍କ କଥାବାର୍ତ୍ତା, କରଣ ପୁଅ, ଖଣ୍ଡାୟତ ପୁଅ, ଗୋପାଳ ପୁଅ, ସାଧବ ପୁଅ, କରିଗର ପୁଅ, କୃଷକ ପୁଅ, ତନ୍ତି ପୁଅ ପ୍ରଭୃତି

ରଚନାରେ ସେ ଅତୀତ ଓଡ଼ିଶାର ବିଭିନ୍ନ ସମ୍ପ୍ରଦାୟର ଗୌରବ ଉଲ୍ଲେଖ କରି ସେମାନଙ୍କୁ ଜାଗ୍ରତ ହେବା ପାଇଁ ପ୍ରେରଣା ଦେଇଛନ୍ତି । ସେ ଉପଲବ୍ଧି କରିଛନ୍ତି ଏକଦା ଧନଧାନଭରା କଳିଙ୍ଗ ଏବେ କାଙ୍ଗାଳିନୀ, କାରଣ ସ୍ୱରୂପ ସେ ଜାତୀୟ ଯୁବକର ନିଶ୍ଚେଷ୍ଟଣ, ବିଦେଶୀ ଶାସନର ପ୍ରାଦୁର୍ଭାବ, ଦେଶ ସେବୀମାନଙ୍କ ପାଇଁ ପୋଲିସ୍‌ର କଠୋର ଅତ୍ୟାଚାର ପ୍ରଭୃତିର ଉଲ୍ଲେଖ ସହିତ ଗାନ୍ଧିଜୀଙ୍କ ସ୍ୱଦେଶୀ ଦର୍ଶନ ଉପରେ ଆସ୍ଥା ସ୍ଥାପନ କରିଛନ୍ତି ।

"କି ବୋଲି ଭାବିବି ମାଆ କୋଟି କଙ୍କାଳ ମାଳିନୀ,
ଦଳିତା ଲାଞ୍ଛିତା ଭୀତା ଜଗତର ଜଂଜାଳିନୀ ।"

ଏହି କବିତାରେ ମଧୁସୂଦନ ଦାସଙ୍କର, 'ମାଆ ବୋଲି କେତେ ମୁଁ ଡାକିଲି'ର ପ୍ରଭାବ ସ୍ପଷ୍ଟ । ଉତ୍କଳ ଗୌରବ ଖୁବ୍ ଅଳ୍ପ କବିତା ଲେଖି ମଧ ତତ୍‌କାଳୀନ ଓଡ଼ିଶାରେ ବେଶ୍ ପ୍ରଭାବ ସୃଷ୍ଟି କରିପାରିଥିଲେ । ତେଣୁ 'ଉତ୍କଳ ଭାରତୀ' ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ୍ ।

**ପୂର୍ବଜ ମାନଙ୍କ ପ୍ରତି ସମ୍ମାନ :-**

କବି ନିଜର ଆଗ୍ରହରେ ପୂର୍ବଜ ମାନଙ୍କର ରଚନା ପାଠ କରିଥିଲେ ଓ ନିଜର ଶ୍ରଦ୍ଧା ନିବେଦନରେ କାର୍ପଣ୍ୟ କରି ନ ଥିଲେ । ପରମ୍ପରା ସୂତ୍ରରେ ପାଇଥିବା କାବ୍ୟ ରଚନାର ବିଭୂତିକୁ ସେ ନିଜ ସାମର୍ଥ୍ୟରେ ପରିପୁଷ୍ଟ କରିଛନ୍ତି । 'ଅର୍ଚ୍ଚନା'ର 'ବିଲ୍ୱଦଳ' ରାଧାନାଥ ରାୟଙ୍କୁ ସମର୍ପଣ କରି ସେ ଲେଖନ୍ତି :-

"ଉତ୍କଳର ରାଧାନାଥ କବି କୀର୍ତ୍ତିମାନ ସ୍ୱଦେଶେ ବିଦେଶେ ଚିର ପୂଜିତ ମହାନ, / କିପରି ଭରସି ତବ ସିଂହାସନ କତି ଆଣିବ ମୋ ଉପହାର ତୁଚ୍ଛ ବେଲପତ୍ର / ମାଣିକ୍ୟ ରତନ ଯହିଁ ଶୋଭଇ ଯତନେ, କ୍ଷୁଦ୍ର ବିଲ୍ୱଦଳ ତହିଁ ଦେବି ମୁଁ କେସନେ / ଏତିକି ଭରସା ମହାଦେବ ପୂଜା ଯହିଁ, କବି-କୂଳ ଦେବ ପୂଜା ଯୋଗ୍ୟ କି ନୁହଁଇ ।"

ସେହିପରି ସେ 'ଚମ୍ପାଦଳ'କୁ ଭକ୍ତକବି ମଧୁସୂଦନ ରାଓଙ୍କୁ ଅର୍ପଣ କରିଛନ୍ତି । ସେ ଭକ୍ତ କବିଙ୍କୁ ସ୍ୱଚକ୍ଷୁରେ ଦେଖି ନାହାନ୍ତି ମାତ୍ର ତାଙ୍କ ଆଦର୍ଶରେ ସେ ଅନୁପ୍ରାଣିତ । 'ବସନ୍ତଗାଥା'ରେ ମଧୁସୂଦନ ଯେଉଁପରି କାଳିଦାସ ଭବଭୂତିଙ୍କ ଠାରୁ ସମକାଳୀନ ଗୌରୀଶଙ୍କର ଫକୀରମୋହନ ପ୍ରଭୃତିଙ୍କ ଯଶର ବନ୍ଦନା କରିଛନ୍ତି ଅନୁରୂପ ବଡ଼ କୁନ୍ତଳା କୁମାରୀ କୁହନ୍ତି :-

"ଆବାଲ୍ୟ ଦର୍ଶନ ଆଶା ନ ପୁରିଲା ନାହିଁ / ଯାପିବି ଜଗତେ ଦିନ ଆଦର୍ଶ ଧିଆଇ /* * * / ଆଜି କବିତାରେ ତେଣୁ କଲି ସମ୍ବୋଧନ / କବି କୂଳେ ଗୁରୁ ମମ ହେ ମଧୁସୂଦନ ।"

କୁନ୍ତଳାଙ୍କର 'ବସନ୍ତେ' କବିତାରେ ସେ ନିରାଶାର କଥା ଉଚ୍ଚାରଣ କରିବେ ନାହିଁ ବୋଲି ସୂଚନା ଦେଇଛନ୍ତି - ଏହା ଭକ୍ତ କବିଙ୍କ କବିତା 'ଜରା ଆକ୍ରମଣ' (୨)ର-
"ନିରାକାର କଥା ଛି ଛି କହିବି କେମନ୍ତେ / ଅନ୍ତରରେ ଅନୁଭବ ଅନନ୍ତ ବସନ୍ତେ"ର ପ୍ରଭାବରେ ହିଁ ରଚିତ ।"
ସେହିପରି ମଧୁ ରାଓଙ୍କର-
"ଏ ପ୍ରାଣ ବୀଜର ଅଟ ହେ ସବିତା / ତୁମ ପ୍ରେମ ଲୋକେ ସିନା / ହେବ ଅଙ୍କୁରିତ ପୁଷ୍ପିତ ଫଳିତ / କାର ଗତି ତୁମ କଳା"ର ପ୍ରଭାବରେ କୁନ୍ତଳା ଲେଖନ୍ତି -
"ଆସ ହେ ଦେବତା ପ୍ରାଣର ସବିତା / ହୃଦୟ ମନ୍ଦିରେ ଆଜି ହେ / ଦେବି ଗୋ ଚରଣେ ପ୍ରେମ ଉପହାର / ଭକତି କୁସୁମ ସାଜି ହେ"

'ପୂଜାପଦ୍ଧତି'ରେ କୁନ୍ତଳା କୁମାରୀ ଧର୍ମୀୟ ଉଦାରତାର ଅପୂର୍ବ ନିଦର୍ଶନ ଦେଖାଇଛନ୍ତି । କୃଷ୍ଣ, ଖ୍ରୀଷ୍ଟ ସବୁ ତାଙ୍କ ପାଇଁ ଏକାକାର । ଜୀବନରେ ପ୍ରେମକୁ ପାଇବା ପାଇଁ ତାଙ୍କୁ ବାରମ୍ବାର ଧର୍ମ ପରିବର୍ତ୍ତନର ଜଟିଳ ପର୍ଯ୍ୟାୟ ଅତିକ୍ରମ କରିବାକୁ ପଡ଼ିଛି । ତଥାକଥିତ ପ୍ରେମିକଙ୍କ ଅନୁରୋଧରେ ନିରୁତା ପ୍ରେମ କବିତା ସବୁ ଈଶ୍ୱରଙ୍କ ଆଡ଼କୁ ମୁହାଁଇ ଦେଇ ବଞ୍ଚିବାର ସାଧନା କରିବାକୁ ପଡ଼ିଛି । 'ପୂଜାପଦ୍ଧତି'ରେ -
"ବିଚିତ୍ର କରୁଣ ଅନନ୍ତ ସୁନ୍ଦର ପୂର୍ଣ୍ଣ ହେ ସବୁ ଆଶା,
ନାହିଁ ଶକ୍ତି ମୋର ହୃଦ ଲେଖନୀରେ ବର୍ଣ୍ଣିବାକୁ ନାହିଁ ଭାଷା ।"

ଏହାକୁ ଆମେ ଗଙ୍ଗାଧରଙ୍କର ଚିରାପ୍ତତ କବିତା 'ବିଶ୍ୱଜୀବନ ହେ ତୁମକୁ କରୁଣା ସିନ୍ଧୁ'ର ଆତ୍ମା ବୋଲି ଭାବି ପାରିବା -
"ନାହିଁ ମୋର ବଳ ପାଦଧୂଳି ଘେନି / ପାରିବ ନାହିଁ ମୋ ମୁଣ୍ଡ / କୋଟି କୋଟି ରବି ଧୂଳି ରୂପେ ତୁମ / ପାଦେ ହୋଇଛନ୍ତି ଗୁଣ୍ଡ ।" (ଅର୍ଘ୍ୟଥାଳୀର ଭକ୍ତି କବିତା)

'ଅସମ୍ପୂର୍ଣ୍ଣ ମଣିଷ'ରେ ସେ ଗଙ୍ଗାଧରଙ୍କ କାବ୍ୟ ଦ୍ୱାରା ପ୍ରଭାବିତ ହୋଇଥିବା ସମ୍ଭବ । ପ୍ରଫେସର ନିତ୍ୟାନନ୍ଦ ଶତପଥିଙ୍କ ଭାଷାରେ "ଯେପରି ମନେହୁଏ ଗଙ୍ଗାଧର ଆଦର୍ଶର ଅନୁବର୍ତ୍ତୀ ହୋଇ ସେ କାବ୍ୟ ଜୀବନର ଆଦ୍ୟପାଦରେ ହିଁ 'ମଣିକାଞ୍ଚନ' ରଚନା କରିଥିଲେ । * * * ପ୍ରକୃତି ଚେତନାରେ କୁନ୍ତଳା କୁମାରୀ ଗଙ୍ଗାଧରଙ୍କ ଆଦର୍ଶକୁ ଅନୁସରଣ କରିଛନ୍ତି ।" (ସବୁଜରୁ ସାମ୍ପ୍ରତିକ-ପୃ-୭୭) । 'ମଣିକାଞ୍ଚନ' ସାବିତ୍ରୀ ସତ୍ୟାନନ୍ଦ ଉପାଖ୍ୟାନରୁ ନେଇ ରଚିତ । ରାଜା ଅଶ୍ୱପତି (ସାବିତ୍ରୀଙ୍କ ପିତା)ଙ୍କ ମନ୍ତବ୍ୟ ଭିତରେ ତପସ୍ୱିନୀର ଆଦର୍ଶ ରାଜା ରାମଚନ୍ଦ୍ରଙ୍କର ଉଦାର ଚିନ୍ତାର

ସାମଞ୍ଜସ୍ୟ ଦେଖିପାରିବା ।

ତେଣୁ ଏ କଥା ହିଁ ସତ୍ୟ ଯେ ଭାରତୀୟ ସଂସ୍କୃତିର ଚିରନ୍ତନ ମୂଲ୍ୟବୋଧ ପ୍ରତି ସେ ଥିଲେ ସମ୍ପୂର୍ଣ୍ଣ ସମର୍ପିତା । ଚିନ୍ତା ଓ ଚେତନାରେ ସେ ଆମର ପାରିବାରିକ ମୂଲ୍ୟବୋଧ ସହିତ ସାମାଜିକ ଆଦର୍ଶର ଅନୁଗାମିନୀ ଥିଲେ ଓ ତାଙ୍କର କୃତି ମଧ୍ୟରେ ଆମେ ପ୍ରେମରୁ ଉତ୍ତରିତ ସମର୍ପଣ ଭାବନା, ବ୍ୟକ୍ତିତ୍ୱ ଦୁଃଖରୁ ଉତ୍ତରିତ ତ୍ୟାଗ ଓ ତିତିକ୍ଷା ସହିତ ସମାଜର ଆସାମଞ୍ଜସ୍ୟ ପ୍ରତି ପ୍ରତିବାଦ ଦେଖୁ । ତା ସହିତ ଦେଶ ପ୍ରୀତିର ଉଦାର ସ୍ୱର ତାଙ୍କ କାବ୍ୟ କବିତାକୁ ସ୍ୱତନ୍ତ୍ର ମର୍ଯ୍ୟଦା ପ୍ରଦାନ କରିପାରିଛି । ପଣ୍ଡିତ ନୀଳକଣ୍ଠ 'ପୂଜାପଦ୍ଧତି' ପାଠ କରି କୁନ୍ତଳା କୁମାରୀଙ୍କ ପ୍ରତିଭାକୁ ପ୍ରଶଂସା କରିଥିଲେ । ସେ ଚିଠି ଲେଖିଥିଲେ "କବିତାଟିର ମୁଗ୍ଧ ସୁନ୍ଦର ମୂର୍ତ୍ତି ଏବେ ମଧ ମନରୁ ଯାଉନାହିଁ । ବିଶେଷ କଥା ମୋର ମନେ ହୁଏ ଓଡ଼ିଆ ସାହିତ୍ୟରେ ଏପରି ସାର୍ବଜନୀନ ପ୍ରାଣସ୍ପର୍ଶୀ 'ପୂଜାପଦ୍ଧତି' କେହି କେବେ ଲେଖି ନାହାନ୍ତି । * * * ଆପଣଙ୍କ ଲେଖନୀର ଧାରା ଏବେ କାହିଁକି ଏତେ ମନ୍ଥର ଭାବେ ଗତି କରୁଛି ବୁଝିପାରୁନାହିଁ । ନନ୍ଦକିଶୋର ବଳ କବି କୁନ୍ତଳା କୁମାରୀଙ୍କ ଗୌରବଗାନ ଏହିଭଳି କରିଛନ୍ତି :-

"ସ୍ୱଦେଶର ପୂର୍ବ ଗଉରବେ ଗରବିତା /ନିସର୍ଗ ଲାବଣ୍ୟ ମୁଗ୍ଧା ଅୟି ପ୍ରେମମୟୀ / କି ଅପୂର୍ବ ପ୍ରତିଭାରେ ହୋଇ ସଂଦିପିତା / ଏ ଦୀନ ଉତ୍କଳେ ଅବତୀର୍ଣ୍ଣା ଶକ୍ତିମୟୀ ।"

କବି ନୀଳକଣ୍ଠ କୁନ୍ତଳା କୁମାରୀଙ୍କ କବିତାର ଗତି କାହିଁକି ମନ୍ଥର ହେଇଛି ବୋଲି ଜିଜ୍ଞାସା କରୁଥିବା ସମୟରେ ଅଳ୍ପ କାଳ ମଧ୍ୟରେ ଅଧିକ କବିତା ଲେଖି ଖ୍ୟାତିର ଶିଖରରେ ପହଞ୍ଚିଥିବା କୁନ୍ତଳାଙ୍କ ପ୍ରତି ଅନେକ ଇର୍ଷାଳୁ ଆକ୍ଷେପ ମଧ କରିଥିଲେ । ପୂର୍ଣ୍ଣାଙ୍ଗ କାବ୍ୟଟିଏ ସେ ଲେଖିବା ସମ୍ଭବ ନୁହେଁ ବୋଲି ତାଙ୍କ ପ୍ରତି ହେଇଥିବା ଆକ୍ଷେପର ଉତ୍ତର ଦେବାକୁ ସେ ୧୯୨୫ ରେ 'ମଣିକାଞ୍ଚନ' ଶୀର୍ଷକ କାବ୍ୟ ରଚନା ଆରମ୍ଭ କରିଥିଲେ । ଏହା ଉତ୍କଳ ସାହିତ୍ୟର ଧାରାଭିତ୍ତିକ ଭାବରେ ପ୍ରକାଶିତ ହେଉଥିଲା । ମାତ୍ର କବିଙ୍କର ଅକାଳ ବିୟୋଗ ଫଳରେ ତାହା ଅସମ୍ପୂର୍ଣ୍ଣ ରହିଗଲା ।

'ଗଡ଼ଜାତ କୃଷକ' ତାଙ୍କର ଦେହାନ୍ତ ପରେ ୧୯୩୯ରେ ପ୍ରକାଶିତ । ଏଥିରେ ଓଡ଼ିଶାର କୃଷକମାନଙ୍କ ପ୍ରତ୍ୟେକ ସହାନୁଭୂତିର ସ୍ୱର ହିଁ ସ୍ପଷ୍ଟ । ଏହି ସଂକଳନର 'ଗୋକୁଳି ନାୟକ' କବିତାଟି ସ୍ମରଣୀୟ । ଗୋକୁଳି ନାୟକ ନାମହୀନ ଉତ୍କଳୀୟ କୃଷକର ପ୍ରତିନିଧି, ଯିଏ ପାଟିବୁଜି ସବୁ ଦୁଃଖ ଦୁର୍ଦ୍ଦଶାକୁ ସହିଯାଏ ଓ

ତାହା ଦୈବୀଦଣ୍ଡ ଭାବି ବଞ୍ଚିରହେ । ଏହି ଗୋକୁଳି ନାୟକ ପାଇଁ କୁନ୍ତଳା କୁମାରୀ ତୁଣ୍ଡ ଖୋଲିଛନ୍ତି ଓ ତାର ନିର୍ବାକ ଯନ୍ତ୍ରଣାକୁ ନିଜେ ଅନୁଭବ କରିବା ସହିତ ବୃହତ୍ତର ପାଠକ ସମାଜ ନିକଟରେ ପହଞ୍ଚାଇ ପାରିଛନ୍ତି । ଯେଉଁଥିପାଇଁ କୁହାଯାଏ କବି ସମଗ୍ର ସମାଜର ଅସ୍ୱୀକୃତ ବିଧାୟକ ।

'ପ୍ରେମ ଚିନ୍ତାମଣି'କୁ ଆଲୋଚନାର ଏକ ସ୍ୱତନ୍ତ୍ର ପର୍ଯ୍ୟାୟର ଅନ୍ତର୍ଭୁକ୍ତ କରାଯାଇଛି । କାରଣ (୧) ଏଗୁଡ଼ିକ ଶ୍ରୀରାଧା ଓ ଶ୍ରୀ କୃଷ୍ଣଙ୍କର ଅପ୍ରାକୃତ ପ୍ରେମର ବ୍ୟାପାର ନୁହେଁ । (୨) ଏହି ପୁସ୍ତକର ମୁଖବନ୍ଧ ଲେଖିଛନ୍ତି ବିଶିଷ୍ଟ ବୈଷ୍ଣବ ଧର୍ମୀ ଶାସ୍ତ୍ରବିତ୍ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ଓ ସେ ତହିଁରେ ନିଜର ଚିନ୍ତାଧାରାକୁ ପ୍ରତିଫଳିତ କରାଇଛନ୍ତି । (୩) ଏହା କବିଙ୍କ ରୁଚି ବିରୁଦ୍ଧ ବୋଲି ପରବର୍ତ୍ତୀ କାଳରେ ଲୋକରତ୍ନ କୁଞ୍ଜ ବିହାରୀ ଦାଶ କହିଛନ୍ତି । ଏହାଦ୍ୱାରା କବିଙ୍କୁ ଅଯଥାରେ ମଧ୍ୟଯୁଗକୁ ଟାଣି ନିଆଯାଇଛି ଓ କବିତାର ମହତ୍ତ୍ୱ ନ ବଢ଼ି ଯୁଗୋପଯୋଗିତା ହ୍ରାସ ପାଇଛି । ଏହାର ଆରମ୍ଭ ହୋଇଛି "ଶ୍ରୀକୃଷ୍ଣାର୍ପଣମସ୍ତୁ"ରୁ ।

ପ୍ରାରମ୍ଭିକ ପଦଟି ହେଉଛି:-

"ପଥମଧରେ କୃଷ୍ଣ ଦେଖା ଆଉ ନ ଯିବି ବୃନ୍ଦାବନ, / (ଏବେ) ମନମୋହନ ଶ୍ୟାମଘନ ରାଜେ ହୃଦ ପଦ୍ମାସନେ ।" (ଗ୍ରନ୍ଥାବଳୀ-ପୃ-୨୩୪)

ଏହା କ'ଣ ସତରେ ଖ୍ରୀଷ୍ଟିୟାନ୍‌ରୁ ବ୍ରାହ୍ମ ପାଲଟିଥିବା ମଣିଷର ହୃଦୟର କଥା । ସେହିଭଳି ଅନେକ ପଦ ଅଛି ଯହିଁରୁ ଲୀଳାବତାର କୃଷ୍ଣଙ୍କଠାରୁ ରକ୍ତମାଂସର କୃଷ୍ଣପ୍ରସାଦଙ୍କ ଉପସ୍ଥିତି ଅନୁଭବ କରିହୁଏ-

"ଆତ୍ମା ଚିହ୍ନିଲା ଆତ୍ମାର ସାଥି, ନ ଫୁଟିଲା ମୁଖେ କଥା, / ସରିତ ଚିହ୍ନିଲା ସାଗର ତରଂଗ, ପାଦପ ନହିଲା ଲତା ।" (ଗ୍ରନ୍ଥାବଳୀ-ପୃ-୨୫୦)

ପୁନର୍ବାର "ତୁ କିଏ ସେ ମୁଁ କିଏ ସେ ଜାଣି ନାହୁଁ ସତ, ବନ୍ଧୁ / ତଥାପି ହେ ପରସ୍ପର ଯୁକ୍ତଯଥା ନଦୀ ସିନ୍ଧୁ" (ଗ୍ରନ୍ଥାବଳୀ-ପୃ-୨୫୫)

ସାଧାରଣ ଚତୁର ବ୍ୟକ୍ତିକୁ ଯେତେ ଐଶ୍ୱରୀୟ ମର୍ଯ୍ୟାଦା ଓ ବିଶ୍ୱାସ ଅର୍ପଣ କଲେ ମଧ ତାର ଅନ୍ତଃକରଣ ଅପରିବର୍ତ୍ତିତ ରହେ । କୃଷ୍ଣପ୍ରସାଦ ସେହିଭଳି କୁନ୍ତଳାଙ୍କ ଉପାର୍ଜନ କ୍ଷମତାକୁ ହିଁ ଦୃଷ୍ଟି ରଖିଥିଲେ । ବାରମ୍ବାର ତାଙ୍କୁ ଦେଇ ହେଉଥିଲା ଓ ପ୍ରଚୁର ଅର୍ଥ ଜୋରିମାନା ଦେଇ କୁନ୍ତଳା ତାଙ୍କୁ ସମାଜର ମୁଖ୍ୟ ସ୍ରୋତ ସହିତ ଧରି ରଖିବାର ପ୍ରୟାସ କରିଥିଲେ । ତେବେ ଶେଷ ପର୍ଯ୍ୟନ୍ତ ସେ ଯାହା ଖୋଜୁଥିଲେ ସେହି ପ୍ରେମର କଣିକାଏ ସୁଦ୍ଧା ସେ ପାଇ ପାରି ନଥିଲେ । ତେଣୁ ରୋମାଣ୍ଟିକ୍

ବିଷାଦର ସ୍ୱର ତାଙ୍କର କବିତାରେ ଉଜ୍ଜ୍ୱଳ । ପ୍ରେମମୟ ହୃଦୟ ଅର୍ପଣ କରିବେ ବୋଲି ଯାହାକୁ ସେ ସମଗ୍ର ଜୀବନ ଅପେକ୍ଷା କରିଥିଲେ ସେ ହିଁ ତାଙ୍କ ବଞ୍ଚିବାର ସ୍ୱାଭାବିକତା ଛଡ଼େଇ ନେଇଛନ୍ତି । ଏହି ଯନ୍ତ୍ରଣାକୁ ସହି କୁନ୍ତଳା କୁମାରୀ ସମଗ୍ର ସମାଜରେ ଅର୍ନ୍ତବେଦନାରେ ରୂପାନ୍ତରିତ କରିବାକୁ କ୍ଷମ ହୋଇପାରିଛନ୍ତି । ଶ୍ରୀମଦ୍ ଭାଗବତ ଗୀତାରେ କର୍ମଯୋଗର ଯେଉଁ ମହତ୍ତ୍ୱ ପ୍ରତିଫଳିତ କୁନ୍ତଳାଙ୍କ କାବ୍ୟ ସାଧନାରେ ସେହି ମହତ୍ତ୍ୱ ପରିଲକ୍ଷିତ ହୁଏ । ସେହିପରି ଉପନିଷଦରେ ଆତ୍ମାର ସ୍ୱାତନ୍ତ୍ର୍ୟ - 'ଶେଫାଳି ପ୍ରତି'ରେ-

"ତୋର ପରି କ୍ଷୁଦ୍ର ମୁହିଁ ତୋର ପରି କ୍ଷଣିକ / ହସେ ବସେ ରସେ ମାତ୍ର ଫୁଟିଅଛୁ ଘଡ଼ିକ / ମାଟିରେ ମିଶିଛୁ ତୁହି ମାଟିରେ ମିଶିବି ମୁହିଁ / ତଥାପି ମୋ ଆତ୍ମା ଫୁଲ ନ ଯିବରେ ମଉଳି / ତେଣୁ ଆଶା ରଖି ଦିନ କାଟେ ଗଙ୍ଗଶିଉଳି ।" (ଅନୁଭବ କରିହୁଏ)

ପାରିବାରିକ ଜୀବନରେ ଅନେକ ଦୁର୍ଘଟଣା ଓ ଅଶ୍ୱସ୍ତିକୁ ପ୍ରତି ମୁହୂର୍ତ୍ତରେ ସାମନା କରୁଥିବା ଏହି ମହୀୟସୀଙ୍କ ସମାଜ ଆଦର ସମାନରେ ଊଣା କରିନଥିଲା । ୧୯୨୧ରେ ସେ ବୃନ୍ଦାବନ ଗୁରୁକୁଳର ବିଶ୍ୱବିଦ୍ୟାଳୟର ଉପାଧି ବିତରଣ ଉତ୍ସବରେ ଯୋଗ ଦେଇଥିଲେ । ୧୯୩୦ ରେ ବୃନ୍ଦାବନ ଗୁରୁକୁଳର ବାର୍ଷିକ ଉତ୍ସବରେ ସେ ସଭାନେତ୍ରୀ ହୋଇଥିଲେ । ୧୯୩୨ରେ ବରେଲିରେ ହୋଇଥିବା ଆର୍ଯ୍ୟ ମହାସମ୍ମିଳନର ମହିଳା ଶାଖାର ସେ ସଭାନେତ୍ରୀ ଥିଲେ । ଦିଲ୍ଲୀରୁ ସେ ପୁରୀ ଆସି ଜଗନ୍ନାଥ ଦର୍ଶନ କରିଥିଲେ । ମାତ୍ର ତାଙ୍କର ଆସିବାର ମୁଖ୍ୟ ଉଦେଶ୍ୟ ଥିଲା ପୁରୀ ଜେଲ୍‌ରେ ଥିବା ତାଙ୍କ ସ୍ୱାମୀଙ୍କୁ ସାକ୍ଷାତ୍ କରିବା । ନିକଟରେ ସେ ସମୟରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା ।

ହିନ୍ଦୀରେ ସେ 'ବରମାଳା' ଶୀର୍ଷକ କବିତା ସଂକଳନ ଲେଖିଥିଲେ । ନାରୀ ଜାଗରଣ, ସତୀତ୍ୱ ଝରଣା ଓ ସୁଦିନ ଭଳି ପୁସ୍ତକ ମଧ ଲେଖିଥିଲେ । କଲିକତାରୁ ବାହାରୁଥିବା 'ପ୍ରବାସୀ ଓଡ଼ିଆ' ପତ୍ରିକାର ମଧ ସେ କିଛି ଦିନ ସମ୍ପାଦନା କରିଥିଲେ । ୧୯୨୫ରେ ପୁରୀର ମହିଳାବନ୍ଧୁ ସମିତି କୁନ୍ତଳାଙ୍କୁ 'ଉତ୍କଳ ଭାରତୀ' ଉପାଧି ପ୍ରଦାନ କରିଥିଲେ । ଏହି ଉତ୍କଳ ଭାରତୀ ନାମରେ ସେ ହିଁ ଓଡ଼ିଶାରେ ପରିଚିତା । ୧୯୪୧ରେ ରାଜ୍ୟସ୍ତରୀୟ ଉତ୍କଳ ମହିଳା ସମିତିର ସେ ସଭାନେତ୍ରୀ ଭାବେ ମନୋନୀତା ହୋଇଥିଲେ । ୧୯୩୫ରେ ଆଲିଗଡ଼ଠାରେ ଗଠିତ ହୋଇଥିବା

ଷ୍ଟୁଡେ଼ଣ୍ଟସ୍ ଫେଡେ଼ରେସନ୍‌ର ସେ ଥିଲେ ସଭାନେତ୍ରୀ । ଆଲାହାବାଦରେ ପାଳିତ ହୋଇଥିବା ଝାନ୍‌ସୀରାଣୀ ଲକ୍ଷ୍ମୀବାଇ ଜୟନ୍ତୀ ଉତ୍ସବ କମିଟିର ସେ ଥିଲେ ସଭାପତି । ଶାରଦା ଆଇନ୍ ପ୍ରଣୟନ ପରେ ହିନ୍ଦୁ ବିଗ୍ରହ ସମ୍ପର୍କରେ ପରିବର୍ତ୍ତନ ଆସିବା ଦରକାର ଥିଲା । ଏଥିପାଇଁ ଗଢ଼ା ଯାଇଥିବା କମିଟିର ମଧ୍ୟ ସେ ଅଧ୍ୟକ୍ଷା ଆସନ ଅଧିକୃତ କରିଥିଲେ । ବାଲ୍ୟ ବିବାହ ବିରୋଧ ଓ ବିଧବା ବିବାହ ପ୍ରଚଳନ ଭଳି ଜ୍ୱଳନ୍ତ ସମସ୍ୟା ଉପରେ ନିର୍ଭୀକ ମତ ଦେଇ ସେ ଚର୍ଚ୍ଚାରେ ରହିଥିଲେ । ତାଙ୍କର ତେଜସ୍ୱିନୀ ଭାଷଣ ଓ ଦୃଢ଼ ବ୍ୟକ୍ତିତ୍ୱ ତାଙ୍କୁ ସମଗ୍ର ଭାରତରେ ଆଦରଣୀୟା କରି ପାରିଥିଲା । ସମାଜ ସଂସ୍କାରିକା ଭାବରେ ତାଙ୍କର ସ୍ୱତନ୍ତ୍ର ପରିଚିତି ରହିଥିଲା । ଏଲାହାବାଦସ୍ଥ ବନାରସ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ସେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ଏପରିକି ପୁରୀର 'ମୁକ୍ତିମଣ୍ଡପ' ପଣ୍ଡିତ ସଭା ତାଙ୍କର କାବ୍ୟ ପ୍ରତିଭାକୁ ପ୍ରଶଂସା କରିଥିଲେ ।

ଏତେ ସବୁ ସମ୍ମାନ ସତ୍ତ୍ୱେ ସେ ଥିଲେ ସଦା ଚିନ୍ତିତା । ବ୍ୟକ୍ତିଗତ ଜୀବନର ସୁଖ ଶାନ୍ତି ପାଇଁ ସେ ବହୁ ସଭା ସମିତିକୁ ଯାଉ ନଥିଲେ । ତେବେ ଦୀର୍ଘଦିନ ବଞ୍ଚିଥିଲେ ହୁଏତ ସେ ଓଡ଼ିଆ ସାହିତ୍ୟକୁ ଆହୁରି ସମୃଦ୍ଧ କରିଥାଆନ୍ତେ ବୋଲି ଆମେ ଭାବି ପାରିବା । 'ଭାରତୀ ତପୋବନ ସଂଘ' ଗଢ଼ି ଓଡ଼ିଶାର କଳା ଓ ସାହିତ୍ୟର ଉନ୍ନତି କରିବାର କଳ୍ପନାକୁ ରୂପ ଦେବା ପୂର୍ବରୁ ସେ ବାହୁଡ଼ିଗଲେ ।

ଅଜି କୁନ୍ତଳା କୁମାରୀଙ୍କ କବିତା ସମୂହ ଆମ ପାଇଁ ପ୍ରେରଣାର ଉତ୍ସ ପାଲଟିଛି । ତାଙ୍କର ଦେହାନ୍ତରେ କବି ସଚ୍ଚି ରାଉତରାୟ ଲେଖିଥିବା ପଦଟିଏ ଉଲ୍ଲେଖ କରି ଏ ପ୍ରବନ୍ଧ ଶେଷ କରିବି :-

"ନୁହେଁ ସେତ ଖାଲି ନାରୀ, ଖାଲି ମାତା ଅବା ଖାଲି କବି, / ଜାତୀୟ ସମରେ ସେ ତ ସରନ୍ତିକ ତୋଳିଛୁ ଭୈରବୀ / ଆଗେ ସେ ଧରିଛୁ ଅସି, ପଛେ ସିନା ଧରିଛୁ ଲେଖନୀ / ତେଣୁ ତା'ର ପ୍ରତି ଗାନେ ଥରି ଉଠେ ଦେଶର ଧମନୀ ।"

ଏହା କେବଳ କବି ସଚ୍ଚି ରାଉତରାୟଙ୍କ ମାନସିକତା ନୁହେଁ କୁନ୍ତଳା କବିତା ଅନୁରାଗୀ ପ୍ରତ୍ୟେକ ପାଠକର ମାନସିକତା ।

# ମନୋରଥରେ ମହୀପତି - ସାରସ୍ୱତ ସ୍ରଷ୍ଟା ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ଅମ୍ବରୀଶ ମଙ୍ଗରାଜ

କୁଳବୃଦ୍ଧ, ଦେଶପ୍ରାଣ, ଓଡ଼ିଶା ତଥା ଜାତୀୟ ଗୌରବ ମଧୁସୂଦନ ଦାସ ଏକଦା ଜଣେ ଉଦୀୟମାନ ଯୁବକଙ୍କୁ କହିଥିଲେ ତୁମେ ହିଁ ମୋର ଯୋଗ୍ୟ ଉତ୍ତରାଧିକାରୀ ହୋଇପାରିବ । ସେ ଯୁବକ ଆଉ କେହି ନୁହନ୍ତି ସେ ଥିଲେ ପ୍ରଜ୍ଞାପ୍ରାଣ 'ପ୍ରାଚୀ' ସମ ପବିତ୍ର ବିଚ୍ଛନ୍ଦ ଚରଣ ପଟ୍ଟନାୟକ ।

କଟକର ଗଣେଶଘାଟ ରାସ୍ତାରେ ଏକ ଦୁଇମହଲା କୋଠାରେ ଚାଲୁଥିଲା ପ୍ରାଚୀ ସମିତିର ମୁଖ୍ୟ କାର୍ଯ୍ୟାଳୟ । ସେଠାରେ ରହୁଥାନ୍ତି ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ପାଖରେ ଦେଖାଶୁଣା ପାଇଁ ମାୟାଧର ନାୟକ ନାମକ ଜଣେ ସେବକ । ଏକଦା ମାୟାଧର ଖବର ଦେଲେ କେହି ଜଣେ ଭଦ୍ରଲୋକ ଆପଣଙ୍କୁ ଦେଖା କରିବାକୁ ଆସିଛନ୍ତି । ଚେହେରାରୁ ଅତି ସମ୍ଭ୍ରାନ୍ତ ଓ ପ୍ରତିଭା ସମ୍ପନ୍ନ ମନେ ହେଉଛନ୍ତି । ବିଚ୍ଛନ୍ଦ ଚରଣ ଆସି ଦେଖନ୍ତି ତ ସେ ଭଦ୍ରଲୋକ ଆଉ କେହି ନୁହନ୍ତି, ସେ ହେଉଛନ୍ତି ସ୍ୱୟଂ ଜାତିପ୍ରାଣ ମଧୁସୂଦନ ଦାସ C.I.E. ଆନନ୍ଦ ତଥା ବିସ୍ମୟର ମିଶ୍ରିତ ଭାବରେ ଚାହିଁଥିବା ବିଚ୍ଛନ୍ଦଙ୍କ ଉଦ୍ଦେଶ୍ୟରେ ମଧୁସୂଦନ କହିବାକୁ ଆରମ୍ଭ କଲେ - "ଜାଣିଛ ବିଚ୍ଛନ୍ଦ, ମଧୁସୂଦନ ଦାସ କାହା ପାଖକୁ ଯାଏନାହିଁ - ସମସ୍ତେ ତା ପାଖକୁ ଆସନ୍ତି । ମୁଁ ଆଜି ଆସିଛି ତୁମଭଳି ଉଜ୍ଜ୍ୱଳ ପ୍ରତିଭାକୁ ସାଧୁବାଦ ଜଣାଇବା ପାଇଁ । ଭାବିଥିଲି ପତ୍ରଲେଖି ଜଣାଇବି, କିନ୍ତୁ ତାହା ତୁମ ପାଇଁ ଶୋଭନୀୟ ହେବ ନାହିଁ, ବିଚାର କରି ତୁମ ପାଖକୁ ଆସିଲି । 'ପ୍ରାଚୀ' ପତ୍ରିକାରେ ତୁମର ଇଂରାଜୀରେ ପାଣ୍ଡିତ୍ୟ ଦେଖି ମୁଁ ଆଶ୍ଚର୍ଯ୍ୟଚକିତ ନିଶ୍ଚୟ । ତୁମେ ହିଁ ମୋର ଯୋଗ୍ୟ ଉତ୍ତରାଧିକାରୀ ହୋଇପାରିବ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଘଡ଼ିସନ୍ଧି ସମୟର କଥା । ଦେଶମାତୃକାର ସେବାପାଇଁ ଶହଶହ ଯୁବକ ବିପ୍ଳବର ବହ୍ନିରେ ଲେଲିହାନ । ସେ ସମୟରେ ଜନ୍ମ ନିଅନ୍ତି ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ଯେଉଁ ସମୟରେ ଓଡ଼ିଆ କବିତା ଛନ୍ଦହୀନ, କବିତା ଜନନୀର ଶରୀର ଅଳଙ୍କାର ଶୂନ୍ୟ ସେ ସମୟରେ ବିଚ୍ଛନ୍ଦ ଚରଣଙ୍କର ବାଲ୍ୟବସ୍ଥା କଟେ । ଭୁବନେଶ୍ୱର - ଖୋର୍ଦ୍ଧା ଜାତୀୟ ରାଜପଥ ନଂ-୧୬ (ସେ ସମୟରେ ନଂ-୫) ପାର୍ଶ୍ୱରେ ମୁଣ୍ଡମୁହାଣ - ଯାଁଳାର ସାରସ୍ୱତ ତୀର୍ଥ

ଯାଁଳା ଗ୍ରାମର ଏକ ସଂସ୍କୃତି ସମ୍ପନ୍ନ ପରିବାରରେ ତାଙ୍କର ଜନ୍ମ । ପିତା ଗୋଲକ କୃଷ୍ଣ ଓ ମାତା ରାଧାଦେବୀଙ୍କ ଔରସରୁ ଜନ୍ମ ନିଅନ୍ତି ବିଚ୍ଛନ୍ଦ ଚରଣ ୧୯୦୧ ମସିହା ଜାନୁଆରୀ ୨୦ ତାରିଖରେ । ଜେଜେ ସତ୍ୟବାଦୀ ପଟ୍ଟନାୟକ ଜଣେ ସାହିତ୍ୟ ରସିକ ଭାବେ ଜଣାଶୁଣା ବ୍ୟକ୍ତିତ୍ୱ । ବଡ଼ଭାଇ ପଦ୍ମଚରଣ ପଟ୍ଟନାୟକ ଓ ସାନଭାଇ କାଳୀଚରଣ ପଟ୍ଟନାୟକଙ୍କ ସହ ବିଚ୍ଛନ୍ଦଙ୍କର ଲାଳନ ପାଳନ ଉତ୍କଟ ଦାରିଦ୍ର୍ୟର କଷାଘାତର ସନ୍ଧିରେ ।

ଯାଁଳା ମୁଣ୍ଡମୁହାଣ ଭର୍ଣ୍ଣାକୁଲାର ସ୍କୁଲରେ ବିଦ୍ୟାରମ୍ଭ ପରେ ମେଧାବୀ ଛାତ୍ର ହିସାବରେ ଭର୍ଣ୍ଣାକୁଲାର ବୃତ୍ତି ମଧ ପାଇଥିଲେ । ବଡ଼ଭାଇ ପଦ୍ମଚରଣ ପଟ୍ଟନାୟକ ଯେ ହେତୁ ଖୋରଧା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ସହକାରୀ ପ୍ରଧାନ ଶିକ୍ଷକ ଥିଲେ ସ୍ୱାଭାବିକ ଭାବେ ବିଚ୍ଛନ୍ଦ ଚରଣ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପାଠ ପଢ଼ିଲେ । ପରବର୍ତ୍ତୀ ସମୟରେ ଆଦର୍ଶ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷା ଗ୍ରହଣ କରିଥିଲେ । ପଣ୍ଡିତ ଗୋପବନ୍ଧୁ, ଗୋଦାବରୀଶ, ପଣ୍ଡିତ ନୀଳକଣ୍ଠ ଆଦିଙ୍କ ସମ୍ପର୍କରେ ଆସି ବିଚ୍ଛନ୍ଦ ଚରଣ ଛାତ୍ରାବସ୍ଥାରୁ ହିଁ ସ୍ୱାଧୀନ ଚେତା ଥିଲେ । ଅନ୍ୟମାନଙ୍କ ଭଳି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବାର ତୀବ୍ର ଇଚ୍ଛା ଓ ଉତ୍ସାହ ସତ୍ତ୍ୱେ ନିଜର ଶାରୀରିକ ଅକ୍ଷମତା ହେତୁ ସେ ସେଥିପ୍ରତି ଅଧିକ ମନ ବଳାଇନଥିଲେ । ଅବଶ୍ୟ ସ୍ୱରାଜ୍ୟ ଆନ୍ଦୋଳନରେ ସମର୍ଥନପୂର୍ବକ କଲେଜ ବର୍ଜନ କରି ଘରକୁ ଫେରିଆସିଥିଲେ । ୧୯୨୧ ମସିହାରୁ ୧୯୨୩ ମସିହା ମଧରେ ବିଭିନ୍ନ ଭାଷା ସାହିତ୍ୟରେ ଗବେଷଣା କରି ଅଗାଧ ପାଣ୍ଡିତ୍ୟ ଲାଭ କରିପାରିଥିଲେ ।

ରେଭେନ୍ସା କଲେଜର ଅଧକ୍ଷ ଲାମ୍ବାର୍ଡ଼ ସାହେବ ଓ ସେତେବେଳେ ପୂର୍ବ ଛାତ୍ରାବାସର ସୁପରିଟେଣ୍ଡେଣ୍ଟ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅକୁଣ୍ଠ ସହଯୋଗରେ ବିଚ୍ଛନ୍ଦ ଚରଣ ନିଜର ଉଚ୍ଚ ଶିକ୍ଷା ସମାପ୍ତ କରିବାରେ ସଫଳ ହେଲେ । ସେ ସମୟରେ ଓଡ଼ିଆ ସାହିତ୍ୟର ଅସ୍ମିତାର ଅସ୍ତିତ୍ୱ ମଳିନ ଯେମିତି, ଇଂରାଜୀର ଶିକ୍ଷିତ ସମାଜର କେଉଁ ଅଖ୍ୟାତ ଗଳିରେ ଯେମିତି ଓଡ଼ିଆ ଭାଷା ତାର ପରିଚୟ ଓ ଠିକଣା ଖୋଜୁଥାଏ । ଓଡ଼ିଆ ସାହିତ୍ୟର ମର୍ଯ୍ୟାଦାର ପୁନଃ ପ୍ରତିଷ୍ଠା, ପୁନଃଉଦ୍ଧାର ଓ ତାର ଟିକାଟିପ୍ପଣୀ ସମନ୍ୱିତ ଶୁଦ୍ଧ ସଂସ୍କରଣ, ଛାନ୍ଦ, ଚମ୍ପୁ, ସମାହିତ, ଉତ୍କଳୀୟ କଳା, ସଂସ୍କୃତି, ସ୍ଥାପତ୍ୟ ଓ ସାହିତ୍ୟ ସମ୍ପର୍କରେ ଗବେଷଣାତ୍ମକ ନିବନ୍ଧ କିପରି ପ୍ରକାଶିତ ହୋଇ ବିଶ୍ୱବ୍ୟାପୀ ପ୍ରସାରିତ ହେବ, ତାର ଏକମାତ୍ର ସମାଧାନ ବିଚ୍ଛନ୍ଦଚରଣ ବୋଲି ଅଧାପକ ଆର୍ତ୍ତବଲ୍ଲଭ ସ୍ଥିର କରିସାରିଥିଲେ ।

ଯେତେବେଳେ ଓଡ଼ିଶାର କବି, ଲେଖକ ଓ ଭାବୁକମାନେ ସ୍ୱାଭିମାନକୁ ମୃତ୍ୟୁଶଯ୍ୟାରେ ଛାଡ଼ିଦେଇ "ଆମର କିଛି ନାହିଁ କିନ୍ତୁ ଅନ୍ୟମାନଙ୍କର ସବୁଅଛି" ଭାବି ପାଶ୍ଚାତ୍ୟ ସାହିତ୍ୟ ଓ ସଂସ୍କୃତିକୁ ଅନ୍ଧାନୁକରଣ କରି ଆମର ପୂର୍ବ ସଂସ୍କୃତି, ପରମ୍ପରା ଓ ସାହିତ୍ୟକୁ ହେୟଜ୍ଞାନ କରିଛନ୍ତି । ଠିକ୍ ସେତିକିବେଳେ ଓଡ଼ିଶାର କଳା ଓ ସଙ୍ଗୀତମୟ ପରମ୍ପରା ଓ ସାହିତ୍ୟର ପୁନଃ ପ୍ରତିଷ୍ଠା ପାଇଁ ସେ ସୃଷ୍ଟି କରିଥିଲେ "କଳିଙ୍ଗ ଭାରତୀ" "ଉତ୍କଳ ଛାତ୍ର-ସାହିତ୍ୟ ସମାଜ" । ରକ୍ଷିମନ୍ତ ଓଡ଼ିଆ ପାରମ୍ପରିକ ସାହିତ୍ୟର ବିଚ୍ଛନ୍ଦ ଚରଣ ଥିଲେ ଜଣେ କଠୋର ଉପାସକ । ସାରଳା ଦାସ, ଜଗନ୍ନାଥ ଦାସଙ୍କଠାରୁ ଆରମ୍ଭ କରି ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ, ଦୀନକୃଷ୍ଣ, ଅଭିମନ୍ୟୁ ଆଦିଙ୍କର ରଚନା ସବୁର ଗର୍ବ, ଗୌରବ ଓ ଗାରିମାକୁ ଜନମାନସରେ ଉନ୍ମୋଚିତ କରିବା ସହ ନୂତନ ସାହିତ୍ୟ ପାଇଁ ଯୁବପୀଢ଼ିଙ୍କୁ ଆହ୍ୱାନ ଜଣାଇଥିଲେ ପ୍ରଜ୍ଞାପ୍ରାଣ ବିଚ୍ଛନ୍ଦ ଚରଣ ।

ସେ ଥିଲେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଉପାସକ । ଭଞ୍ଜଙ୍କ ଦିଗହରା ଅଥଳ ସାହିତ୍ୟ ସମୁଦ୍ରରେ ସେ ପହଁରିବାକୁ ଲାଗିଲେ । ତାଙ୍କ ମତ ଥିଲା 'ଭଞ୍ଜ ସାହିତ୍ୟ' ଯେ କୌଣସି ସାହିତ୍ୟ ସହ ସମକକ୍ଷ ନୁହେଁ, ବରଂ ଶ୍ରେଷ୍ଠ । ଭଞ୍ଜଙ୍କର କାଳଜୟୀ କବିତା ସବୁ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, "ପ୍ରେମ ସୁଧାନିଧି" ଆଦିକୁ ଓ ତାହାର ଅନେକ ଛନ୍ଦକୁ ଶୁଦ୍ଧ ଇଂରାଜୀରେ ଅନୁବାଦ କରି ବିଶ୍ୱବିଦିତ କରାଇଥିଲେ । "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ"ର ପ୍ରସ୍ତୁତିରେ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ମୁଖ୍ୟ ସହଯୋଗୀ ଭୂମିକା ନିର୍ବାହ କରିଥିଲେ । ବିଚ୍ଛନ୍ଦଙ୍କ ସନ୍ଦର୍ଭରେ ଶ୍ରୀ ପ୍ରହରାଜ କହିଥିଲେ - ଇଂରାଜୀ ଓ ଓଡ଼ିଆ ଉଭୟ ଭାଷାରେ ବିଚ୍ଛନ୍ଦର ପାଣ୍ଡିତ୍ୟ ଦେଖି ମୋତେ ଈର୍ଷା ହୁଏ । ଏହି ଶ୍ରେଣୀର ପାଣ୍ଡିତ୍ୟର ଅଧିକାରୀ ଥିଲେ ବିଚ୍ଛନ୍ଦ ଚରଣ ।

ଯେତେବେଳେ ନିନ୍ଦୁକ ଗୋଷ୍ଠୀ ତାଙ୍କୁ ଖଞ୍ଜ ଶାର୍ଦ୍ଦୁଳର ଆଖ୍ୟା ଦେବାକୁ ପଛାଇନଥିଲେ ସେତେବେଳେ ବିଚ୍ଛନ୍ଦ ଚରଣ ନିଜର କଲମ ମୁନର ରଣହଂକାରରେ ବିଜୟର ବୈଜୟନ୍ତୀ ଘୋଷଣା କରିଥିଲେ । ସେ ଖଞ୍ଜ ଥିଲେ ସତ କିନ୍ତୁ ନିଜକୁ "**ମନୋରଥରେ ମହୀପତି**" ବୋଲି ଘୋଷଣା କରୁଥିଲେ । ଭଞ୍ଜ ଜୟନ୍ତୀକୁ ମାଧ୍ୟମ କରି ବିଚ୍ଛନ୍ଦ ଚରଣ ଓଡ଼ିଆ ଜାତିର ତଥା ଭାଷାର ନିଜସ୍ୱ ପାଲା, ଦାସକାଠିଆ, ଗୋଟିପୁଅ ନାଚ, ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଙ୍ଗୀତର ପ୍ରଚାର ଓ ପ୍ରସାର

ଆରମ୍ଭ କରିଦେଇଥିଲେ । ଓଡ଼ିଆ ସଂସ୍କୃତିରୁ ବିଲୁପ୍ତ ପ୍ରାୟ ଓଡ଼ିଶୀ ନୃତ୍ୟ ଶିକ୍ଷିତ ସମାଜରେ ଆଦୃତ ହେବା ସହ ଶାସ୍ତ୍ରୀୟ ନୃତ୍ୟ ଭାବେ ସାରା ଭାରତରେ ବିଦିତ ହେଲା । ବିସ୍ମୃତ ପ୍ରାୟ ଛାନ୍ଦ ସବୁ ଜନପ୍ରିୟ ହେବାକୁ ଲାଗିଲା ।

ଓଡ଼ିଆ ସାହିତ୍ୟ ଓ ଭାଷା ପ୍ରତି ନାନା ଷଡ଼ଯନ୍ତ୍ର ଓ ସାଙ୍ଘାତିକ ଅପପ୍ରଚାର ମଧ୍ୟରେ ବି ନିଜର ସ୍ୱାଭିମାନ ଓ ମୌଳିକତା ସହ ବିଚ୍ଛନ୍ଦ ଚରଣ କେବେ ବି ସାଲିସ୍ କରି ନଥିଲେ । ଯେତେବେଳେ କୁହାଗଲା ଓଡ଼ିଶାର ପ୍ରାଚୀନ ସାହିତ୍ୟ ଅଶ୍ଳୀଳ, କ୍ଲିଷ୍ଟ, ଅଶୋଭନୀୟ ସେତେବେଳେ ଓଡ଼ିଆମାନେ ମୁମୂର୍ଷୁ ପ୍ରାୟ ଏହାକୁ ସ୍ୱୀକୃତି ଜଣାଇଲେ ଯେମିତି । ସେ ସମୟରେ ପ୍ରତିବାଦର ତୋଫାନ ବିଚ୍ଛନ୍ଦ ଚରଣଙ୍କର କଲମ ମୁନରେ ଝଡ଼ର ଅବତାରଣା କରିଥିଲା ଯେମିତି । ଇତିହାସ ବହିରେ "ହଣ୍ଟର" ସାହେବ ଲେଖିଲେ – "ଖ୍ୟାତି ଗ୍ରନ୍ଥରେ ଏଜାତିର ନାମଲେଖା ମିଳେ ନାହିଁ, ଏ ଜାତି ଗୋଟିଏ ହେଲେ ଉଲ୍ଲେଖନୀୟ କାମ କରିନାହିଁ କିମ୍ବା ଗୋଟିଏ ହେଲେ ବିଜୟ ପ୍ରସୂ ଯୁଦ୍ଧ ଲଢ଼ି ନାହିଁ ।" ଏଣିକି ଶୁଣାଗଲା ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ନୁହେଁ । ଓଡ଼ିଆ ଭାଷାର ପରମ୍ପରା ନାହିଁ, ମୌଳିକତା ନାହିଁ । ତେଣୁ ଲିପି ସହିତ ଏହି ଭାଷାର ବିଲୋପ ଘଟାଇ ଦିଆଯାଉ । ସେହି ସମୟରେ ବିଚ୍ଛନ୍ଦ ଚରଣ "କବିତା କୁମୁଦ"ର ମୁଖବନ୍ଧରେ ଲେଖିଛନ୍ତି – "ଉତ୍କଳୀୟ ମାନଙ୍କ ପରି ସଙ୍ଗୀତ ପ୍ରାଣ, କବିତା ପ୍ରାଣ ଓ କଳାପ୍ରାଣ ଜାତି ଏକା ଭାରତରେ କାହିଁକି ସାରା ପୃଥିବୀରେ ଆଉ ନାହିଁ – ମୁକ୍ତ କଣ୍ଠରେ ଲେଖିଛନ୍ତି –

"ଗାଉଛି ଉତ୍କଳ ପର ସଙ୍ଗୀତ / ନ ଜାଣୁଛି ନିଜେ ନିଜର ବିତ୍ତ / ସେ କାଳ ବିପଞ୍ଚୀ ଏ କାଳ ତାନ / ଯୋଗ ବିନା ଧନୀ ହାରୁଛି ମାନ ।"

ଏପରି କାଳଜୟୀ ପଂକ୍ତି ଯାହାର ଲେଖନୀ ମୁନରୁ ତାଙ୍କର ପ୍ରତିଭାକୁ ପରକାଷ୍ଠାର ପରିଚୟ ଦେବା ଆମ ପାଇଁ ଏକ ଦୁର୍ଗମ ପଥ ସଦୃଶ ଯାହାକୁ ପାର ହେବା ବହୁତ କଷ୍ଟ । ୧୯୩୪ ମସିହାରେ ମାତା ରାଧାଦେବୀ ଓ ୧୯୩୬ ମସିହାରେ ପିତାଙ୍କର ଦେହାନ୍ତ ହୋଇଥିଲା । ୧୯୪୧ ମସିହାରେ ସଂଘର୍ଷମୟ କଣ୍ଟକିତ ପଥରେ ସଫଳ ଯାତ୍ରା ପୂର୍ବକ ବି.ଏଲ୍. ପାଶ୍ କରିଥିଲେ । ପରେ ପରେ ଖୋର୍ଦ୍ଧା ନିକଟସ୍ଥ ଓଳସିଂହ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ସହକାରୀ ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟ କଲେ । ପିଲାମାନଙ୍କୁ ପାଠ ପଢ଼ାଇବା ସହ ପ୍ରାଚୀନ ସଂସ୍କୃତିର

ଉଦ୍ଧାର ଏବଂ (ତାଳପତ୍ର) ପୋଥି ସବୁର ଉଦ୍ଧାର ପାଇଁ ନିଷ୍ଠାପର ଉଦ୍ୟମ କରିଥିଲେ । ତାଙ୍କର ଭାବନା ଥିଲା ସଂସ୍କୃତି ସହିତ ଗୋଟିଏ ଜାତିର ଶିକ୍ଷା ଓ ସଭ୍ୟତା, ସାହିତ୍ୟ, ଆଚାର, ବ୍ୟବହାର, ଚାଲିଚଳନ, ଧର୍ମୀୟ ଚେତନାର ଘନିଷ୍ଠ ସମ୍ପର୍କ ରହିଛି ।

ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସହ ମିଶି ପ୍ରାଚୀ ସମିତିର ଇଂରାଜୀ ମୁଖପତ୍ର "ପ୍ରାଚୀ"ର ସମ୍ପାଦନା ଦାୟିତ୍ୱ ନେଇଥିଲେ । ମହାନାତ୍ମା ବିଚ୍ଛନ୍ଦଙ୍କର ପ୍ରଚେଷ୍ଟାରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କ କାଳଜୟୀ କାବ୍ୟାଂଶ ଓ କବିତା ଆଦିର ଇଂରାଜୀ ଅନୁବାଦ ପ୍ରକାଶିତ ହୋଇ ସମଗ୍ର ବିଶ୍ୱରେ ଆଲୋଡ଼ନ୍ ସୃଷ୍ଟି କରିଥିଲା । ପରେ ପରେ ଇଂରାଜୀ ପତ୍ରିକା "ବୈତରଣୀ", "ଜର୍ଣ୍ଣାଲ୍ ଅଫ୍ ଦି ଓଡ଼ିଶା ଏକାଡ଼େମୀ" ଇତ୍ୟାଦିର ସମ୍ପାଦନା ଦାୟିତ୍ୱ ନେଇଥିଲେ । ତାଙ୍କ ପ୍ରଚେଷ୍ଟାରେ ୧୯୪୪ ମସିହା ମେ ୧୬ ତାରିଖରେ "ଭଞ୍ଜ ଜୟନ୍ତୀ" ପ୍ରଥମଥର ପାଇଁ ପାଳନ କରାଗଲା ।

ସେ ଥିଲେ ପଲ୍ଲୀ ପ୍ରାଣ ବିଚ୍ଛନ୍ଦ ଚରଣ । ସେ କହିଛନ୍ତି – "ସହରଗୁଡ଼ିକ ଆମ୍ଭ ମାନଙ୍କର ଜାତୀୟ ଜୀବନର ଶ୍ମଶାନ ଓ ବିଜାତୀୟ ପ୍ରଭାବର ଦୁର୍ଗ" । ବିଚ୍ଛନ୍ଦ ଚରଣ ଥିଲେ ଅମୃତ ସନ୍ଧାନୀ । କଳିଙ୍ଗ ସାହିତ୍ୟରୁ ଜଡ଼ବାଦୀ ଚିନ୍ତାଧାରାର ବିଲୋପ ସାଧନ କରି ସେଥିରେ ରସକଲ୍ଲୋଳ, ସଙ୍ଗୀତରେ ମୁର୍ଚ୍ଛନା ଭରିଥିଲେ ଗୁରୁଦେବ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ଭଞ୍ଜ ଜୟନ୍ତୀ ସଫଳ ରୂପାୟନ ପରେ ୧୯୫୯ ମସିହାରେ ସେ କହିଥିଲେ – "ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ସାହେବୀ ପରମ୍ପରାର ପରାଜୟ ଆରମ୍ଭ ହୋଇଛି, ଏବଂ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେଉଁ ମହତ ଭାରତୀୟ ବା ସଂସ୍କୃତି ପରମ୍ପରାର ସମର୍ଥ ପ୍ରତିନିଧି, ତାହା ପୁନଃ ପ୍ରତିଷ୍ଠା ପଥରେ ଜୟଯାତ୍ରା କରୁଅଛି । ଏପରି କହି ସେ ଖୁବ୍ ଆତ୍ମସନ୍ତୋଷ ଲାଭ କରିଥିଲେ । ପ୍ରେମ ଓ ଦେଶ ପ୍ରେମର ଅପୂର୍ବ ସମନ୍ୱୟ ଥିଲେ ବିଚ୍ଛନ୍ଦ ଚରଣ । କେବଳ ଓଡ଼ିଆରେ ନୁହେଁ ଇଂରାଜୀ, ବଙ୍ଗଳା, ସଂସ୍କୃତ, ହିନ୍ଦିରେ ମଧ୍ୟ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କ ଦ୍ୱରା ଲିଖିତ ପୁସ୍ତକ "Man of Nature" ଆମେରିକା ବିଶ୍ୱବିଦ୍ୟାଳୟରେ ଏକ ଅମୂଲ୍ୟ ଗ୍ରନ୍ଥ ।

ଭାଷା, କଳା, ଛାନ୍ଦରାଗିଣୀ ପାଇଁ ସମର୍ପିତ ଥିଲା ଛନ୍ଦମୟ ବିଚ୍ଛନ୍ଦଙ୍କ

ଜୀବନ । ଖଣ୍ଡର ଖଡ୍‌ଗ ରୂପୀ କଲମରେ ଓଡ଼ିଆ ଭାଷା ସୁରକ୍ଷାର ସଂଗ୍ରାମର ଜୟଗାଥା ଚିରକାଳ ସ୍ମରଣୀୟ । ୧୯୧୬ ମସିହାରେ ଜାନୁଆରୀ ୧୪ ରେ ଦେଶପ୍ରାଣ ଜାତୀୟବାଦୀ ହୋଇଯାଇଥିଲେ ଯେମିତି । ହେଲେ ଏବେ ବଞ୍ଚିଛି ପ୍ରତିଟି ଚେଷ୍ଟା, ପ୍ରତିଟି ପ୍ରୟାସ ଓଡ଼ିଶାର ଛାନ୍ଦରେ, ଓଡ଼ିଆର ତାଳପତ୍ର ପୋଥିରେ, କବିର ପ୍ରେମରେ, ଚମ୍ପୁରେ । ବିଚ୍ଛନ୍ଦର ସୁଗନ୍ଧର କାୟା କାହିଁ କେତେ ସୁଦୂର ପ୍ରସାରୀ ତାହାର ପ୍ରମାଣ ଓଡ଼ିଆ ସାହିତ୍ୟର ଦୂରଦିଗବଳୟ ବହନ କରେ । ଏତେ ସବୁ ପରେ ମଧ ସରକାରୀ ଓ ବେସରକାରୀ ସ୍ତରରେ ବିଚ୍ଛନ୍ଦ ସ୍ମୃତି ଆଜି ବି ବିସ୍ମୃତି ଯେମିତି, ମୋ ଗାଁର ଗୁରୁଦେବଙ୍କୁ ଆଜି ଛାତ୍ରସମାଜ ଜାଣିନି, କି ଜାଣିବାକୁ ଚାହିଁନି ମଧ । ଏ ପର୍ଯ୍ୟନ୍ତ ବିଚ୍ଛନ୍ଦ ଚରଣଙ୍କ ପ୍ରତିମୂର୍ତ୍ତି ତାଙ୍କର ଜନ୍ମସ୍ଥାନ ଯାଁଳା ମାଟିରେ ମଧ ସ୍ଥାପନ ହୋଇ ନ ପାରିବା କ୍ଷୋଭ ଓ ଚରମ ଲଜ୍ଜାର ବିଷୟ ।

କବି ବୈକୁଣ୍ଠନାଥ ସାହୁଙ୍କ ଭାଷାରେ -

"ଯେପରି ଖୋରଧା ପାଇକ ଲାଠି / ସେପରି ଯାଁଳା କଲମ କାଠି / ସେ କାଠିକୁ ଧରି ବିଚ୍ଛନ୍ଦ ବୀର / ସାହିତ୍ୟ ସଂସ୍କୃତି କଲେ ଉଦ୍ଧାର ।"

ପ୍ରାଚୀନ ସାହିତ୍ୟର ଉଭା ଯେତେ, ପୋତା ତହୁଁ ଅଧିକ । କେବଳ ବିଷୟଗତ ଗବେଷଣାରେ ସୀମିତ ଆମର ପ୍ରଚେଷ୍ଟା । ସାହିତ୍ୟ ସାରଥି, ସାଭିମାନୀ, ବିପ୍ଳବୀ, ପଲ୍ଲିପ୍ରାଣ ବିଚ୍ଛନ୍ଦ ଚରଣ ନିଜର ଅଦ୍ୱିତୀୟ ଚେଷ୍ଟା, ନିଷ୍ଠା ବଳରେ ଓଡ଼ିଶା ପାଇଁ, ଓଡ଼ିଆ ଭାଷାର ସୁରକ୍ଷା ପାଇଁ ଓ ଓଡ଼ିଆକୁ ବିଶ୍ୱ ଦରବାରରେ ଏକ ସୌର୍ଯ୍ୟଭରା ପରିଚୟ ଦେବାରେ କେବେ ହେଲେ ସାଲିସ୍ କରି ନାହାନ୍ତି । ତାଙ୍କର ଆହ୍ୱାନ - "ଗାଆ ବାଣୀ ବୀର ସଙ୍ଗୀତ / ବୀର ମେଦିନୀ ଏ ହେଉ ସ୍ପନ୍ଦିତ" କୁ ସଠିକ୍ ବାଟରେ ଆଗେଇ ନେବା ଆମର ସମସ୍ତଙ୍କ ପରମ ଓ ପ୍ରଥମ ଦାୟିତ୍ୱ ହେବା ଆବଶ୍ୟକ । ଓଡ଼ିଶାର ଛାତ୍ର ଯେପରି "ଉତ୍କଳ ସାହିତ୍ୟ ଛାତ୍ର ସମାଜ"ର ପ୍ରତିଷ୍ଠାତାକୁ ଭୁଲି ନ ଯାଉ !

ସହାୟକ ଗ୍ରନ୍ଥସୂଚୀ

"ଭାଷା", ଉତ୍କଳ ସେବା ଅନୁଷ୍ଠାନ (ବିଚ୍ଛନ୍ଦ ଚରଣ ୨୦୦୪ ବିଶେଷାଙ୍କ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ।

# 'ପାଇକ ମାଟିର ଗାଥା' ଓ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ

ଡ. ମଦନ ମୋହନ ବେହେରା

ଓଡ଼ିଶାର ଇତିହାସ ଐତିହ୍ୟ ଓ ପରଂପରାରେ ପାଇକ ଶବ୍ଦ ଉଚ୍ଚାରଣ କରିଦେଲା ମାତ୍ରେ ପ୍ରତ୍ୟେକ ସ୍ୱାଭିମାନ ଓଡ଼ିଆ ହୃଦୟରେ ଏକ ଜାତୀୟ ଶିହରଣ ସୃଷ୍ଟି ହୋଇଯାଏ । ପାଇକମାନଙ୍କ ବୀରତ୍ୱ, ସାହସ ଓ ଦେଶ ମାତୃକା ସୁରକ୍ଷାର ଆତ୍ମ ବଳୀଦାନ ବାସ୍ତବିକ ଅନନ୍ୟ । ହୁଏତ ଖାରବେଳଙ୍କ ପୂର୍ବରୁ ପାଇକ ପରଂପରା ଗତି କରି ଆସିଥିଲା । ତଥାପି ଗଜପତି କପିଳେନ୍ଦ୍ର ଦେବଙ୍କ ସମୟରୁ ହିଁ ସମଗ୍ର ଓଡ଼ିଶାର ପାଇକ ସମ୍ପ୍ରଦାୟ ଓଡ଼ିଶାର ସୁରକ୍ଷା ପାଇଁ ଏକ ଉତ୍ସର୍ଗୀକୃତ ସୈନ୍ୟ ବାହିନୀର ମର୍ଯ୍ୟାଦା ଲାଭ କରିଥିଲେ । କିନ୍ତୁ ୧୫୬୮ ମସିହାରେ ଓଡ଼ିଶା ପରାଧୀନ ହୋଇଯିବା ଫଳରେ ଓଡ଼ିଶାକୁ ଶାସନ କଲେ ଆଫଗାନ, ମୋଗଲ, ମରହଟ୍ଟା । ଶେଷକୁ ୧୮୦୩ରେ ଶାସନ କଲେ ଇଂରେଜମାନେ । ଏହି ଦୀର୍ଘକାଳ ମଧ୍ୟରେ ଓଡ଼ିଶାର ଗଜପତି ଶାସନ ଭୁଷୁଡ଼ି ଗଲା, ଓଡ଼ିଶା ଖଣ୍ଡ ଖଣ୍ଡ ହୋଇଗଲା । ଖଣ୍ଡ ଖଣ୍ଡ କ୍ଷୁଦ୍ର ରାଜ୍ୟରେ ରାଜାମାନେ ନିଜେ ନିଜକୁ ସର୍ବେ ସର୍ବା ମନେ କଲେ ।

ଯେତେବେଳେ ରାମଚନ୍ଦ୍ର ଦେବ ଦ୍ୱିତୀୟ ଓଡ଼ିଶାର ଗଜପତି ହେଲେ ସତ କିନ୍ତୁ ସେତେବେଳେ ସେ ସ୍ୱାଧୀନ ହେଲେ ନାହିଁ । ମୋଗଲ ସରକାରର ଅଧୀନ ହୋଇଗଲେ । କିନ୍ତୁ ପୁରୀ ଓ ବାରବାଟୀକୁ ଛାଡ଼ି ଖୋର୍ଦ୍ଧାରେ ସେ ଅବସ୍ଥାନ କଲେ । ଖୋର୍ଦ୍ଧାଗଡ଼ ପ୍ରସିଦ୍ଧ ଗଡ଼ରେ ପରିଣତ ହେଲା । ଖୋର୍ଦ୍ଧାଗଡ଼କୁ କେନ୍ଦ୍ର କରି ସମଗ୍ର ଖୋର୍ଦ୍ଧା ଅଞ୍ଚଳରେ ବହୁ ଦୁର୍ଗଗଡ଼ ପ୍ରତିଷ୍ଠା ହେଲା । ବାଲୁଗାଁ, ବାଣପୁର ଠାରୁ ଆରମ୍ଭ କରି ପୁରୀ, ପିପିଲି, ଭୁବନେଶ୍ୱର ପର୍ଯ୍ୟନ୍ତ ଯେଉଁ ଭଳି ମଣ୍ଡଳଟି ଗଢ଼ି ଉଠିଲା, ସେଠାରେ ଯେଉଁ ଯେଉଁ ଦୁର୍ଗଗଡ଼ ପ୍ରତିଷ୍ଠା ଲାଭ କଲା, ସେଥିରେ ଜଣେ ଜଣେ ଗଜପତି ରହିଲେ । ତାଙ୍କ ଅଧୀନରେ ପାଇକମାନେ ରହିଲେ । ଏତଦ୍ ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ଯେଉଁ ରାଜାମାନେ ଶାସନ କଲେ ସେମାନଙ୍କ ଅଧୀନରେ ରହିଲେ ମଧ୍ୟ ପାଇକମାନେ । ୧୮୧୭ ମସିହାରେ ପାଇକମାନଙ୍କୁ ସଂଗଠିତ କରି ଇଂରେଜ ମାନଙ୍କ ବିରୋଧରେ ବିଦ୍ରୋହ କରିବାକୁ ଲାଗିଲେ ବକ୍ସି ଜଗବନ୍ଧୁ । ତାଙ୍କୁ ସହଯୋଗ କଲେ ଘୁମୁସର, ଦଶପଲ୍ଲା, ନୟାଗଡ଼, ବୌଦ୍ଧ, ଖଲ୍ଲିକୋଟ, କଟକ, ଆଳୀ, କୁଜଙ୍ଗ ଆଦିର ପାଇକମାନେ । କିନ୍ତୁ ୧୮୨୫ରେ ବକ୍ସି

ଜଗବନ୍ଧୁ ଆତ୍ମ ସର୍ମପଣ କରିବାକୁ ଲାଗିଲେ । ତାଙ୍କୁ କ୍ଷମା ଓ ମାସିକ ବୃତ୍ତିରେ କଟକରେ ରଖାଗଲା । ତଥାପି ବିଦ୍ରୋହ ଥମିଲା ନାହିଁ । ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ବିଦ୍ରୋହ କରିବାକୁ ଲାଗିଲେ । ୧୮୩୨ ମସିହାରେ ତାପଙ୍ଗ ଦଳବେହେରା, କୃତିବାସ ପାଟସାଣୀ ପାଇକମାନଙ୍କୁ ସଂଗଠିତ କରି ଯୁଦ୍ଧ କରିବାକୁ ଲାଗିଲେ ।

୧୮୫୭ ମସିହାର ସିପାହୀ ବିଦ୍ରୋହ ପରେ ଇଂରେଜମାନେ ଓଡ଼ିଶାର ପାଇକମାନଙ୍କ ଉପରେ ଦମନ ଲୀଳା ଆରମ୍ଭ କଲେ । ସେମାନଙ୍କ ନିଷ୍କର ଜମିକୁ ବ୍ୟାର୍ଯ୍ୟାପ୍ତ କରାଇଲେ । ପାଇକ ମାନେ ଦରିଦ୍ରରୁ ଦରିଦ୍ରତର ହେବାକୁ ଲାଗିଲେ । ସେମାନଙ୍କ ପରଂପରା ସବୁ ଭୁଷୁଡ଼ି ପଡ଼ିଲା । ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧି ବେଳକୁ ବାଣପୁରର ଜଣେ ଆଦର୍ଶ ଶିକ୍ଷକ କୃଷ୍ଣଚନ୍ଦ୍ର ତ୍ରିପାଠୀ ପାଇକମାନଙ୍କ ଜୀବନ ଓ ଚିନ୍ତନକୁ ନେଇ ରଚନା କଲେ ତାଙ୍କର କବିତା । ପାଇକମାନଙ୍କ ବୀରତ୍ୱ, ଜଗନ୍ନାଥ ପ୍ରାଣତା, ଦେଶ ପାଇଁ ଆତ୍ମ ବଳିଦାନର ମହାନୁଭବ କବି କୃଷ୍ଣଚନ୍ଦ୍ରଙ୍କୁ ଅଭିଭୂତ କରିଛି । ଯେତେବେଳେ ଗଜପତି ମୁକୁନ୍ଦ ଦେବଙ୍କ ଆହ୍ୱାନ କ୍ରମେ ପାଇକମାନେ ଯୁଦ୍ଧକୁ ବାହାରନ୍ତି, ତାଙ୍କର ପତ୍ନୀ କିପରି ବୀର ବେଶରେ ସଜାଇ ଯୁଦ୍ଧକୁ ପଠାଏ ତାହା ମଧ ରଚନା କରିଛନ୍ତି । ହଜି ଯାଇଥିବା ଇତିହାସ ଓ ପରଂପରା ଭିତରେ ନୂତନ ପ୍ରାଣ ସ୍ପନ୍ଦନ ଆବିଷ୍କାର ସେ କଲେ । କବି କୃଷ୍ଣଚନ୍ଦ୍ର ରାଶି ରାଶି କବିତା ଲେଖି ପାଇକମାନଙ୍କ ପ୍ରତି ଜଣାଇଲେ ସଶ୍ରଦ୍ଧ ଅଭିନନ୍ଦନ । କବିଙ୍କ କବିତାରେ ସେ ସବୁ ଇତିହାସ ଅଛି । ଆତ୍ମ ବଳିଦାନର ଗାଥା ଅଛି, ଅଛି ମଧ ଇତିହାସ ବିଦ୍ରୋହ ନୂତନ ଜାତୀୟ ସ୍ପନ୍ଦନକୁ ଆବିଷ୍କାର କରିବାର ଦୁର୍ବାର ବାସନା ।

ଡ. ମାୟାଧର ମାନସିଂହ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ବାରମ୍ବାର ଶ୍ରଦ୍ଧା ନିବେଦନ କରିଛନ୍ତି । କୃଷ୍ଣଚନ୍ଦ୍ରଙ୍କ ପୂର୍ବରୁ କବି ପଦ୍ମ ଚରଣ ପଟ୍ଟନାୟକ ଖୋରଧା ପ୍ରଥମ ଦର୍ଶନ କବିତାରେ ପାଇକ କଥା ଉଲ୍ଲେଖ କରିଛନ୍ତି । ତାଙ୍କ ସମକାଳରେ ଗୋଦାବରୀଶ ମହାପାତ୍ର ବାରବାଟୀ ଓ ଖୋର୍ଦ୍ଧାର ଗୌରବକୁ ଜୀବନ୍ତ କରିଦେଇଛନ୍ତି ତାଙ୍କର ବିଭିନ୍ନ କବିତାରେ । ସେ କାଳରେ ପଣ୍ଡିତ ଗୋଦାବରୀଶ ମିଶ୍ର, ୧୮୧୭ ଉପରେ ଉପନ୍ୟାସ ମଧ ଲେଖିଥିଲେ । ପରବର୍ତ୍ତୀ ସମୟରେ ଚକ୍ରଧର ମହାପାତ୍ର, ମନୋରଂଜନ ଦାସ ଓ ଅନ୍ୟାନ୍ୟ ବହୁ ଲେଖକ ଖୋର୍ଦ୍ଧାର ପାଇକମାନଙ୍କ ଉପରେ କବିତା, ନାଟକ, ଉପନ୍ୟାସ ରଚନା କରିଛନ୍ତି । ଏ ସମସ୍ତ ମଧରେ କବି କୃଷ୍ଣ ଚନ୍ଦ୍ର ତ୍ରିପାଠୀ ଏକ ମାତ୍ର

କବି ଯେ କି ପାଇକ କବି ଭାବରେ ସମ୍ମାନ ଅର୍ଜନ କରିଛନ୍ତି । ତାଙ୍କର 'ପାଇକ ମାଟିର ଗାଥା' କବିତା ସଂକଳନ ସଂପର୍କରେ ଏହି ପ୍ରବନ୍ଧରେ କିଞ୍ଚିତ ଆଲୋଚନା କରାଯାଇଅଛି । ଏଥିରେ ୨୮ଗୋଟି କବିତା ସନ୍ନିବେଶିତ ହୋଇଛି । ଏହାର 'ବିଜ୍ଞପ୍ତି'ରେ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ କହିଛନ୍ତି "ମୋ ଜୀବନର ପ୍ରଥମ ଯୌବନରେ ଖୋର୍ଦ୍ଧା ମାଟିର ବୀର ଖଣ୍ଡାୟତ ମାନଙ୍କର ଦେଶ ଜାତି ପାଇଁ ଅକୁଣ୍ଠ ପ୍ରାଣଦାନର କାହାଣୀ ମତେ ଉତ୍ସ୍ପନ୍ଦିତ କରିଚି । ସେମାନଙ୍କର ଅନନ୍ୟ ଦେଶାତ୍ମବୋଧର ଗାରିମା ମତେ ଅଭିଭୂତ କରିଚି । ଏ ମାଟିର ଭଗ୍ନାବଶେଷ ଦୁର୍ଗ ଏବଂ ଦୁର୍ଗପତିମାନଙ୍କର ବୀରତ୍ୱର କାହାଣୀ ଏବଂ ଖଣ୍ଡାୟତ ପଲ୍ଲୀମାନଙ୍କରେ ଢ଼ାଲ, ଖଣ୍ଡା, ତୀର, ତଲୁଆର ଇତ୍ୟାଦି ଅସ୍ତ୍ରଶସ୍ତ୍ର ଯାହାକୁ ଧରି ଏ ମାଟିର ପାଇକବାହିନୀ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇପାରିଚି, ପାଇକବଧୂ ମାନଙ୍କର ସ୍ୱାମୀକୁ ରଣଭୂଇଁକୁ ପଠାଇବାର ନିଃସଙ୍କୋଚ ଭାବରେ ଯେ ପ୍ରେରଣା ଯାହା ଦେଖିଚି, ଶୁଣିଚି - ସେ ସବୁ ମୋ ପ୍ରାଣ ଭିତରେ ଏପରି ଅପୂର୍ବ ଉନ୍ମାଦନା ସୃଷ୍ଟି କରିଚି ଯାହା ବଳରେ ଆପେ ଆପେ ଏଇ କବିତା ଗୁଡ଼ିକ ମୋ ଲେଖନୀରୁ ଛୁଟି ଆସିଚି ।"

ଖୋର୍ଦ୍ଧାର ଗଜପତି କପିଳେନ୍ଦ୍ର ଦେବଙ୍କ ପ୍ରଧାନ ସଚିବ ଥିଲେ ଜୟୀ ରାଜଗୁରୁ । କବି କୃଷ୍ଣଚନ୍ଦ୍ର ତ୍ରିପାଠୀ, 'ଜୟୀ ରାଜଗୁରୁଙ୍କ ଉତ୍ସାହବାଣୀ' କବିତା ଆନୁକୂଲ୍ୟରେ ସେ ବରୁଣେଇ ପାଦ ଦେଶରେ ଅକୁଣ୍ଠିତ ଭାବେ ପ୍ରାଣବଳି ଦେଇ ଜାତିର ସମ୍ମାନ ରଖିଥିବା ଖୋର୍ଦ୍ଧାର ଖଣ୍ଡାୟତ ବୀରମାନଙ୍କୁ ଉଦ୍‌ବୋଧନ ଦେଇଛନ୍ତି । ଇଂରେଜ ମାନଙ୍କୁ ହରାଇ ଘରକୁ ଫେରିଥିବା ବାପା ତାର ପୁତ୍ର ଓ ଅନ୍ୟ ସମସ୍ତଙ୍କର ସମ୍ମୁଖରେ ଦେଶ ମାତୃକାର କଥା ବଖାଣେ । ସେ କହେ -

"ଦେଶ ଯଦି ବଞ୍ଚି ପାରେ / ତୋହରି ମରଣେ, / ଦେଶ ଯଦି ତୋଳିପାରେ / ବିଜୟ କେତନ / ତୋ ଶୋଣିତ ପ୍ରତିବିନ୍ଦୁ ଦାନେ"

ତରୁଣୀ କିଶୋରୀ ବଧୂ ମଧ ତାର ପ୍ରିୟତମକୁ ପ୍ରୋତ୍ସାହବାଣୀ ଶୁଣାଏ ଦେଶ ପାଇଁ ସଂଗ୍ରାମ କରିବାକୁ ଏବଂ ଖୁସିରେ ମଧ ପ୍ରିୟତମକୁ ବିଦାୟ ଦେବା ପାଇଁ ପଛଘୁଞ୍ଚା ଦିଏନାହିଁ । ଦେଶ ପାଇଁ ଲଢ଼େଇ କରିବାକୁ ମା ମଧ ତାର ପୁଅକୁ ପ୍ରବର୍ତ୍ତାଏ ।

ସେହିପରି 'ପୁରସ୍କାର' କବିତାରେ ଜଣେ ଲଢୁଆ ସେନାପତି ମନରେ ଥିବା ଦେଶ ପ୍ରେମକୁ କବି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ କିଛି ପୁରସ୍କାର ଦେବା ପାଇଁ ମଧ ଭୁଲି ଯାଇନାହାନ୍ତି । ତାଙ୍କୁ ସେନାପତି ସମ୍ବୋଧନ କରି କହିଛନ୍ତି -

" ଏ ମାଟି ହସିଲେ ତୁମେ ହସ ବୀର, / ଏ ମାଟି ଦୁଃଖେ ଝରାଅ ଅଶ୍ରୁ ନୀର" ।

ଖୋର୍ଦ୍ଧା ନିକଟବର୍ତ୍ତୀ କଜଳାଗଣ୍ଡର କଳାବତୀ ନାମ୍ନୀ ରମଣୀର ଯେଉଁ ବୀରତ୍ୱ ଶକ୍ତି ସାମର୍ଥ୍ୟ ଥିଲା ଏବଂ ଇଂରେଜମାନଙ୍କ ବିରୋଧରେ ଯେପରି ସେ ଲଢ଼େଇ କରି ଆତ୍ମ ବିସର୍ଜନ କରିଥିଲେ, ତାହାକୁ ରୂପାୟନ କରିଛନ୍ତି 'କଜଳାଗଣ୍ଡ' କବିତା ମାଧ୍ୟମରେ । କବିଙ୍କ ମନରେ ଆସିଛି କ୍ଷୋଭ । କାରଣ କଜଳାଗଣ୍ଡ ବର୍ତ୍ତମାନ ସୁପ୍ତ ଅବସ୍ଥାରେ ରହିଯାଇଛି । ସେଠାରେ ଯୁଦ୍ଧ ବାଦ୍ୟ ଶୁଭୁନି, ଘୋଡ଼ାର ଟପ୍ ଟପ୍ ଶବ୍ଦ ଶୁଭୁନି । ଶୁଭୁନି ମଧ୍ୟ ଟମକ ବାଜାର ଶବ୍ଦ । କିନ୍ତୁ ସେଇ କଳାବତୀ ଜନ୍ମଭୂମି ପାଇଁ କଳା ଘୋଡ଼ାରେ ଚଢ଼ି ଶତ୍ରୁମାନଙ୍କୁ ଛେଦି ଦେଉଥିଲା ଏବଂ କହି ଦେଉଥିଲା ।

"ପାଇକ ଝିଅ ମୁଁ ପାଇକ ବୋହୂ, ପାଇକ ରକ୍ତ ଛାତିରେ ବହେ
ପାଇକ ଆଖିର ବହ୍ନି ମୋର ନୟନେ ନୟନେ କଥା ଯେ କହେ ।"

କିନ୍ତୁ ସେଇ କଳାବତୀ ପରି ଆଉ ସାହସୀ ରମଣୀ ନାହାଁନ୍ତି, କି ଦେଶ ପାଇଁ ମଧ୍ୟ କାହାର ରକ୍ତ ତାତି ଉଠୁନି । ଆଜି କଜଳଗଣ୍ଡ ନିରବ ନିସ୍ତବ୍ଧ ହୋଇଯାଇଛି । କେବଳ କଳାବତୀର କୀର୍ତ୍ତି କଳା ପ୍ରତିଧ୍ୱନିତ୍ୱ ହେଉଛି ସେଇ ନିର୍ଜନ ବେଳାରେ ।

ଇଂରେଜମାନଙ୍କ ବିରୋଧରେ ଲଢ଼େଇ କରି ଫାଶୀ ପାଇବାକୁ ଯାଇଛନ୍ତି ଜୟୀ ରାଜଗୁରୁ । ସେ ମୃତ୍ୟୁର ସମ୍ମୁଖୀନ ହୋଇ ମଧ୍ୟ ତିଳେ ମାତ୍ର ତାଙ୍କ ମନ ଭିତରେ ଭୀରୁତା ଆସି ନାହିଁ । ବରଂ ଦେଶ ପାଇଁ ଓ ଜାତି ପାଇଁ ଉଦ୍‌ବୋଧନ ଦେଇଛନ୍ତି । ଏ ଜାତିର ଗୌରବକୁ ମନେ ପକାଇ ଦେଉଛନ୍ତି ସେ । ଏଇ ବୀର ପୁରୁଷମାନେ କେବେ ହେଲେ ଇଂରେଜମାନଙ୍କ ପାଖରେ କ୍ରୀତଦାସ ହୋଇ ରହିବେ ନାହିଁ । ଖୋରଧା ମାଟି ହିଁ କହିବ ଜୟୀ ରାଜଗୁରୁଙ୍କ ବୀରତ୍ୱ, ଶକ୍ତି ଓ ସାମର୍ଥ୍ୟ । ତାଙ୍କର ପ୍ରତିଟି ଶିରା ପ୍ରଶିରାରେ ସତେ ଯେପରି ପ୍ରବାହିତ ହେଉଛି ପରାଧୀନତାକୁ ପରାହାତ କରି ସାଧୀନତା ଆଣିବା । ସବୁ ବନ୍ଧନକୁ ଛିଣ୍ଡେଇ ମୁକୁଳିବାର ଅଦମ୍ୟ ପ୍ରୟାସ । ତେଣୁ ସେ କହିଉଠିଛନ୍ତି -

" ପ୍ରତି ଶିରା ଉପଶିରା କମ୍ପି ଉଠେ / ରକ୍ତ ମୋର ଉଷ୍ମ ପ୍ରସ୍ରବଣ ପରି / ଟକମକ ହୋଇ ଏବେ ଫୁଟେ / ମନେହୁଏ ଅରଣ୍ୟର ସିଂହ ପରି ଯାଆନ୍ତିରେ ଛୁଟି" (ଫାଶୀକାଠରେ ଜୟୀରାଜଗୁରୁ)

ସେ ବରଂ ଫାଶୀ ପାଇଛନ୍ତି କିନ୍ତୁ ରାଜ୍ୟ ତଥା ଦେଶର ସମ୍ମାନ ରକ୍ଷା କରିବା

ପାଇଁ  ଇଂରେଜମାନଙ୍କ ପାଖରେ କୁକୁର ହୋଇ ରହିବା ପାଇଁ ଇଚ୍ଛା ପ୍ରକାଶ କରିନାହାଁନ୍ତି । କବିଙ୍କ ଭାଷାରେ -

"ବଞ୍ଚିଲେ ବଞ୍ଚିବ ସିଏ ଶତସୂର୍ଯ୍ୟ ପରି

ଜ୍ୱଳନ୍ତ ଆଗ୍ନେୟ ଶିଖା ଖେଳାଇ ଖେଳାଇ ଜନମେ ଜନମେ" !

ଖୋରଧା ମାଟିର ଏକ ଓଡ଼ିଆ ପାଇକ ଝିଅର ଉଦାତ୍ତବାଣୀ 'ପାଇକ ଝିଅ' କବିତାରେ ପ୍ରକଟିତ । ନାରୀ ହୋଇ ମଧ ସମର ଭୂମିରେ ଲଢ଼ିବା ପାଇଁ ସେ ଆଗଭର । ସେ ଚାହେଁ ନାହିଁ ମଣି ମାଣିକ୍ୟ, କି ହାତୀ ଘୋଡ଼ା । ସେ ଚାହେଁ ଜନ୍ମଭୂମିର ମୁକ୍ତି । ସେ ମୁକ୍ତ କଣ୍ଠରେ କହି ଉଠିଛି -

"ଓଡ଼ିଆ ପାଇକ ଝିଅରେ ମୁହିଁ ଡହଡ଼ହ ନିଆଁ ଜାଳି

ଜନ୍ମଭୂଇଁର ମୁକ୍ତି ଲାଗି ଦେଇପାରେ ଶିର ବଳି !"

ସେ ଅବିବାହିତା ରହିଛନ୍ତି ସତ କିନ୍ତୁ ଏହି ମାଟିର ଜୟ ଗାନ କରିବା ପାଇଁ ଭୁଲି ଯାଇନାହାନ୍ତି ।

ଇଂରେଜମାନଙ୍କ ବିରୋଧରେ କେବଳ ପୁରୁଷ ଲଢ଼େଇ କରିନାହାଁନ୍ତି । ନିଜ ପତ୍ନୀମାନଙ୍କୁ  ଯୁଦ୍ଧରେ ସାମିଲ ହେବା ପାଇଁ ସେମାନେ ଦେଇଛନ୍ତି ବଳିଷ୍ଠ ଆହ୍ୱାନ । ତେଣୁ 'ରକ୍ତ ରେଖାର ଅଭିଯାନ' କବିତାରେ ବୀର ପୁରୁଷଟି କହି ଉଠିଛି-

"ତୁମ ପ୍ରିୟତମ ତୁମରି କୋମଳ କପାଳ ଛୁଇଁ / କହି ନାହାନ୍ତି ଯାଉଛି ମୁଁ ଚାଲି ସମରଭୂଇଁ ? / ମୋ ପରେ ଆସିବ ମଲେ ମରିବା ଗୋ ଏକାଠି ଦୁଇ" !

ପରିଶେଷରେ ସ୍ୱାମୀର ଚିତାନଳକୁ ଅନୁଧ୍ୟାନ କରିଛି ରମଣୀଟି । ଦେଶ ମାତୃକା ପାଇଁ ଲଢ଼େଇ କରିବାକୁ ଆଗଭର ହୋଇଛି । ସମସ୍ତ ପୁର ନାରୀ ବନ୍ଦାପନା କରିବାକୁ ଆଗେଇ ଆସିଛନ୍ତି । ତେଣୁ ତା ମନରେ ଆସିଛି ଅଦମ୍ୟ ସାହସ ଓ ଶକ୍ତି । କବିଙ୍କ ଭାଷାରେ -

"ତରୁଣୀ ସୈନ୍ୟ ଶତ୍ରୁରେ ଖାଲି ଯାଉଚି ଭାଷି- / ମୋ ଦେଶ ଧ୍ୱଂସ କରିବ କିଏ ସେ ପାରିବ ଆସି ? / ଦେଶ ମାଟିରେ ମୋ ପାରିବିନି କରି କା' ଘର ଦାସୀ ?"

ସେହିପରି 'ସୈନିକ ସମାଧି' କବିତାରେ ପାଇକ ପୁଅଟି କିପରି ଯୁବା ଅବସ୍ଥାରେ ଶତ୍ରୁ ସହ ଲଢ଼େଇ କରି ପ୍ରାଣ ବଳି ଦେଇଛି ତାହା ବର୍ଣ୍ଣିତ । ସତେ ଯେମିତି ତାର ସମାଧି ପୀଠଟି ଅତୀତର ସ୍ମୃତି ରୋମନ୍ଥନ କରି ବୀରତ୍ୱର ଗୁଣଗାନ

କରୁଛି । 'ଏଇ ଦୁର୍ଗ ଏ ବଣ ପାହାଡ଼' କବିତାରେ ପାଇକ ପୁଅ ମାନଙ୍କର ଅତୁଟ ଗାରିମାକୁ ଖୋଜିଛନ୍ତି କବି । ସେ ସବୁର ମୂକ ସାକ୍ଷୀ ହେଉଛନ୍ତି ପାହାଡ଼ର ତରୁରାଜି । ଶତ୍ରୁ ତୀର ଦ୍ୱାରା ଭୂଇଁରେ ପତିତ ହେବା ସମୟରେ ନିଜ ଜୀବନକୁ ସାର୍ଥକ କରିଛନ୍ତି ବୋଲି ସେମାନେ ଭାବି ନେଇଛନ୍ତି ।

ଦେଶ ମାତୃକାକୁ ରକ୍ଷା କରିବା ଏବଂ ବିଦେଶୀ ମାନଙ୍କ ବିରୁଦ୍ଧରେ ଲଢ଼େଇ କରିବା ପାଇଁ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ 'ଜଣେ ସୈନିକ କବିର ଚିଠି' କବିତାରେ ଦେଇଛନ୍ତି ଏକ ବଳିଷ୍ଠ ଆହ୍ୱାନ । ଆଦିମ ଯୁଗରୁ ଏ ଜାତି କାହା ପାଦ ତଳେ ନିଜର ମଥାକୁ ନୁଆଇଁ ଦେଇ ନାହିଁ । ଏ ମାଟିର ବୀର ପୁଙ୍ଗମ ମାନଙ୍କ ଶକ୍ତିକୁ କଳନା କରିବା କଷ୍ଟକର । ଏହି ବୀର ଜାତିର ଅମର ଗାଥା ଗାନ କରିଛନ୍ତି କବି କୃଷ୍ଣଚନ୍ଦ୍ର – "ଏଇ ଜାତି ନିଆଁରେ ଖେଳିଚି ଖେଳ, / ମୃତ୍ୟୁରେ ମାରିଚି ଶେଳ, / ବୀର ପରି ବଂଚିଛି ସେ ଚିରଦିନ ଧରି ! / ଏ ଜାତି ପାରିବ ନାଇଁ ସହି କା'ର ପଦାଘାତ / ଆଗ୍ନେୟ ଶରଳ ପରି" ।

ଏହି ମାଟିର ବୀର ମାନଙ୍କ ରକ୍ତ, ମାଂସ ଅସ୍ଥିରେ ଅଛି ଦେଶ ପାଇଁ ଅନେକ ସ୍ୱପ୍ନ । ତାକୁ ସାକାର କରି ସକଳ ଦୈନ୍ୟତାକୁ ଦୂର କରିବା ପାଇଁ କବି ଉତ୍ସାହବାଣୀ ପ୍ରଦାନ କରିଛନ୍ତି ।

ଇଂରେଜମାନଙ୍କ ବିରୁଦ୍ଧରେ ଆଗଭର ହୋଇ ଲଢ଼େଇ କରୁଥିବା ବନ୍ଦୀ ହୋଇ ପରିଶେଷରେ ଜୟୀରାଜଗୁରୁ ଏକ ବରଗଛରେ ଫାଶୀ ପାଇଛନ୍ତି । ପିଠିରେ ଚାବୁକ ପ୍ରହାର, ହାତରେ ହାତକଡ଼ା ଓ ନିର୍ମମ ଅତ୍ୟାଚାର ଭିତରେ ଫାଶୀ ପାଇଗଲେ ଅମର ଜୟୀ ରାଜଗୁରୁ । ତେଣୁ 'ଏ ମାଟିର ଅମର ସହିଦ' କବିତାରେ କବି କହିଛନ୍ତି – "ଏ ମହା ଜାତିର ସନ୍ତାନ ହେଲା ଠିଆ / ବରଗଛ ତଳେ ଫାଶିରେ ଲଗାଇ ମଥା, / ଅନ୍ତର ତାର କହୁଥିଲା ଅବା କଥା; / ମୃତ୍ୟୁ ଭିତରେ ମରେ ନାହିଁ ସ୍ୱାଧୀନତା ।"

ସବୁ କଷ୍ଟ ପାଇବା ସତ୍ତ୍ୱେ କୌଣସି ପ୍ରଲୋଭନର ବଶୀଭୂତ ହୋଇ ନିଜକୁ ବିଦେଶୀ ପାଦ ତଳେ ବିକି ଦେଇ ନାହାଁନ୍ତି ଜୟୀ ରାଜଗୁରୁ । ଦିନେ ଶତ ସିଂହର ବଳ ନେଇ ସେ ସଂଗ୍ରାମ କରୁଥିଲା । କିନ୍ତୁ ଆଜି ଧୂଳି ମାଟିରେ ମିଶିଯାଇଛି । ଏଇ ମାଟି ତା ପାଇଁ ସ୍ୱର୍ଗ ଥିଲା । ତିଳେ ହେଲେ ସେ ଅନୁଶୋଚନା କରିନାହିଁ । ଏବେ ମଧ୍ୟ ଖୋର୍ଦ୍ଧାର ପ୍ରତିଟି ଶିଳା ତାର ଜୟଗାନ କରୁଛି –

"ଦୁର୍ଗମ ଗିରି ତୁଙ୍ଗ ଚୂଡ଼ାରେ ରହିଁ / ପଥରେ ଭଗ୍ନ ଦୁର୍ଗର ପ୍ରତି ଶିଳା, / କେତେ ନିର୍ମମେ ପାଇଲା ସେ ଏଥି ଫାଶୀ, / ଏ ମାଟିର ସେ ଯେ ପୁଅ ପରି ପୁଅ ଥିଲା ।"

ଯୁବ ପାଇକମାନେ ଲଢ଼େଇ କରି ଆଜି ଅଶୀ ବର୍ଷରେ ପଦାର୍ପଣ କଲେ ମଧ୍ୟ ଯୁଦ୍ଧ କ୍ଷେତ୍ରକୁ ଯିବା ପାଇଁ ସେ ପଛ ଘୁଞ୍ଚା ଦିଏ ନାହିଁ । ସମସ୍ତଙ୍କ ଆହ୍ୱାନରେ ସେମାନେ ଆଗଭର ହୋଇଛନ୍ତି ଏବଂ ସମସ୍ତ ପାଇକ ସେନାର ପ୍ରେରଣାର ଉତ୍ସ ପାଲଟି ଯାଇଛନ୍ତି । କବି 'ଜାତିର ଡାକ' କବିତାରେ ଏ କଥାକୁ ଅତ୍ୟନ୍ତ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି -

"ଅଶୀତି ବର୍ଷୀୟ ବୃଦ୍ଧ ଚଲେ ଆଜି ରଣାଙ୍ଗନେ
ଜାତିର କ୍ରନ୍ଦନ ବାଣୀ ସହି ପାରିଲାନି କ୍ଷଣେ ।"

ଅକୁଣ୍ଠିତ ମନୋଭାବ ନେଇ କବି କୃଷ୍ଣଚନ୍ଦ୍ର ଏ ଜାତିକୁ ତଥା ଏ ମାଟିକୁ ଭଲ ପାଇଛନ୍ତି । ତେଣୁ ବୃଦ୍ଧ ମନ ଭିତରେ ମଧ୍ୟ ଜାଗ୍ରତ କରୁଛନ୍ତି ଯୁବ ସୁଲଭ ଗୁଣକୁ । ସେହିପରି 'ରଣ ଡାକ' କବିତାରେ ୨୦ଜଣ ପାଇକ ସୈନ୍ୟ କିପରି ପରସ୍ପର ଉଦାମତା ସହ ଖୋର୍ଦ୍ଧା ମାଟି ତଥା ଏହି ଜାତିକୁ ରକ୍ଷା କରିବା ପାଇଁ ସଦା ତତ୍ପର ତାହା ଏଥିରେ ବର୍ଣ୍ଣିତ । ଶତ୍ରୁର ସାମ୍ନା କରିବା ପାଇଁ ସେମାନେ ପରସ୍ପର ଅଣ୍ଟା ଭିଡ଼ି ବାହାରିଛନ୍ତି । ସେ କହିଚାଲିଛନ୍ତି -

"ସପ୍ତଦଶ ସୈନ୍ୟ - ରକ୍ତ ଆମର ଶିଥିଳ ନୁହେଁ
ଅଷ୍ଟାଦଶ ସୈନ୍ୟ - ଆମେ ବୀରମାଟି ଖୋର୍ଦ୍ଧା ପୁଏ" ।

'ସୈନିକର ଅନ୍ତିମ ମାଗୁଣି' କବିତାରେ ରହିଛି ପାଇକ ପୁଅଟିର ଏକ ବଳିଷ୍ଠ ଆହ୍ୱାନ । ସତେ ଯେମିତି ମନେ ହୁଏ ଖୋର୍ଦ୍ଧା ମାଟିର ପ୍ରତିଟି ରେଣୁରେ ରହିଛି ଅଗ୍ନି ଶଙ୍ଖ । ଯାହାକି ସମସ୍ତଙ୍କୁ ଉଦ୍‌ବୋଧିତ କରିବ ।

ସ୍ୱାଧୀନତା ପାଇଁ ଏଇ ଜାତି ତଥା ଶତ ସିଂହର ବଳ ନେଇ ଲକ୍ଷ ଲକ୍ଷ ତରୁଣ ପାଇକ ଖଣ୍ଡା ଧରି କିପରି ଆଗଭର ହୋଇ ଯୁଦ୍ଧ କରିଛନ୍ତି ଏବଂ ପରିଶେଷରେ ନିଜକୁ ଜଳାଞ୍ଜଳି ଦେଇଛନ୍ତି, ତାହା 'ଲାଲ୍ ମାଟିର ଖୋର୍ଦ୍ଧାଗଡ଼' କବିତାରେ ବର୍ଣ୍ଣିତ । ମନେ ପଡ଼ି ଯାଉଛି ଜୟୀ ରାଜଗୁରୁଙ୍କର ଫାଶୀ ପାଇବାର କରୁଣ ଗାଥା । ପୁଣି ବୀର ବକ୍ସି ଜଗବନ୍ଧୁଙ୍କ ଅସି ଝଙ୍କାର । ଏ ବୀର ମାଟିର ମୁକ୍ତି କେତନ ଉଡ଼ାଇବା ପାଇଁ ତାଙ୍କର ଲକ୍ଷ୍ୟ । ସବୁର ମୂକ ସାକ୍ଷୀ ହେଉଛି ଏଇ

ବରୁଣେଇ ପାହାଡ଼ । ନବ ଯୌବନ ପ୍ରାପ୍ତ ପାଇକ କିଶୋରୀ ମଧ୍ୟ ସଂଗ୍ରାମ ପାଇଁ ପଛ ଘୁଞ୍ଚା ଦେଇନି - "ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ / x xxxx xxxxxxx / ଶତ ଶହୀଦର ପୁଣ୍ୟ ଶୋଣିତ ବୋଳା ଏ ମାଟି / ଶତ ସର୍ଦ୍ଦାର ବୀର ଖୋର୍ଦ୍ଧାର ଏଇଠି ଦେଇଚି ବକ୍ଷ କାଟି ।"

ପାଇକ ଟୋକା କଟୀରେ ଖଣ୍ଡା ଝୁଲାଇ କିପରି ସଂଗ୍ରାମକୁ ଯାଉଛି ଏବଂ ପରିଶେଷରେ ଶତ୍ରୁ ପକ୍ଷର ଖଣ୍ଡାରେ ଟଳି ପଡ଼ିଛି ତାହା 'ପାଇକ ଟୋକା' କବିତାରେ ବର୍ଣ୍ଣିତ । ମନ୍ଦାକିନୀ ନଦୀ ନିକଟବର୍ତ୍ତୀ ସମସ୍ତ ଲଟାବୁଦା ମଧ୍ୟ ଏହାର ମୂକ ସାକ୍ଷୀ ହୋଇ ରହିଛି ଏବଂ ପାଇକ ପୁଅର ବୀରତ୍ୱ ଓ ଆତ୍ମ ବଳିଦାନର କଥା ପ୍ରତିଧ୍ୱନିତ୍ୱ ହେଉଛି -

"ଶିବିରୁ ଆସିଲା ଡାକରା କେତେ ପଛକୁ ସେ ଫେରି ଚହିଁନିରେ
ରକତ ସିନାନେ ବୁଡ଼ିଚି ଦିହ ଓଠଫେଇ ବାରେ କହିନିରେ ।"

ଯୁଦ୍ଧ ପରବର୍ତ୍ତୀ ଖୋର୍ଦ୍ଧାଗଡ଼ର ନିଷ୍କଳତା ଦେଖି ଅତ୍ୟନ୍ତ ମର୍ମାହତ ହୋଇଛନ୍ତି କୃଷ୍ଣଚନ୍ଦ୍ର ତ୍ରିପାଠୀ । ସତେ ଯେମିତି ତାଙ୍କ ଶିରା ପ୍ରଶିରାରେ ପାଇକମାନଙ୍କ ଯୁଦ୍ଧ ବୀରତ୍ୱ ପ୍ରବାହିତ ହେଉଛି । ଦୁର୍ଗରେ ଫୁଟୁନାହିଁ ବନ୍ଧୁକ ଓ ତୋପ । ଶୁଭୁ ନାହିଁ ଘୋଡ଼ାର ଟପ୍ ଟପ୍ ଶବ୍ଦ । ଭଗ୍ନ ଦୁର୍ଗ ଶିଳା ହିଁ ମୂକ ସାକ୍ଷୀ ହୋଇ ଠିଆ ହୋଇଛି । ପାଇକ ବଧୂଟି କିପରି ବୀର ବେଶରେ ତାର ସ୍ୱାମୀକୁ ସଜେଇ ରଣ କ୍ଷେତ୍ରକୁ ଯିବା ପାଇଁ ପ୍ରବର୍ତ୍ତାଇ ଥିଲା ତାହା 'ପାଇକ ବଧୂର ଉଦ୍‌ବୋଧନ' କବିତାରେ ଦର୍ଶାଇଛନ୍ତି - "ତରୁଣୀ ବକ୍ଷଲାଗି ପ୍ରିୟତମ ଜନ୍ମ ନୁହଇ ତବ / ଜନ୍ମଭୂଇଁର ମଙ୍ଗଳ ଲାଗି ଜୀବନ ଦେବାକୁ ହବ ।"

ସେ ବୀରାର ଯେଉଁ ଉଦ୍‌ବୋଧନୀ ବାର୍ତ୍ତା ତାହା ଏ ମାଟିର ପ୍ରତିଟି ରେଣୁରେ ପ୍ରତିଫଳିତ । ସେହିପରି ଯୁଦ୍ଧ କ୍ଷେତ୍ରକୁ ଯିବା ପାଇଁ ନିଜର ସ୍ୱାମୀକୁ ପାଇକ ବଧୂଟି କିପରି ଉଦ୍‌ବୋଧନୀ ବାଣୀ ଶୁଣେଇଛି ତାହା 'ପାଇକ ବାଳାର ଅର୍ଘ୍ୟ' କବିତାରେ ପ୍ରତିଫଳିତ ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀ କେବଳ ଖୋର୍ଦ୍ଧା ମାଟିର ତରୁଣ, ତରୁଣୀ ମାନଙ୍କ ଜୟଗାନ କରିନାହାଁନ୍ତି । ଭୁଜବଳ ବୁଦ୍ଧୀର ମଧ୍ୟ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରିବାର ସାମର୍ଥ୍ୟକୁ ଦର୍ଶାଇଛନ୍ତି । ମାଟି କାନ୍ଥ ଘର ଭିତରେ ରହୁଥିବା ଅଦମ୍ୟ ସାହାସିକତାର ରୂପରେଖ ଆମ ସାମ୍ନାକୁ ଆସେ । ଶତ୍ରୁ ଦେଖି ନିଜେ

କଟୀରେ ବସ୍ତ୍ରକୁ ଗୁଡ଼ାଇ ଖଣ୍ଡା ଧରି ଆଗଭର ହୋଇଯାଏ ଲଢ଼େଇ କରିବା ପାଇଁ । ଏପରିକି ନିଜ ପୁଅକୁ ମଧ୍ୟ ସାମିଲ କରିଦିଏ । ଶତ୍ରୁ ପକ୍ଷ ଖଣ୍ଡାରେ ନିଜ ସ୍ତନ୍ୟରୁ ରକ୍ତ ପ୍ରବାହିତ ହେବା ସତ୍ତ୍ୱେ ଶତ୍ରୁମାନଙ୍କ ଶିରକୁ ଛେଦନ କରିଦିଏ । କିନ୍ତୁ ପରିଶେଷରେ ମା' ପୁଅ ଏହି ଜାତି ପାଇଁ ଆତ୍ମଦାନ ଦେଇଥାନ୍ତି । ଖୋର୍ଦ୍ଧା ମାଟିର ଏହି ଗାଥାକୁ 'ଭୁଜବଳ ବୁଢ଼ୀ' କବିତା ମାଧ୍ୟମରେ ସୂଚାଇଛନ୍ତି କବି କୃଷ୍ଣଚନ୍ଦ୍ର । ସେହିପରି 'ସ୍ମୃତି ତା'ର ଅକ୍ଷୟ' କବିତାରେ ଶତ୍ରୁ ଦ୍ୱାରା ପୁଅଟି ନିଧନ ହୋଇପଡ଼ିଥିଲେ ମଧ୍ୟ ନିଜର ବୃଦ୍ଧ ପିତା ହତୋତ୍ସାହ ନ ହୋଇ ସାବାସ୍ ପୁଅ ବୋଲି କହିଛନ୍ତି । ମା ମଧ୍ୟ କହି ଉଠିଛି ଯେ ତା'ର ସ୍ତନ୍ୟ ଦେବା ବୃଥା ହୋଇନାହିଁ । ପତ୍ନୀ ମଧ୍ୟ କହିଚାଲିଚି ଇଏ ହେଉଛନ୍ତି ତା'ର ଉପଯୁକ୍ତ ସ୍ୱାମୀ । ରାଜା ମଧ୍ୟ ଶତ ପ୍ରଶଂସାରେ ପ୍ରଶଂସିତ କରିଛନ୍ତି ସେହି ପାଇକ ପୁଅକୁ ।

ଯୁଦ୍ଧ କ୍ଷେତ୍ରକୁ ଯିବାବେଳେ ଯୁବକଟି ମାଆ ଠାରୁ ଆଶୀର୍ବାଦ ଭିକ୍ଷା କରୁଛି 'ଯୁଦ୍ଧ ଯାତ୍ରୀ' କବିତାରେ । ମନରେ କୌଣସି ଦ୍ୱିଧା ନ ରଖି ସ୍ୱତଃପ୍ରବୃତ୍ତ ଭାବେ ସଂଗ୍ରାମ କରିବା ପାଇଁ ଆଗଭର ହେଉଛି ଯୁବକଟି । କବିଙ୍କ ଭାଷାରେ -

"ବିଜୟ-ସିନ୍ଦୂର ଟିକା ବୋଳିଦିଅ ଶିରେ ମମ

କର ମୋରେ ଆଶୀର୍ବାଦ, ମୋରେ ଯେ ଦେଇଚ ସ୍ତନ୍ୟ" ।

'ପାଇକ ପ୍ରହରୀ' କବିତାରେ କୌଣସି ଶତ୍ରୁକୁ ଦୁର୍ଗ ଭିତରେ ପ୍ରବେଶ ନ କରିଦେବା ପାଇଁ ପାଇକ ପ୍ରହରୀର ଶପଥ କଥା କୁହାଯାଇଛି । କିନ୍ତୁ ଶତ୍ରୁ ପକ୍ଷର ଗୁଳିରେ ଟଳି ପଡ଼ିଛି ପାଇକ ପ୍ରହରୀ । ତାର ଓଠ ସତେ ଯେମିତି କହିଉଠୁଛି -

'ଫେରିଯାଅ, ଫେରିଯାଅ'

କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ତରବାରୀ ଧରି ଯୁଦ୍ଧ କ୍ଷେତ୍ରକୁ ଯାଇନାହାନ୍ତି ସତ । କଲମ ରୂପକ ତରବାରୀରେ ଶୁଣାଇଛନ୍ତି ରଣଦୁନ୍ଦୁଭି, ଯାହାକି ଉଦ୍‌ବେଳିତ କରିଛି ସମସ୍ତ ପାଠକ ମାନଙ୍କୁ ।

ଆଶ୍ଚର୍ଯ୍ୟର କଥା 'ପାରିବିନି ଦେଇ ପ୍ରତିଦାନ' କବିତାରେ ଜଣେ ଭିକ୍ଷୁକ ମନରେ ରହିଛି, ଅଭୂତପୂର୍ବ ଜାତୀୟତା ବାଦ ଓ ମାନବବାଦ । ଯେତେବେଳେ ସୈନ୍ୟ ଶିବିରରେ ଖାଦ୍ୟ ପାଇଁ ଭାଲେଣି ପଡ଼ିଛି, ସେତେବେଳେ ଭିକ୍ଷା ବୃତ୍ତି କରି କିଛି ଚାଉଳ ସଂଗ୍ରହ କରି ଆଣିଛନ୍ତି ସେମାନଙ୍କୁ ଦେବା ପାଇଁ । କି ବରାଟ ହୃଦୟ ଭିକ୍ଷୁକର । ସେ ହୃଦୟର ମୂଲ୍ୟ ନିର୍ଦ୍ଧାରଣ କରିବା ଦୁରୂହ ବ୍ୟାପାର ।

ପରିଶେଷରେ ସେନାପତି ଆସି ବୃଦ୍ଧଙ୍କ ପଦରେଣୁ ଆଣି ମସ୍ତକରେ ଲେପନ କରିଛନ୍ତି ଏବଂ କହିଛନ୍ତି – "ସେନାପତି ଆସନୁ ଓହ୍ଲାଇ ବୃଦ୍ଧର ସେ ପଦରେଣୁ ଆଣି / ଶିରେ ବୋଳି ଗଭୀର ପୁଲକେ କହିଲେକ ଦେଖାଇ ସମ୍ମାନ / ତୁମ ବୀର ହୃତ୍‌ପିଣ୍ଡର ପ୍ରକୃତ ଏ ଉଷ୍ମ ରକ୍ତବିନ୍ଦୁ / ଜନ୍ମେ ଜନ୍ମେ ଏ ଦାନର ପାରିବିନି ଦେଇ ପ୍ରତିଦାନ !"

ଖୋର୍ଦ୍ଧା ଗଜପତି ରାଜାଙ୍କ ପ୍ରଧାନ ସେନାପତି ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ସେନାମାନେ ଇଂରେଜମାନଙ୍କ ବିରୁଦ୍ଧରେ ଲଢ଼େଇ କରିଥିଲେ । ସେ ହେଉଛନ୍ତି ଜାତିର ମୁକୁଟ । ତାଙ୍କ କପାଳରେ ସ୍ୱର୍ଣ୍ଣ ଦ୍ୟୁତି । ଦେଶର ସ୍ୱାର୍ଥ ପାଇଁ ନିଜକୁ ସମର୍ପିତ କରିଦେଇଥିଲେ । ଇଂରେଜ ସେନାପତି ନିର୍ଦ୍ଦେଶ କ୍ରମେ ନିରସ୍ତ୍ର ଭାବେ ଉପସ୍ଥିତ ହୋଇଥିଲେ ମଧ୍ୟ କିନ୍ତୁ ଗୁଡ଼ାଇ କରି ରଖିଥିବା ତାଙ୍କ ପଗଡ଼ି ଭିତରୁ ବିରାଟ ଖଣ୍ଡାକୁ ଦେଖାଇ ପାରିଥିଲେ । ଇଂରେଜମାନେ ଆଶ୍ଚର୍ଯ୍ୟ ହୋଇଥିଲେ ବକ୍ସି ଜଗବନ୍ଧୁଙ୍କ ବୀରତ୍ୱ ଦେଖି । ଏବେ ବି ତାଙ୍କର ଗୁଣଗାନ ପ୍ରତିଧ୍ୱନିତ ହେଉଛି, ଚିତ୍ରକୂଟ ପାହାଡ଼ତଳେ ତଥା ବରୁଣେଇ ପାହାଡ଼ର ଖୋଲ ଭିତରେ । କବି ନିଜକୁ ତାଙ୍କ ସହ ସାମିଲ ହେବା ପାଇଁ ଇଚ୍ଛା କରିଛନ୍ତି ଏବଂ ତାଙ୍କ ଗୁଣଗାନ କରିବା ପାଇଁ ଶତମୁଖୀ ହୋଇ ଉଠିଛନ୍ତି । କବିଙ୍କ ଭାଷାରେ –

"ଅଗ୍ନି ପାରାବାର ତୁମେ ଯାଇଚ ସରଜି / ଶତ ସୂର୍ଯ୍ୟ ପରାକ୍ରମ ଢାଳି, / ସେଇ ଅଗ୍ନି ପାରାବାର ଆଗ୍ନେୟ ତରଙ୍ଗେ / ଏ ଜାତି ଚ୍ଛଳିଛି, ତାର ଡଙ୍ଗା ଚ୍ଛଳି ଚ୍ଛଳି !" (ବକ୍ସି ଜଗବନ୍ଧୁ ବିଦ୍ୟାଧର)

ସେହିପରି ବାଣପୁର ମାଟିର ବୀର ସନ୍ତାନ କୃତ୍ତିବାସ ପାଟସାଣୀଙ୍କ ଏକ ନିର୍ଭୀକ ଉଦାତ୍ତବାଣୀ ପ୍ରକାଶ ପାଇଛି । ସେ ହିଁ ୧୮୩୬ ମସିହାରେ ନେତୃତ୍ୱ ନେଇ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ଦେଶକୁ ସ୍ୱାଧୀନତା ଦେବା ଥିଲା ତାଙ୍କର ଉଦ୍ଦେଶ୍ୟ । ତାଙ୍କୁ ଇଂରେଜମାନେ କଳା ପାଣି ଠାରେ ବନ୍ଦୀ କରିଛନ୍ତି ସତ କିନ୍ତୁ ତାଙ୍କ ମନ ଭିତରୁ ଦେଶ ମାତୃକା ଭାବ ତୁଟି ଯାଇନାହିଁ । ବଙ୍କାଡ଼ଗଡ଼କୁ ନିଜ ଅକ୍ତିଆରରେ ରଖିବା ପାଇଁ ଅହରହ ଚେଷ୍ଟିତ ସେ । ବନ୍ଦୀ ଜୀବନ ଭିତରେ ସ୍ୱାଧୀନ ଭାରତ କଥା ଚିନ୍ତା କରିଛନ୍ତି । କାହା ପାଖରେ ସେ ନତ ମସ୍ତକ ହୋଇନାହାଁନ୍ତି । ସବୁ ଦୁର୍ବିସହ ଭିତରେ ମଧ୍ୟ ସିଂହର ଠାଣି ପରିପ୍ରକାଶ । ଜାତୀୟତା ମନୋଭାବରେ ପରିପୂର୍ଣ୍ଣ କବି କୃଷ୍ଣଚନ୍ଦ୍ର ଖୁବ୍ ଚମତ୍କାର ଭାବରେ କୃତ୍ତିବାସ ପାଟସାଣୀଙ୍କ ବକ୍ତବ୍ୟକୁ 'କଳା ପାଣିର ବନ୍ଦୀ' କବିତା ମାଧ୍ୟମରେ ଉପସ୍ଥାପନ କରିଛନ୍ତି –

"ଅନୁଗ୍ରହ ମୁଁ ମାଗୁନି ନୁଆଇଁ ମଥା / ଯାହା ମୁଁ କହୁଚି ସତ୍ୟ ମରମ କଥା, / ଭିକ୍ଷା କରିବା ଯାଇ କାହା ପାଦତଳେ / ଲେଖା ନାଇଁ ବୀର ପାଟସାଣି ଶୋଣିତରେ !"

ବୀର ପାଇକ ପୁଅମାନେ ଯେପରି ଦେଶ ପାଇଁ ଲଢ଼େଇ କରିବାକୁ ପାଆନ୍ତି , ସେହିପରି ପତ୍ନୀ ତଥା ବୀର ରମଣୀଟି ନିଜର ଛାତିକୁ ଫୁଲାଇ ଦିଏ ଏବଂ ଦାମ୍ଭିକତା ପ୍ରକାଶ କରେ । ସେ କହି ଉଠେ-

'ଯୁଦ୍ଧ ଲାଗିଲା ଯୁଦ୍ଧ ଲାଗିଲା ଦଶଦିନ ଦଶରାତି / ପ୍ରିୟତମ ମୋର ଡରିନି ନିମେଷେ ଇସ୍ପାତ୍ ପରି ଛାତି ! / ଯୁଦ୍ଧ ଭୂଇଁର ଏ ପାଖୁ ସେ ପାଖ ଯାଇଚି ଗରବେ ଘୁରି / ଦେଶ ଯେ ଆମର ଜୀବନ ଗର୍ବ ଯାଅନି ଯାଅନି ଭୁଲି ।" (ଛାତି ଫୁଲିଯାଏ)

୧୮୧୭ ମସିହାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ହୁଏ । ଇଂରେଜମାନଙ୍କ ସହ ସେ ଯୁଦ୍ଧ କରନ୍ତି । ଏହି ଯୁଦ୍ଧରେ ବହୁ ପାଇକ ସୈନ୍ୟ ମୃତାହତ ହୁଅନ୍ତି । ବକ୍ସି ଜଗବନ୍ଧୁ ହାରିଗଲେ ସତ କିନ୍ତୁ ଦେଶର ସ୍ୱାଧୀନତା ପାଇଁ ପାଇକମାନଙ୍କ ଯେଉଁ ଲଢୁଆ ମନୋଭାବ ତାହାକୁ କବି ସୂଚାଇ ଦେଇଛନ୍ତି 'ଆହୂତି' କବିତା ମାଧ୍ୟମରେ -

"ଆମେ ସେଇ ବୀର ଖଣ୍ଡାୟତରେ ଆମେରେ ପାଇକ ଜାତି

ନିର୍ବଳ ନୁହେ, ନିଷ୍ପ୍ରଭ ନୁହେ ଆମ ନିର୍ଭୀକ ଛାତି ।"

ପ୍ରକୃତରେ ଏଇ ଖୋର୍ଦ୍ଧା ବୀର ମାଟିରେ ବୀର ପାଇକମାନେ ଦେଶ ମାତୃକା ପାଇଁ ଆଗଭର ହୋଇଛନ୍ତି । ନିଜ ମାଟି ମାଆ ପାଇଁ ତାଙ୍କ ଜୀବନ ତୁଚ୍ଛ ବୋଲି ମନେ କରିଛନ୍ତି । ତେଣୁ କବି କହିଛନ୍ତି -

"ସୁପ୍ତ ଜାତିର ସପନ ଭାବିଲା ଗୁପ୍ତ ଶକତି ତାର

ଆଗ୍ନେୟ ଗିରି ଅଗ୍ନି ପରାଏ ଛୁଟିଲାରେ ବାରବାର" ।

ମୁକ୍ତିର ଗୀତ ଗାନ କରି ଆଗେଇ ଚାଲିଛନ୍ତି ବୀର ପାଇକମାନେ । ନିଜର ପୁତ୍ର ପତ୍ନୀ ଓ ସମସ୍ତ ଆତ୍ମୀୟସ୍ୱଜନର ମୋହକୁ ଛାଡ଼ି ଯୁଦ୍ଧ କ୍ଷେତ୍ରକୁ ଯାଇଛନ୍ତି ଏବଂ ପରିଶେଷରେ ରକ୍ତ ରଞ୍ଜିତ ହୋଇ କେଉଁ ବଣ ଜଙ୍ଗଲର ଅପାଂକ୍ତେୟ ସ୍ଥାନରେ ପଡ଼ିଛନ୍ତି । କିନ୍ତୁ ସେମାନେ ଅମର ହୋଇଯାଇଛନ୍ତି । କବିଙ୍କ ଭାଷାରେ -

"ସେଦିନ ଯାଇଚି ସେ କାଳ ଯାଇଚି ନାଇଁ ସେ ଯୁଦ୍ଧ ସତ

ସେ ବୀର ହୃଦୟ ତଳେ ଏ ଜାତିର ମଥା ହୋଇଯାଏ ନତ" ।

'ବିପ୍ଳବୀ କୃତ୍ତିବାସ' କବିତା ମାଧ୍ୟମରେ କୃତ୍ତିବାସ ପାଟସାଣୀଙ୍କ ବୀରତ୍ୱ, ଶକ୍ତି ସାମର୍ଥ୍ୟ ଓ ଫିରିଙ୍ଗିମାନଙ୍କୁ ହଟାଇବା ପାଇଁ ଅଦମ୍ୟ ପ୍ରଚେଷ୍ଟାକୁ ରୂପାୟିତ କରିଛନ୍ତି କବି କୃଷ୍ଣଚନ୍ଦ୍ର । ମୁଖମଣ୍ଡଳରେ ଯେତିକି କନକ ଜ୍ୟୋତି ସେତିକି କେଶରୀ ଠାଣି ଦେଖିବାକୁ ମିଳିଛି । ଗୋଟାଏ ପାଖରେ ନବଯଉବନୀ ପତ୍ନୀ ଅନ୍ୟ ପାଖରେ ଜନମ ମାଟି ପାଇଁ ଅହେତୁକ ମୋହ । ତେଣୁ ପତ୍ନୀ ଉଦ୍ଦେଶ୍ୟରେ ସେ କହି ଉଠିଛି -

"ତୁମ ଦେହେ ଢ଼ଳି ଘରକଣେ ପଶି ରହିବି ବଇରୀ ଭୟେ
ପାଇକ ରକତ ଅଛି ଯେ ଛାତିରେ ନିମିଷେ ତ ନାଇଁ ସହେ" ।

ସେତେବେଳେ ପୁଣି ଫିରିଙ୍ଗି ମାଲିକ କହିଚାଲିଛି ଯିଏ ପାଟସାଣୀକୁ ଧରାଇ ଦେବ, ତାକୁ ବହୁ ଜାଗିରି ମିଳିବ । କେହି ବେଇମାନ କରିନାହାନ୍ତି ଏଇ ବୀର ପୁରୁଷକୁ ଧରାଇ ଦେବାପାଇଁ । ବେକରେ ଫୁଲମାଳ, ମଥାରେ ସିନ୍ଦୂର, ଯୋଡ଼ି ନାଗରାର ବୀର ବାଜା, ପୁଣି କୁଳ ଭୁଆସୁଣୀଙ୍କ ହୁଳହୁଳି ପାଟସାଣୀଙ୍କ ବୀରତ୍ୱକୁ ଆହୁରି ମଜ୍‌ଭୁତ କରିଦେଇଛି । ଛୋଟ ପିଲାଠାରୁ ଆରମ୍ଭ କରି ସମସ୍ତ ବଡ଼ ମାନଙ୍କ ଭିତରେ ଫିରିଙ୍ଗିମାନଙ୍କୁ ବିତାଡ଼ିତ କରିବାର ଉତ୍ସାହ ଉଦ୍ଦୀପନା ଦେଖା ଦେଇଛି । କିନ୍ତୁ ଦେଶ ଦ୍ରୋହୀ କାମ କରିଛି ପାଟସାଣୀଙ୍କ ଶ୍ୱଶୁର । ଭୋଜନ କରିବା ଅବସ୍ଥାରେ ହିଁ ଧନଲୋଭୀ ବେଇମାନ ଶ୍ୱଶୁର ଫିରିଙ୍ଗି ମାନଙ୍କ ହାତରେ ଧରାଇ ଦେଇଛି ଜ୍ୱାଇଁ ପାଟସାଣୀଙ୍କୁ । କବିଙ୍କ ଭାଷାରେ -

"କହିଲେ ଶଶୁର ମୁହଁକୁ ଅନାଇଁ କି ଅବା ନକଲ ତମେ ?
ଦେଶ-ଲୋଭ ତହୁଁ ଧନଲୋଭ କଣ ଏତେ ବଡ଼ କଲ ମନେ ?"

ହାତକଡ଼ା ପଡ଼ି ଚାଲିଛନ୍ତି ପାଟସାଣୀ । ଏହା ଦେଖି ସମସ୍ତଙ୍କ ଆଖିରୁ ଲୋତକ ଝରି ଆସିଛି । ବାଣପୁର ମାଟିର ସମସ୍ତ ବୈଭବ ମାନସପଟରେ ନାଚି ଯାଉଛି । ଶେଷଥର ପାଇଁ ଚାହିଁଛନ୍ତି ଆପଣାର ଜନ୍ମ ଭୂଇଁ ତଥା ବିଲ, ବନ, ଶୋଲରି, ଭାଲେରି ପାହାଡ଼କୁ । ଅନ୍ତରରେ ସମସ୍ତ ମୋହ ଓ କୋହକୁ ଚାପି ରଖି କହୁଛନ୍ତି -

"ଆଉ ଫେରିବିନି ମୋ ପ୍ରିୟ ମାଟିରେ କହି ପ୍ରଣିପାତ କରି
ଚାଲିଲେ ପାଟ୍‌ସାଣୀ ହାତେ ହାତକଡ଼ା ଲାଗିଚି ତ ସେଇପରି ।"

ପାଇକ ମାଟିର ଗାଥା ପୁସ୍ତକର ଶେଷ କବିତାଟି ହେଉଛି 'ପାଇକ ବାହିନୀର ପଦକ୍ଷେପ ସଙ୍ଗୀତ' ଏଥିରେ ପାଇକମାନଙ୍କ ଚରିତ୍ର ଗାନ ଉଲ୍ଲିଖିତ । ସବୁ ବାଧା ବନ୍ଧନକୁ ଏଡ଼ାଇ ଦେବା ପାଇଁ ଏଥିରେ ପ୍ରକାଶ ପାଇଛି ପାଇକ ସୈନ୍ୟଙ୍କ ବାର୍ତ୍ତା । ସମସ୍ତ ଦୁର୍ଗମ ଗିରି କନ୍ଦର ବଣ ପାହାଡ଼କୁ ଅତିକ୍ରମ କରି ଚାଲିବା ପାଇଁ ଦେଇଛନ୍ତି ବଳିଷ୍ଠ ଆହ୍ୱାନ । କବିଙ୍କ ଭାଷାରେ -

"ଆମେ ଦୁର୍ମଦ ଆମେ ଦୁର୍ଦ୍ଧର୍ଷ / ଦେଶ ଲାଗି ପଛେ ହେବୁ ନିର୍ବଂଶ / ପାରିବୁନି ରହି ଜନ୍ମେ ଜନ୍ମେ ଶତ୍ରୁ ଚରଣ ଚାଟି / ଚାରି ହତିଆର ବଂଧା ଆମେରେ ପାଇକ ସୈନ୍ୟ ଜାତି ।"

କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରକୃତରେ ପାଇକ କବି । ନିଜେ ହୁଏତ ପାଇକ ନଥିଲେ କିନ୍ତୁ ତାଙ୍କ ଭିତରେ ପାଇକ ମାନଙ୍କ ତ୍ୟାଗ, ବୀରତ୍ୱ, ଆତ୍ମବଳିଦାନ ଜୀବନ୍ତ ହୋଇ ଉଠିଛି । ସେ ତାଙ୍କର ଲେଖନୀକୁ ତରବାରୀରେ ପରିଣତ କରିଦେଇଛନ୍ତି । ଖୋର୍ଦ୍ଧା ମାଟି କିମ୍ବା ଓଡ଼ିଶା ନୁହେଁ ସାରା ଭାରତ ବର୍ଷରେ ଇଂରେଜଶାସନ ଅମଳର କଥା, ପ୍ରଥମ ସହିଦ ଜୟୀ ରାଜଗୁରୁଙ୍କ ବ୍ୟକ୍ତିତ୍ୱକୁ ନେଇ ସେ ଯେପରି କବିତା ରଚନା କରିଛନ୍ତି, ସେହିପରି ସେ ପାଇକ ବଧୂ, ପାଇକ ଯୁଦ୍ଧ ଅଭିଯାନ, ପାଇକ ସମାଧି, ବିଭିନ୍ନ ଗଡ଼ ଓ ଦୁର୍ଗର ମହିମା, ପାଇକ ମାନଙ୍କ ଆକାଂକ୍ଷା, ପାଇକ ବୀର କୃତ୍ତିବାସ ପାଟସାଣୀ, ବକ୍ସି ଜଗବନ୍ଧୁ, ତାପଙ୍ଗ ଦଳବେହେରା ଆଦିଙ୍କ ଆତ୍ମ ବଳକୁ ନେଇ ମଧ୍ୟ କବିତା ରଚନା କରିଛନ୍ତି । ତାହା ଅତୀତ ହୋଇଥିଲେ ବି, ଯେପରି ପାଲଟି ଯାଇଥିଲା ହୃତ୍ ଗୌରବ, ଓଡ଼ିଆ ଜାତିର ଗୋଟିଏ ଗୋଟିଏ ଜୀବନ୍ତ ଅଗ୍ନି ଗର୍ଭ ଧ୍ୱନି । ତାର ଭାଷା, ଛନ୍ଦ ଓ ଆବେଦନ ସମଗ୍ର ଓଡ଼ିଆ ଜାତି ଭିତରେ ନବଜାଗରଣ ପାଇଁ ପ୍ରେରଣା ସୃଷ୍ଟି କରେ ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଯଦି ମାଟି ଓ ମଣିଷକୁ ନେଇ ଅନେକ କବିତା ରଚନା କରିଛନ୍ତି ଓ ପ୍ରକାଶ ପାଇଛି କବିତା ପୁସ୍ତକ କିନ୍ତୁ ସବୁ ଭିତରେ ତାଙ୍କ ପାଇକ କବିତା ବଳି ତାଙ୍କୁ ପ୍ରଦାନ କରିଛି ସ୍ୱତନ୍ତ୍ର ମହିମା ଓ ମହତ୍ତ୍ୱ । ପାଇକ କବିତା ଗୁଡ଼ିକରେ ଜାତୀୟ ସଂପ୍ରୀତି ଓ ପାଇକମାନଙ୍କର ଦେଶ ପାଇଁ ଆତ୍ମ ବଳିଦାନ ତାଙ୍କ ଭିତରେ ଯେଉଁ ଉଦାତ୍ତ କବିତାର ରାଗିଣୀ ତୋଳିଛି ତାଙ୍କର ଅନ୍ୟାନ୍ୟ କବିତା ଗୁଡ଼ିକରେ ମଧ୍ୟ ଫୁଟି ଉଠିଥିବା ଲକ୍ଷ୍ୟ କରାଯାଏ । ତେଣୁ ଏପରି ଜଣେ କ୍ରାନ୍ତ ଦର୍ଶୀ ଓଡ଼ିଆ ପ୍ରେମୀ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଯେ ଓଡ଼ିଆ ସାହିତ୍ୟରେ ଏକ ଅବିସ୍ମରଣୀୟ ପ୍ରତିଭା ହୋଇ ରହିବେ, ଏଥିରେ ଦ୍ୱିରୁକ୍ତିର ପ୍ରଶ୍ନ ନାହିଁ ।

# ମାଟି ଆଉ ମଣିଷର ମହିମ୍ନ ସ୍ତବ : କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ କବିତା

ଡ. ସତ୍ୟ ଷଡ଼ଙ୍ଗୀ

ପଞ୍ଚମ ଶ୍ରେଣୀର ଛାତ୍ରଟିଏ ସ୍କୁଲର ଅଫିସ ପ୍ରକୋଷ୍ଠକୁ ପଶିଯାଇ ତା' ହାତଲେଖା କବିତାର ପାଣ୍ଡୁଲିପିଟିକୁ ଶିକ୍ଷକମାନଙ୍କ ସମ୍ମୁଖରେ ଥୋଇ ସାହସ ବାନ୍ଧି କହିଥିଲା, "ମୁଁ ଏ ବହିଟି କୌଣସି ପ୍ରେସକୁ ଦେବି ଛାପିବା ପାଇଁ । ଆପଣମାନେ ଟିକିଏ ସଂଶୋଧନ କରିଦିଅନ୍ତୁ ।" ସେ ହେଉଛନ୍ତି ଅତିବଡ଼ୀ ଜଗନ୍ନାଥ ଦାସ ସମ୍ମାନରେ ସମ୍ମାନିତ ବରେଣ୍ୟ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ (୧୯୧୧- ୧୯୯୭) । ସ୍କୁଲଟି ହେଉଛି ବାଣପୁର ମଧ୍ୟ ଇଂରାଜୀ ବିଦ୍ୟାଳୟ । ବକୁଳବନର କୋକିଳ କବି ଗୋଦାବରୀଶ ମିଶ୍ରଙ୍କ ପ୍ରୋତ୍ସାହନରେ ପ୍ରତିଷ୍ଠିତ ଏ ବିଦ୍ୟାଳୟର ବିଲକ୍ଷଣ ହେଲା, ଏଠାରେ ପ୍ରସ୍ତୁତ ହୋଇଛି ଯଶସ୍ୱୀ କବି ଗୋଦାବରୀଶ ମହାପାତ୍ର ଓ କବି ଡକ୍ଟର ମାୟାଧର ମାନସିଂହଙ୍କ ଜନ୍ମଜାତକ । କବିମାନଙ୍କ ଏନ୍ତୁଡ଼ିଶାଳରୁ ଆଉ ଜଣେ କବିଙ୍କ ଆବିର୍ଭାବର ସମ୍ଭାବନା ସେଦିନ ସ୍ପଷ୍ଟ ହୋଇଗଲା । ପୂର୍ବସୂରୀ ଗୋଦାବରୀଶ ମିଶ୍ର, ଗୋଦାବରୀଶ ମହାପାତ୍ର ଓ ମାୟାଧର ମାନସିଂହଙ୍କ ଅଲକ୍ଷ୍ୟ ଅନୁପ୍ରେରଣାରେ ତରୁଣ କୃଷ୍ଣଚନ୍ଦ୍ର ଦେଖିଥିଲେ କବି ହେବାର ସ୍ୱପ୍ନ ଆଉ ତାହାକୁ ସାକାର କରିବା ପାଇଁ ସମଗ୍ର ଜୀବନ ଉତ୍ସର୍ଗ କରିଥିଲେ । କ୍ୱବିତା ପ୍ରତି ଏତେ ସମର୍ପଣ ଭାବ ବିରଳ । ଆଜୀବନ ଅସୁମାରି କବିତା ଲେଖି ସୁଦ୍ଧା ତାଙ୍କର ପରିତୃପ୍ତି ନଥିଲା, କ୍ଳାନ୍ତି ନଥିଲା କି କବିତା ପ୍ରତି ବୈରାଗ୍ୟ ମଧ୍ୟ ନଥିଲା; ବରଂ ସେ ଅନୁଭବ କରୁଥିଲେ କବିତା ପାଇଁ ଗୋଟିଏ ଜନ୍ମ ନିଅଣ୍ଟ-

"ଏ ଜନମେ ଆରଜନ୍ମେ ଶତଜନ୍ମ ପରେ / ଗାଉଥିବି ସୀମାହୀନ କବିତା, ମୁଁ କବି / କବିତାରୁ ଯେ ଅମୃତ ପାଇଚି ଧରାରେ / ସେଇ ମୋର କୋଟିନିଧି କାଳେ କାଳେ କାଳେ ।" (ହତଭାଗ୍ୟ ସେଇ, ଆତ୍ମଲିପି)

କୃଷ୍ଣଚନ୍ଦ୍ର ତ୍ରିପାଠୀ କୋଟି କବିତାର କବି କିନ୍ତୁ ତାଙ୍କ କବିତାର ପ୍ରମୁଖ ଭାବ ଗୋଟିଏ : ମାଟି ଓ ମଣିଷ । ଏ ଶୀର୍ଷକରେ ତାଙ୍କର ଗୋଟିଏ ଶକ୍ତିଶାଳୀ କବିତା 'ସାଧନାର ସ୍ୱପ୍ନ' ପୁସ୍ତକରେ ସ୍ଥାନୀତ । କବିତାଟିକୁ ପଢ଼ିଲେ ଅନୁଭବ ହୁଏ ମାଟି ଓ ମଣିଷ ସହ କବି ନିଜକୁ ଏଭଳି ଗୁନ୍ଥି ଦେଇଛନ୍ତି ଯେ ତାହା ପାଲଟିଛି ତାଙ୍କ କବିତାର

ନିର୍ବିକଳ୍ପ ନିର୍ଯ୍ୟାସ । କବିତାରେ ସେ କହନ୍ତି – "ମୋର ଧନଜନ ଗୋପଲକ୍ଷ୍ମୀ ଏ ମଣିଷ ଓ ମାଟିରେ / ଏହାରି ଭିତରେ ନେବି ମୋ ଜୀବନ କାଟିରେ ।" ଏ ସ୍ୱର ଆହୁରି ରସସିକ୍ତ ହୋଇଛି ମର୍ତ୍ତ୍ୟର ମୋହ କବିତାରେ । ଏକ ବର୍ଷା ରାତିରେ ସ୍ୱପ୍ନସୁନ୍ଦରୀ ଜଣେ ପ୍ରୀତି ନିବେଦନ ପୂର୍ବକ କବିଙ୍କୁ କଳ୍ପଲୋକକୁ ଆମନ୍ତ୍ରଣ ଜଣାଇଲାବେଳେ କବି ସେହି ମଧୁ ଆମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରନ୍ତି କେବଳ ମାଟିର ମୋହରେ । ବସୁଧାର ବ୍ୟାଧି, ଯନ୍ତ୍ରଣା ଓ ମୃତ୍ୟୁଶୋକ ସତ୍ତ୍ୱେ ମାଟି ତାଙ୍କର ଅତିପ୍ରିୟ । ସୁନ୍ଦରୀ ନବନୀତା ଅପ୍‌ସରୀକୁ ତାଙ୍କ କାବ୍ୟପୁରୁଷ ଉତ୍ତର ଦିଏ –

"କିନ୍ତୁ କିଭଳି ଛାଡ଼ିବି ମୋର ଏ ଆଜନମ ପ୍ରିୟ ଧରଣୀ / ବନ୍ଧା ମୋ ସାଥେ ତାର ବିଲ ବନ ନଈ ନାଳ ସେତୁ ସରଣୀ । / ତିଳତଣ୍ଡୁଳ ଗଛ ଛାଇ ତଳ / କୋଟି ଜନପଦ, ପଲ୍ଲୀ ନଗର / ପ୍ରତି ରେଣୁ ସହ କି ବିଶାଳ ମୋହ ବୁଝିକି ଗୋ ବରବରଣି / ବନ୍ଧା ମୋ ସାଥେ ତାର ବିଲ ବନ ନଈ ନାଳ ସେତୁ ସରଣୀ ।" (ଦିଗ୍‌ବଳୟ)

କବି କୃଷ୍ଣଚନ୍ଦ୍ର ମାଟିର କବି । ତେଣୁ ଧୂଳି ଧୂସରିତ ଧରଣୀର ସ୍ତନନ୍ଧୟ ମଣିଷ ତାଙ୍କ କାବ୍ୟପୁରୁଷର ସହୋଦର ଭାଇ । ସେମାନଙ୍କଠାରୁ ବିଚ୍ଛିନ୍ନ ଜୀବନ ତା କଳ୍ପନାର ବାହାରେ । ମଣିଷ ପ୍ରତି ଐକାନ୍ତିକ ଭାବରେ ନିଷ୍ଠାବାନ୍ ହେତୁ ତାର ଆବେଗଭରା ଅଙ୍ଗୀକାରବୋଧ ହେଲା –

"ମଣିଷଠୁଁ ଛିନ୍ନ ମୁଁ ହୋଇରେ / ପାରିବିନି ପାରିବିନି ପାରିବିନି ରହିରେ । / ମଣିଷ ମଣିଷ ଖାଲି ମଣିଷ ମୋ ଜୀବନର / ସମ୍ପଦ ପରମ, / ମତେ ଖାଲି ଭଲଲାଗେ ମଣିଷର କଥାଭାଷା / ମଣିଷର ସେନେହ / ମଣିଷର ଅମୃତ ମରମ ! / ମତେ କହ ମଣିଷର ସୁଖଦୁଃଖ ବେଦନା / ମତେ କହ ମଣିଷର ଅଦ୍‌ଭୁତ ସୀମାହୀନ ସାଧନା / ମତେ କହ ମଣିଷର ଯେତେଯାହା ବିଚିତ୍ର କରଣୀ / ଯାହା ଘେନି ହସିଉଠେ ମାଟିର ଏ ଧରଣୀ / ମତେ କହ ମଣିଷର ଦୟାକ୍ଷମା କରୁଣାର କଥା ହେ / ମତେ କହ ମଣିଷ କେଉଁଠି କେବେ ଚାଲିଅଛି ଗରବେ / ଉଚ୍ଚ କରି ତାର ମଥା ହେ !" (ମାଟି ଓ ମଣିଷ, ସାଧନାର ସ୍ୱପ୍ନ)

ଏଇଠୁ ଆରମ୍ଭ ହୁଏ ମଣିଷ-ମୁଗ୍ଧ କାବ୍ୟପୁରୁଷର ଅନ୍ୱେଷଣ : ଧରାପୃଷ୍ଠରେ ଏହି ନାତିଉଚ୍ଚ ରକ୍ତମାଂସଧାରୀ ପ୍ରାଣୀଟିର ଅସାଧାରଣ କୃତିତ୍ୱ । ତାର ଉଦାରତା, ବୀରତ୍ୱ, ଦେଶପ୍ରୀତି, ଆତ୍ମବଳିଦାନ, ଦୁଃସାହସିକତା ଭଳି ବିସ୍ମୟକର ନଭଶ୍ଚୁମ୍ବୀ କୀର୍ତ୍ତିଚନ୍ଦ୍ରର ଗାଥାରେ ମୁଖରିତ ହୁଏ କୃଷ୍ଣଚନ୍ଦ୍ରଙ୍କ କବିତାର ଅଙ୍ଗନ । ପ୍ରତିଫଳିତ ହୁଏ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, କୃତ୍ତିବାସ ପାଟଶାଣୀ, ଭୁଜବଳ ବୁଦ୍ଧୀ,

ପାଇକବାଳା କଳାବତୀ ତଥା ଗୋଲିଦାସ ଭଳି ବହୁ ନାମୀ ଓ ଅନାମଧେୟ ବୀର / ବୀରାଙ୍କ ସମୁନ୍ନତ ଚେତନା ଓ ମାଟି ପାଇଁ ସେମାନଙ୍କ ଆତ୍ମୋତ୍ସର୍ଗର ଦୃଶ୍ୟମାଳା । ତା'ପରେ ଯାଇ କାବ୍ୟପୁରୁଷ ହୃଦୟଙ୍ଗମ କରେ -

"ଏଭଳି ବିରାଟ ଅଗ୍ନି ଥାଏ ମଣିଷ ପ୍ରାଣେ / ବଜ୍ର କଟାଇ ପଥର ଫୁଟାଇ ଜୀବନ ଆଣେ / ମଣିଷ ସବୁ କରିପାରେ ରେ / କିଏ ସେ କହିବ କି ମହାଶକ୍ତି / ରହିଚି ମଣିଷ ଲହୁ ଧାରେ ରେ!" (ସୈନିକର ସମାଧି, ଆହୁତି)

କୃଷ୍ଣଚନ୍ଦ୍ରଙ୍କ କବିତାର ଚଉହଦୀରେ ପାଠକ ସାକ୍ଷାତ ପାଏ ଆଉ ଗୋଟିଏ ବର୍ଗର ମଣିଷଙ୍କୁ । ସେମାନେ ସମାଜର ତଥାକଥିତ ସବୁ ପ୍ରକାର କଷଟିରେ ପରିତ୍ୟକ୍ତ । ସେମାନେ ଅନାମଧେୟ, ବଡ଼ ହୀନିମାନ ପ୍ରାଣୀ । ସେମାନଙ୍କ ଅଶ୍ରୁର ଅନଳରେ କାହାର ନୁହେଁ ବରଂ ତରଳିଛି କବିର ଅନ୍ତର । ସେମାନେ ହେଲେ ମାଡ଼ଗାଳି ଖାଇ ବାସନ ମାଜୁଥିବା କାହାର କୋଳ ସଙ୍ଗାଳି, ଗୋଟିଏ ବୋଲି ଭେଣ୍ଡାପୁଅର ମୃତ୍ୟୁ ଦୁଃଖରେ ଜର୍ଜରିତ କପର୍ଦ୍ଦକ ଶୂନ୍ୟ ବୁଢ଼ାବୁଢ଼ୀ, ଭୋକିଲା ପେଟରେ ଝାଟିମାଟି ଜାଳେଣି ମୁଣ୍ଡେଇ ଘରକୁ ବାହୁଡୁଥିବା ମୂଲିଆପୁଅ ନଟେଡ୍ ବଗିଚା କାମ କରୁଥିବା ମୂଷାହାଡ଼ି ଓ ଆହୁରି ଅଗଣିତ ଚରିତ୍ର । ସେମାନଙ୍କୁ ସେ କୋଳେଇ ନେଇଛନ୍ତି ଆପଣା କବିତାରେ । କେଡ଼େ ଆଗ୍ରହ ଓ ଆବେଗ ଭରା ହୃଦୟରେ କବି ସେମାନଙ୍କୁ ଅଶ୍ରୁରେ ବସାଇ ଦେଇଛନ୍ତି କାବ୍ୟସିଂହାସନରେ, ଯାହାର ତୁଳନା ଆମ ସାହିତ୍ୟରେ ନାହିଁ । "ଛତର ଖାଇ ଖାଇ ଛତରଖାଇ ତାର ନାଆଁ / ନାଇଁ ତା ଜାତିପତି ନାଇଁ ତା ଜମିବାଡ଼ି ଗାଆଁ" ଠାରୁ ଆରମ୍ଭ କରି ଅରକ୍ଷିତା ଧାନସାଉଁଟା ଝିଅର ଲୁହବତୁରା ବକ୍ତବ୍ୟ ପର୍ଯ୍ୟନ୍ତ ତାଙ୍କ କବିତାରେ ଜୀବନ୍ତ ହୋଇଉଠିଛି, ଯଥା -

"ପଚାରିଲି ତାରେ, ଉତ୍ତରିଲା, "ମୁଁ ଲୋକାତନ୍ତୀର ଝିଅ / ବିଦେଶେ ମୋହର ମରିଅଛି ବାଆ ହେଲାଣି ବରଷ ନଅ । / ବୋଉ ପଠେଇଚି ଯ୍ୟା ତା ବିଲର ଧାନ ଗଣ୍ଡିଏ ନେଲେ / ମକଚି ଖାଇବୁ, ଘରେ କିଛି ନାଇଁ କଟିଯିବ ହେଲେ ବେଳେ!"

"ସେ ଯେ ସର୍ବହରା ସେ ଯେ ସର୍ବହରା / ତାର ଜୀବନ ଖାଲି ବ୍ୟଥା ବେଦନା ଭରା ।" ରାତି ପରେ ଦିନ ହୁଏ, ଫୁଲ ଫୁଟେ, ଋତୁ ପରେ ଋତୁ ଆସେ, କିନ୍ତୁ ଦୁଃଖୀର ଲୁହ ସରେନାହିଁ । ଅନ୍ୟମାନଙ୍କ ହତାଦର ଯୋଗୁଁ ତାର ଦୁର୍ଦ୍ଦଶା ବଢ଼ିଚାଲେ । ସେଥିପାଇଁ ସମବେଦନା ଜର୍ଜରିତ କବି ସଭିଙ୍କୁ ଅନୁରୋଧ ଜଣାନ୍ତି : "କରନା ତାହାରେ ଦୁର୍‌ଦୁର୍ ମାର୍ ମାର / ସେ ଯେ ଧରଣୀର ଗୋଟିଏ

ଅଶ୍ରୁଧାର ।" ସେଇ ଅଶ୍ରୁଧାର ଭିତରେ ଯେଉଁ ମୁକ୍ତା ଅଛି କବି ତାହାକୁ ଆବିଷ୍କାର କରିପାରିଛନ୍ତି । ଅଭାବ ସେମାନଙ୍କ ସ୍ୱଭାବ ନଷ୍ଟ କରିନାହିଁ । ସେହିମାନଙ୍କ ମଣିଷ ପଣିଆ ବା ଉଜ୍ଜ୍ୱଳ ମାନବିକତା କୃଷ୍ଣଚନ୍ଦ୍ରଙ୍କ କବିତାର ତେଣୁ ଆଉ ଗୋଟିଏ ମହନୀୟ ଦିଗ । ସେ ଅନୁଭବ କରିଛନ୍ତି 'ଦୀନଦୁଃଖୀ ଘରେ ଯେଉଁ ନିଧିଟିକ ଖେଳେ / ବଡ଼ଲୋକ ଘରେ ମିଳିବ କି କେତେବେଳେ ?'

ଯେଉଁ ମଣିଷ ପ୍ରତି କବି ତ୍ରିପାଠୀଙ୍କ ଅଗାଧ ବିଶ୍ୱାସ ଓ ଆସ୍ଥା ସେମାନଙ୍କ ମଧ୍ୟରୁ ଗୋଟିଏ ଶ୍ରେଣୀ ନଇଁ ପଡ଼ିଥିବା ଦୀନଦୁଃଖୀଙ୍କ ପ୍ରତି ଦାଉ ସାଧିଲାବେଳେ କବି ଚିତ୍ତରେ ଦେଖାଦିଏ ଭୀଷଣ ଅସନ୍ତୋଷ । ସେତିକିବେଳେ ସେ ନୀରବ ଦର୍ଶକ ସାଜନ୍ତି ନାହିଁ । ତାଙ୍କ ମନରେ ଥାଏ କ୍ରୋଧ, ଯାହାକୁ ଗୋପନ ନରଖି ନିଷ୍କପଟ ଭାବରେ ସେ କହନ୍ତି : ମୋର ବଡ଼ ରାଗ ହୁଏ ଯେଉଁଠି ମଣିଷ / ମଣିଷକୁ ଭଲ ପାଏନାହିଁ ଅହର୍ନିଶ । 'ମୂଷାହାଡ଼ି' କବିତାରୁ ଆରମ୍ଭ କରି ବହୁ କବିତାରେ କବିଚିତ୍ତର ବିକ୍ଷୋଭ ଆମେ ଦେଖିବାକୁ ପାଉ । ଦୀନଦୁଃଖୀଙ୍କ ବାସ୍ତବ ଚିତ୍ରାଙ୍କନ ଜରିଆରେ କେବଳ କ୍ୱବି-ଗୌରବ ଅର୍ଜନର ଅଭିଳାଷ ତାଙ୍କର ନଥିଲା, ବରଂ ଭଗବାନଙ୍କ ସୃଷ୍ଟିରେ ସେମାନଙ୍କ ସମାନ ଅଧିକାର ସାବ୍ୟସ୍ତ ପାଇଁ ତାଙ୍କର ବ୍ୟସ୍ତତା ସେତିକିବେଳେ ସୃଷ୍ଟିରେ ମୂର୍ତ୍ତ ହୁଏ । ଦଳିତ ନିଷ୍ପେଷିତମାନଙ୍କ ପ୍ରତି ଉଚ୍ଚବର୍ଗର ହତାଦର ଓ ଅବଜ୍ଞା ପ୍ରତି କବି କୃଷ୍ଣଚନ୍ଦ୍ର କେତେବେଳେ କଟାକ୍ଷରେ 'ସବୁ ଗରଳରୁ ମଣିଷ ଗରଳ ଅଟେ ଉତ୍କଟତର / ହେ ମୋର ମଣିଷ ହେ ମୋର ମଣିଷ ହୃଦ ନିର୍ମଳ କର' କହନ୍ତି ତ କେତେବେଳେ 'ଅଗ୍ନିଶଙ୍ଖ' ଭଳି ଦୀର୍ଘ କବିତାରେ 'ମଣିଷ ଏ ପୃଥିବୀରେ ଏକମାତ୍ର ଧନ' ବୋଲି ଘୋଷଣା କରି ବିଦ୍ରୋହର ଇଙ୍ଗିତ ଦିଅନ୍ତି - "ବୁକୁ କାଟି ରକ୍ତ ଦେଇ / ପୃଥିବୀରେ କାମ ଯିଏ / କରିଚାଲେ ହୋଇ ନିଷ୍ଠାପର / ତା' ଉପରେ ଯେତେ ଯାହା / ଅତ୍ୟାଚାର କଲେ / ଦିନେ ସେ ଜାଗିବ ଧରି / ଶତସିଂହ ବଳ ।"

'ତରୁ ଓ ତୃଣ' (୧୯୯୧) କବିଙ୍କର ଶେଷ ପ୍ରକାଶିତ କବିତା ପୁସ୍ତକ । ସେଥିରେ ମଧ୍ୟ କବିଙ୍କର ମଣିଷ ପ୍ରତି ଅସୀମ ବିଶ୍ୱାସ ରହିଛି । ଆଗାମୀ ସମୟରେ ବ୍ୟବସ୍ଥାର ପରିବର୍ତ୍ତନ ହେବ ଓ ସମାନତା ମନ୍ତ୍ରରେ ଦୀକ୍ଷିତ ଭାବୀ ମଣିଷର ଆବିର୍ଭାବ ହେବ ବୋଲି କେତେକ କବିତାରେ କବି ଦୃଢ଼ ଆଶା ପୋଷଣ କରିଛନ୍ତି; ଯଥା - :

"ଆଗାମୀ ଯୁଗର ମଣିଷ ଆସୁଚି ଶୁଭୁଚି ତାହାର ଚରଣ ଚାଲି
ଚାହାଁରେ ଚାହାଁରେ ଆଖି ଫେରି ଚାହାଁ ଶୁଣ ତାର ଡାକ ଶ୍ରବଣ ଡେରି ।"

ଦୀର୍ଘ ଷାଠିଏ ବର୍ଷ କାଳ କବିତାରେ ମଗ୍ନ କୃଷ୍ଣଚନ୍ଦ୍ରଙ୍କ ସମୟର ସାହିତ୍ୟ ନାନା ବାଦବିବାଦ, କ୍ରିୟା-ପ୍ରତିକ୍ରିୟା ଓ ପରୀକ୍ଷା ନିରୀକ୍ଷା ଦେଇ ତୁମୁଳ ଆଲୋଡ଼ନ ସହ ଗତି କରୁଥିଲା । ସବୁଜ, ପ୍ରଗତି ପୁଣି ପ୍ରୟୋଗବାଦୀ କାବ୍ୟ ଧାରା ପରେ ପରେ ସ୍ୱାଧୀନତା ପରବର୍ତ୍ତୀ ଆଧୁନିକ ଓ ଉତ୍ତର ଆଧୁନିକ ଯୁଗର ଅଭ୍ୟୁଦୟ ଦେଖାଦେଇଥିଲା । କବି କୃଷ୍ଣଚନ୍ଦ୍ର ସମସାମୟିକ ଏହି କାବ୍ୟ ଆନ୍ଦୋଳନର ଧାରେ ଧାରେ ଚମତ୍କାର ଭାବରେ ନିଜସ୍ୱ ଅଙ୍ଗୀକାରକୁ ଅତୁଟ ରଖି ଆଗେଇ ଚାଲିଥିବା ଲକ୍ଷ୍ୟ କରାଯାଏ । ସେ କୌଣସି ଯୁଗ ସୃଷ୍ଟି କରିନାହାନ୍ତି, ବରଂ କବିତା ସୃଷ୍ଟିରେ ମନୋନିବେଶ କରିଛନ୍ତି; ପୁଣି ଚିର ପରିଚିତ ମାଟି ଓ ମଣିଷକୁ ନେଇ । ସେଥିପାଇଁ ଡକ୍ଟର ମାୟାଧର ମାନସିଂହ ତାଙ୍କୁ ଖାଣ୍ଟି ମଣିଷ ଓ ଖାଣ୍ଟି କବି ବୋଲି ପ୍ରଶଂସା କରିଛନ୍ତି । ନିଜ କବିତା ବିଷୟରେ କୃଷ୍ଣଚନ୍ଦ୍ର ସାଧାରଣତଃ ମତ ବା ମନ୍ତବ୍ୟ ଦେବା ପରିଲକ୍ଷିତ ହୁଏ ନାହିଁ, କିନ୍ତୁ ତାଙ୍କ କାବ୍ୟନାଟିକା 'ନିଃଶବ୍ଦର ଡାକ'ର ଆରମ୍ଭରେ ପଦିଏ କହନ୍ତି : "ଯେଉଁ ଲେଖା ବା ସୃଷ୍ଟି ଭିତରେ ପ୍ରାଣର ପରଶ ଯେତେ ଅଧିକ ସିଏ ସେତେ ବେଶି ପ୍ରାଣ ଭିତରେ ଉଦ୍‌ବେଳନ ସୃଷ୍ଟି କରିପାରିବ ଏବଂ ପ୍ରତି ଯୁଗରେ ନିଜର ସୁନ୍ଦର ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟତା ବଳରେ ଅମୃତର ଅଧିକାରୀ ହୋଇ ପାରିବ ।" କହିବା ନିଷ୍ପ୍ରୟୋଜନ, କୃଷ୍ଣଚନ୍ଦ୍ର ମାଟି ଓ ମଣିଷକୁ ନେଇ ଲେଖିଥିବା କବିତାମାନ ଯୁଗ ପରେ ଯୁଗ ଅତିକ୍ରମ କରି ଆଜି ମଧ୍ୟ ପାଠକଙ୍କ ପ୍ରାଣକୁ ସ୍ପର୍ଶ କରେ । ତାଙ୍କର ଉତ୍ତୁଙ୍ଗ ମାନବବୋଧ ସଦାସର୍ବଦା ଅଭିଭୂତ କରେ । ଜଡ଼ତାରୁ ଆସେ ଜାଗରଣ, ଯେତେବେଳେ ଉଚ୍ଚାରିତ ହୁଏ ମନ୍ତ୍ର ଭଳି ତାଙ୍କ ମହିମ୍ନ କବିତା :

"ମୋର ଜୀବନ ନୁହଇ ଆଜିର ଗୋ ପାଣି ଫୋଟକା / ମୁଁ ତ ଅସୀମ କାଳର କପାଳେ ଯିବିନି ନିଭି ଗୋ / ମୁଁ ଗୋ ଏତେ କାହିଁପାଇଁ ହେବି ଅତରଛ ତାଟକା ? / ମୁଁ ଗୋ ମୋହରି କାମଟି ହସିହସି କରୁଥିବି ଗୋ । / ମୁଁ ଗୋ ଚିର ସନାତନ ଶାଶ୍ୱତ ଅବିନାଶୀ ଗୋ / ମୋର ଜୀବନ ଗୋ ଖାଲି ଜୀବନ ଜୀବନ ଜୀବନ / ମୁଁ ତ ମହାବିଶ୍ୱର ଆଲୋକେ ଉଠିବି ଭାସି ଭାସି ଗୋ / ମୁଁ ଗୋ ମହାବିଶ୍ୱରେ ମୁକ୍ତ ମଧୁର ପାବନ । / ମୋର ଚଉଦିଗେ ଖାଲି ଅମୃତ ଝର ଝରଇ / ମୁଁ ଗୋ କ୍ଷୁଦ୍ର ନୁହଇ ବିରାଟ, ଉଦାର ମହାନ, / କୋଟି ଅମୃତ ଆଶା ବୁକୁ ତଳେ ମୋର ଭରଇ / ମୁଁ ଗୋ ଆନନ୍ଦ ଜଳେ କରୁଥିବି ନିତି ସ୍ନାହାନ ।"

# କବିତାୟନରେ ସଚ୍ଚିଦାନନ୍ଦ

ପ୍ରାଧ୍ୟାପକ ଡ. ମଣୀନ୍ଦ୍ର କୁମାର ମେହେର

କାବ୍ୟଶିଳ୍ପୀ ଓ ଗଦ୍ୟଶିଳ୍ପୀ ଭାବରେ ସଚ୍ଚିଦାନନ୍ଦ ରାଉତରାୟ ଅନନ୍ୟ ସଫଳତାର ଅଧିକାରୀ । କିନ୍ତୁ ଓଡ଼ିଆ ପାଠକମାନଙ୍କ ହୃଦୟ ଅଧିକ ଉଦ୍‌ବେଳିତ ହୋଇଛି ତାଙ୍କ କବିତାର ମହନୀୟ ସ୍ପର୍ଶରେ । ନିଜ କବି ଜୀବନର ପ୍ରଥମ ପର୍ଯ୍ୟାୟରେ ସେ ଯେଉଁ ରୋମାଣ୍ଟିକ୍ ବିମୁଗ୍ଧତା ପ୍ରକାଶ କରିଥିଲେ ତାହା ଏବେ ବି ଅନୁଭବୀ ପାଠକକୁ ଦେଇଥାଏ କୋମଳ ଅନୁଭବର ମାଧୁର୍ଯ୍ୟ । ପ୍ରଗତିବାଦୀ କବି ଭାବରେ ଓ ପରେ ଅତ୍ୟାଧୁନିକ କବି ଭାବରେ ଯଦିଓ ସେ ପ୍ରତିଷ୍ଠାର ଶୀର୍ଷ ସୋପାନକୁ ଉପନୀତ ହୋଇଛନ୍ତି, ତାଙ୍କର ଆଦ୍ୟ କବିତାର ପ୍ରଭାବ ପାଠକ ମନରେ ରହିଛି ଅପ୍ରତିହତ । ପ୍ରକୃତିକୁ ମୁଗ୍ଧ ହୋଇ ଦେଖୁଥିବା କବିର ଦୁଇଟି କମନୀୟ ଆଖି, ରୂପ ଓ ସୌନ୍ଦର୍ଯ୍ୟରେ ଅଭିଭୂତ ଅନୁଭବ କରୁଥିବା କବି ପ୍ରାଣର ବାସ୍ନା, ଅତୀତକୁ ଭଲ ପାଉଥିବା ସ୍ରଷ୍ଟା ଚିତ୍ତର ସମ୍ମୋହନ ଏହି ପ୍ରଥମ ପର୍ଯ୍ୟାୟର କବିତା ଗୁଡ଼ିକରେ ସାର୍ଥକ ରୂପ ପରିଗ୍ରହ କରି ପାଠକକୁ ଆବିଷ୍ଟ କରି ପକାଏ ।

ପ୍ରିୟତମାର ନୂପୁର ନିକ୍ୱଣ ଯେଉଁ କବିର କର୍ଣ୍ଣ ଗହ୍ୱରରେ ନିକ୍ୱଣିତ ହୁଏ ନାହିଁ ତା'ର ଲେଖନୀରୁ କି କବିତା କେବେ ଝରେ ? ସଚ୍ଚିଦାନନ୍ଦଙ୍କ ଜୀବନରେ ପ୍ରତିଟି ପଥରେ ପ୍ରିୟାର ନୂପୁର ଧ୍ୱନି ବାଜି ଉଠିଛି । ବିହ୍ୱଳ ଭାଷାରେ ସେ କହି ଉଠିଛନ୍ତି :- "ପଥେ ପଥେ ତାର ନୂପୁର ବାଜେ / ବନେ ବନେ ଆଜି ବୀଣା ଉଠେ ବାଜି / ମରେ ମୁଁ ସଜନୀ ଅଧିର ଲାଜେ । / ଗନ୍ଧ ଅଞ୍ଚଳ ଉଡ଼ାଇ ସମୀର / କାନେ କାନେ କହେ ତା ନାମ ମଂଜୁଳ / ଫୁଲେ ଫୁଲେ ରଟେ ତାହାରି ଖବର / ଜଳ ବେଣୀ ନଦୀ ତା ପାଇଁ ସାଜେ ।" (ପଥେ ପଥେ ତାର ନୂପୁର ବାଜେ)

ପ୍ରିୟାର ଅନୁପସ୍ଥିତି କେଉଁ କବିକୁ ବା ପୀଡ଼ିତ ନକରେ । 'କବରୀ' କବିତାରେ କବି କହି ଉଠନ୍ତି :-

"ଝରକା ଖୋଲି / ପ୍ରଦୀପ ଜାଳି / କା ଲାଗି ମୁହିଁ ରହେଚି ଚହିଁ । / ପ୍ରିୟା ମୋ ଯେବେ /ନାହିଁଟି କେବେ / କି ଲାଭ ଆଉ ଏ ଗୀତ ଗାଇ ।"

କବିଙ୍କ ହୃଦୟ ବନରେ ପ୍ରଣୟ କୁଞ୍ଜରେ ତାହାରି ଅଭିସାର । ତାହାରି ହିଁ

ପଥ ଚହିଁ ଆଖିରୁ ତାଙ୍କର ବହେ ତପ୍ତ ଅଶ୍ରୁଧାର । କାନେ କାନେ ତାଙ୍କର ଜୋଛନା କହିଦିଏ ଆସିବ ବୋଲି ସେ ଆଜି । ଗଭୀର ନିଶୀଥରେ ନୀରବତା ମଧ୍ୟରେ ତାହାର ନୂପୁର ହିଁ ବାଜିଉଠେ । ପ୍ରିୟତମାର ସ୍ୱପ୍ନରେ କବି ମନ ଯେମିତି ମଗ୍ନ, ସେପରି ପଲ୍ଲୀ ମାଟିର ସ୍ପର୍ଶରେ ସେ ବିଭୋର ତଲ୍ଲୀନ । ପଲ୍ଲୀ ତାଙ୍କ ପାଇଁ ତୀର୍ଥ । ପୌଷ ଶେଷର ଗୋଧୂଳି, ଫଗୁଣର ଫଗୁ ବୋଳା, ଜୋଛନା, ପଲ୍ଲୀର ପ୍ରଭାତ, ଜୈତ୍ରର ଶୁଭ୍ର ମେଘମାଳା କବିର ପ୍ରାଣରେ ଅଜସ୍ର କମ୍ପନ ସୃଷ୍ଟି କରିଛି । ପରବର୍ତ୍ତୀ ସମୟରେ 'ପଲ୍ଲିଶ୍ରୀ' କବିତା ଗ୍ରନ୍ଥରେ କବିତା ଗୁଡ଼ିକରେ କବିଙ୍କ ଏଇ ପଲ୍ଲୀପ୍ରୀତି ଅଧିକ ନିବିଡ଼ ଭାବେ ପ୍ରକାଶିତ । ତାଙ୍କରି ମଧୁର ଭାଷାରେ ପ୍ରତ୍ୟେକ କବିତାପ୍ରେମୀ ଓଡ଼ିଆ ପାଠକ ସେଇ କବିତାକୁ ବିଭୋର ପ୍ରାଣରେ ଗାଇ ଉଠିଛି :

"ଛୋଟ ମୋର ଗାଆଁଟି /ଭୂଗୋଳ ପୋଥି-ପତରେ ପଛେ ନ ଥାଉ ତାର ନାଆଁଟି । / ମାଟିର ସେଇ ସରଗ ମୋର, / ସେଇଠି ଅଛି ମୋ ଷଠୀଘର । / ଜଳିବ ପୁଣୀ ସେଇଠି ଶେଷେ /ମୋହରି ଚିତା ନିଆଁଟି । / ଛୋଟ ମୋର ଗାଆଁଟି ।"

ଯେଉଁ କବି ପ୍ରକୃତିକୁ ଓ ମଣିଷକୁ ଭଲପାଏ ଗଭୀର ଭାବରେ, ଭଲପାଏ ପୁଣି ନିଜ ଅନ୍ତରର ସକଳ ସ୍ପନ୍ଦନକୁ ସେ ସମାଜରେ ଥିବା ଅସାମଂଜସ୍ୟକୁ ସହ୍ୟ କରିବା ସ୍ୱାଭାବିକ ହୋଇ ନପାରେ । ସଚ୍ଚିଦାନନ୍ଦଙ୍କ ଆଦ୍ୟ ରଚନାରେ ତାଙ୍କ ହୃଦୟର ଅସନ୍ତୋଷ ଓ ପ୍ରଶ୍ନବାଚୀ ରୂପ ପାଇଛି କବିତାରେ । 'ଭଗବାନ ଅଛ କାହିଁ ?' କବିତାରେ ତାଙ୍କ ବେଦନାବିଦ୍ଧ ହୃଦୟରେ ଭାଷା ଉତ୍ତପ୍ତ ହୋଇ ଉଠିଛି :

"ଚହିଆଡ଼େ ଦେଖେ ଧନୀର ଶୋଷଣ / ଧର୍ମ ନାଆଁରେ ଯାବତ କଷଣ / 'ବହୁ'ର ଲହୁ ତ ଶୋଷିନିଏ ଏକ / ମୁଖେ ହରି ନାମ ପାଇ / ଭଗବାନ ଅଛ କାହିଁ ?"

ଜୀବନକୁ ମୁଗ୍ଧ ଆଖିରେ ଦେଖିବା ଯେପରି ଜଣେ ସୃଜନଶୀଳ କବି ପାଇଁ ସ୍ୱାଭାବିକ, ଜୀବନର ଅସଂଗତି ଦେଖି ସେ ସେଇପରି ଆହତ ହେବା ମଧ ସ୍ୱାଭାବିକ । ମଣିଷ ଉପରେ କବିଙ୍କ ବିଶ୍ୱାସ ଗଭୀର ନହେଲେ କବିତାରେ ଜୀବନ ପ୍ରତି ଆସ୍ଥା ଫୁଟେ ନାହିଁ । ସଚ୍ଚିଦାନନ୍ଦ ମନୁଷ୍ୟ ସମ୍ପର୍କରେ ଥିଲେ ଆସ୍ଥାଶୀଳ । ସେ କହିଥିଲେ :-

"ମନୁଷ୍ୟର ଶେଷ ନୁହେଁ ଲାଗି ଚିତାନଳ
ମନୁଷ୍ୟତ୍ୱ ନୁହେଁ ଲୀନ, ଅଜର ଅମର ।" (ମାନବ)

୧୯୩୨ରେ ପ୍ରକାଶିତ କବିଙ୍କ 'ପାଥେୟ' କବିତା ସଂକଳନର କବିତା ଗୁଡ଼ିକ କୈଶୋରର ଉଚ୍ଛ୍ୱାସରେ ଭରପୂର । କବି ନିଜେ ତା'ର ବିଶେଷତ୍ୱ ସମ୍ପର୍କରେ

କୁହନ୍ତି, "ଆଶା କରେ ବଳିଷ୍ଠ ସାହିତ୍ୟ ଭାବରେ ନହେଉ, କୋମଳ କିଶୋର ପ୍ରାଣର ତରଳ ଅନୁଭୂତି ଭାବରେ ଏ ବହିଟି ସମସ୍ତଙ୍କର ମନୋରଞ୍ଜନ କରିବ ।"

ବଳିଷ୍ଠ ସାହିତ୍ୟ ତ ତାହା ଯାହା ସରଳ ପ୍ରାଣର ବିଗଳିତ ଭାବ ସମ୍ଭାରରେ ଉଷ୍ମତାପୂର୍ଣ୍ଣ । କବି ମନୁଷ୍ୟ ଉପରେ ମନୁଷ୍ୟର ଅତ୍ୟାଚାରକୁ ଦେଖି ଯେ ଗଭୀର ପୀଡ଼ା ପାଇଛନ୍ତି ତା'ର ଚିହ୍ନ 'ପାଥେୟ'ରେ ସୁସ୍ପଷ୍ଟ । ଅଠର ବର୍ଷର କିଶୋର ଜୀବନର ଅନୁଭୂତିକୁ ଆଧାର କରି ସେ ଗାଇ ଉଠିଛନ୍ତି :-

"ଦେଖିଛି ମୁଁ ପ୍ରବଳର ଘୋର ଅତ୍ୟାଚାର / ଦୁରୁବଳ ଲୋତକ ସମ୍ଭାର, / ଶୁଣିଛି କାତର କଣ୍ଠେ ଦୁଃଖୀର କ୍ରନ୍ଦନ / ନର କରେ ନରର ପୀଡ଼ନ ।"

ସେହି ସମୟର 'ପୂର୍ଣ୍ଣିମା' କାବ୍ୟ ନାଟିକା କବିଙ୍କ କାବ୍ୟ ଭାବନାର ପ୍ରକାଶ । ମଣିଷର ଚେତନା ବ୍ୟକ୍ତିଗତ ଆନନ୍ଦାନୁଭୂତିରୁ ବିଶ୍ୱମୁଖୀ ହୋଇ ଉଠିଲେ ମନୁଷ୍ୟର ପୂର୍ଣ୍ଣତା ସେଇଠାରେ ହିଁ ଅନୁଭୂତ ହୁଏ । ଏପରି ତତ୍ତ୍ୱର ପରିସ୍ଫୁରଣ କରିବାକୁ ଏଇ କ୍ଷୁଦ୍ର କାବ୍ୟ ନାଟକଟିର ଆରମ୍ଭ ବୋଲି କବି ସ୍ୱୀକାର କରିଛନ୍ତି ।

ସଚ୍ଚି ରାଉତରାୟ ଅଗଣିତ ଉପେକ୍ଷିତ ନିରନ୍ନ ଜନତାର କବି ଭାବରେ ଆଲୋକିତ ହୋଇ ଉଠିଛନ୍ତି ପରବର୍ତ୍ତୀ ସମୟରେ । କାର୍ଲ ମାର୍କ୍ସଙ୍କ ଦର୍ଶନ ତାଙ୍କୁ ଦେଇଛି ଶ୍ରେଣୀ ବିହୀନ ସମାଜ ଗଠନର ଅସୀମ ସ୍ୱପ୍ନ । ଅମାପ ଶକ୍ତି । ସାହିତ୍ୟକୁ ତେଣୁ ସେହି ବୈପ୍ଲବିକ ଭାବଧାରାର ବାର୍ତ୍ତାବହ ବୋଲି ସେ ମନେ କରିଛନ୍ତି । ତାଙ୍କର 'ଅଭିଯାନ' କବିତା ସଂକଳନର କବିତା ଗୁଡ଼ିକ ପତ୍ରପତ୍ରିକାରେ ପ୍ରକାଶ ପାଇବା ପରେ ତୀବ୍ର ଆଲୋଡ଼ନ ସୃଷ୍ଟି ହୋଇଥିଲା ଓଡ଼ିଶାର ସାହିତ୍ୟିକ ମହଲରେ । କାରଣ ସେଥିରେ ଥିଲା ସର୍ବହରା ମଣିଷ ପ୍ରତି ନବଜାଗରଣର ଆହ୍ୱାନ । ଧନୀକ ଶ୍ରେଣୀ ଉଦ୍ଦେଶ୍ୟରେ ପ୍ରଦର୍ଶିତ ହୋଇଥିଲା ବିପ୍ଳବର ବିଦ୍ୟୁତ୍ ରେଖା । ସର୍ବହରା ଦିଗହରା ମଣିଷକୁ ନବ ଉଦ୍ଦୀପନାରେ ଜାଗ୍ରତ କରିବା ପାଇଁ କବି କହିଥିଲେ:-

"ଜୀର୍ଣ୍ଣ ବୁକୁର ସ୍ପନ୍ଦନୁ ଜାତ / ଆରେରେ ସର୍ବହରା / ଜାଗ ଆଜି ଦଳି ଚରଣେ ସକଳ / ବନ୍ଧନ ବାଧା ଜରା ।" (ସର୍ବହରା)

କବି ଅନୁଭବ କରିଥିଲେ ଯେ, "ଧନୀକ ଶ୍ରେଣୀର ହାତଗଢ଼ା ସମସ୍ତ ଅନୁଷ୍ଠାନ ଯଥା:- ଧର୍ମ, ସମାଜ, ନୀତି, ନିର୍ବାହ, ଦେଶପ୍ରେମ, ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ଦେବତା ବିଶ୍ୱାସ ପ୍ରଭୃତି ସେ ସେହି ଶ୍ରେଣୀ ବିଶେଷର ସ୍ୱାର୍ଥ ବଜାୟ ରଖିବା ଉଦ୍ଦେଶ୍ୟରେ ପ୍ରତିଷ୍ଠିତ, ବର୍ତ୍ତମାନ ଏ ସତ୍ୟ ବୁଝିବାର ସମୟ ଆସୁଛି । ସେଥିପାଇଁ

ପରସ୍ୱ-ଭୋଜି ବୁର୍ଜୟା ଶ୍ରେଣୀର ସ୍ୱାର୍ଥସେବୀ ଏହି ସମସ୍ତ ଅନୁଷ୍ଠାନ ମୂଳରେ କୁଠାରାଘାତ କରିବା ହିଁ ଅଭିଯାନର ସର୍ବପ୍ରଧାନ ଲକ୍ଷ୍ୟ ।

ମଣିଷ ଯେ ମଣିଷର ମର୍ଯ୍ୟାଦା ପାଏ ନାହିଁ ଏ ସମାଜରେ । ତା'ର ଦେହ ନୁଖୁରା, ମୁହଁ କର୍କଶ, ପେଟରେ ଅସହ୍ୟ ଭୋକ । ଅଥଚ ଧନୀକ ପାଳିତ କୁକୁରଟିଏ କେଡ଼େ ଚହଟ ଚିକ୍‌କଣ । କେଡ଼େ ସୁନ୍ଦର । 'ରୁଟି' କବିତାରେ କବି କଣ୍ଠ ସେଥିପାଇଁ ଉଦ୍ଦୀପ୍ତ ହୋଇ ଉଠିଛି :

"ଖାଇବାକୁ ଦିଅ ରୁଟି / ମୁଠାରେ ତମର ରହିଛି ମାଲିକେ / ପରାହେ ଆମର ଚୁଟି / ଯେଉଁ ରୁଟି ନିତି କୁକୁର ତମର ଖାଉଛି ମାଉଁସ ସାଙ୍ଗେ / ତାହାରି ଅଇଁଠା ଅଭାବେ / ଆମର ପିଲାଏ ମରନ୍ତି ପଥେ ।"

ସଚ୍ଚିଦାନନ୍ଦ କବି ମାନସରେ ହୋଇଥିବା ନାନା ପରିବର୍ତ୍ତନକୁ ସମାଲୋଚକ ମାନେ ଚିହ୍ନଟ କରିଛନ୍ତି । କିନ୍ତୁ ଯେଉଁ କବିର ହୃଦୟରେ ଅସମାନତା ଓ ଅମନୁଷ୍ୟତା ବିରୁଦ୍ଧରେ ଦିନେ ବିପ୍ଲବର ବହ୍ନି ଜଳିଥିଲା ତାହା କ'ଣ କେବେ ଲିଭିଯାଇପାରେ । ୧୯୬୫ ମସିହାରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ ବେଳେ ମଧ କବି 'ଅଭିଯାନ'ର ମୂଳ ବକ୍ତବ୍ୟ ତଥା ଆଭିମୁଖ୍ୟ ତାଙ୍କର ଅପରିବର୍ତ୍ତନୀୟ ରହିଛି ବୋଲି ମତବ୍ୟକ୍ତ କରିଛନ୍ତି ।

ମାନବିତାର ଯୁଗ ପୃଥିବୀରେ ପ୍ରତିଷ୍ଠା କରିବା ପାଇଁ କବି ମନର ଆକୁଳତା ଅନ୍ତର୍ଭେଦୀ ହୋଇ ଉଠିଛି ତାଙ୍କର 'ରକ୍ତଶିଖା'ରେ । ଆମେ ମଣିଷର ଯୁଗ ଆଣିବୁ' କବିତାରେ ନିର୍ଜୀବ ଭିତରେ ତେଜର ପ୍ରକାଶ ପାଇଁ ଶକ୍ତି ସଂଚରର ଉଦ୍ୟମ କରି ସେ ଗାଇ ଉଠିଛନ୍ତି:-

"କୋଟି ମନ ଆଜି ଝଡ଼ ପରି ଛୁଟେ / କୋଟି ହାତମୁଠା ଉପରକୁ ଉଠେ / ଜାଗିଲାଣି ଚଷୀ ଜାଗିଛି ମୂଲିଆ / (ସେତ) ମଣିଷର ଯୁଗ ଆଣିବ ।"

କବିଙ୍କ 'ବାଜିରାଉତ' ବୈପ୍ଲବିକ ଚେତନାର ଏକ ଅଗ୍ନିଗର୍ଭ ପ୍ରକାଶ । ୧୯୩୮ ମସିହାରେ ଢେଙ୍କାନାଳର ପ୍ରଜା ଆନ୍ଦୋଳନକୁ ଦମନ କରିବା ପାଇଁ ଇଂରେଜ ସୈନିକ ମାନଙ୍କ ନିଷ୍ଠୁରତା ହୃଦୟ ବିଦାରକ । ସେ ବେଳର ନିର୍ଭୀକ ବାଳକ ବାଜିରାଉତ ଇଂରେଜ ଗୁଳିରେ ଶହୀଦ ହୋଇଥିବାର ଦୃଶ୍ୟ କବିଙ୍କ ଆତ୍ମାରେ ସୃଷ୍ଟି କରିଛି ଅସାଧାରଣ ଭାବାବେଗ । ବାଜିରାଉତ ସହିତ ଅନ୍ୟ ଶହୀଦମାନଙ୍କ ଶବ ଆସିବା ପରେ କାଠଯୋଡ଼ି କୂଳ ଖାନନଗର ମଶାଣିରେ ଜଳିଥିଲା

ସେମାନଙ୍କର ଚିତା । ସେଇ ଦୃଶ୍ୟ କବିଙ୍କ ଅନ୍ତରକୁ ମନ୍ଥିତ କରିଦେଇଥିଲା ଗଭୀର ଭାବରେ । ସେଇ ତୀବ୍ର ମନ୍ଥନରୁ ଜନ୍ମ ନେଇଛି 'ବାଜିରାଉତ' ଖଣ୍ଡ କାବ୍ୟଟି । ଭାବାଚ୍ଛନ୍ନ କଣ୍ଠରେ କବି କହିଛନ୍ତି :-

"ନୁହେଁ ବନ୍ଧୁ, ନୁହେଁ ଏହା ଚିତା / ଏ ଦେଶ ତିମିର ତଳେ / ଏ ଅଲିଭା ମୁକତି ସଳିତା । / ନୁହେଁ ଏହା ଜଳିଯିବା ପାଇଁ / ଏହାର ଜନମ ଏଥି ଜାଳି ପୋଡ଼ି / ଦେବାକୁ ଧସାଇ ।।"

ବାଜିରାଉତ ପ୍ରତି କବି ପ୍ରାଣର ଏ ବିପୁଳ ଭାବନା ତାଙ୍କ ସଂଗ୍ରାମୀ ଆତ୍ମାର ତେଜୋଦୀପ୍ତ ପ୍ରକାଶ । ଯୁଗେ ଯୁଗେ ସତ୍ କବି ଓ ଶିଳ୍ପୀ ମାତ୍ରକେ ସେଇମାନଙ୍କ ଗୀତ ଗାଏ ଯିଏ ମାନିନେଇ ପାରେ ନାହିଁ ଅର୍ଥହୀନ ଅତ୍ୟାଚାରକୁ, ମାନିନେଇ ପାରେ ନାହିଁ ସେନାବଳର ହୁଁକାରକୁ । ଆଉ ଜୀବନ ସମର୍ପିତ କରିଦିଏ ହସି ହସି ଯିଏ ସକଳ ସଂକୀର୍ଣ୍ଣ ଲୋଭ ବା ଲାଳସାର ବଶବର୍ତ୍ତୀ ନହୋଇ । ଅମାନିଆ ବାଜିରାଉତ ଝଡ଼ ଠାରୁ ଆହୁରି ପରାକ୍ରମଶାଳୀ, ମେଘଠାରୁ ଆହୁରି ସେ ଶକ୍ତିମାନ । ତା' ପ୍ରାଣରେ କେବଳ ପ୍ରକୃତ ଜୀବନ ଦ୍ୟୁତିର ବିଜୁଳି ଚମକି ଉଠେ । ସେଇ ଅମାନିଆ ସାନ ପିଲାଟି ପ୍ରତି କବି ଅନ୍ତରରେ କି କୋହ ! କି ଭାଷା ! କି ଉଚ୍ଛ୍ୱସିତ ସମ୍ମାନ ! ! ପ୍ରାଣର ଆବେଗ କବିତାର ଶବ୍ଦ ହୋଇ କିପରି ରୂପ ପାଇଛି ତାହାତ ଅନୁଭବ କରିବାର କଥା ।

"ଏଡ଼ିକି ସେ 'ଅମାନିଆ ପିଲା' / ଫଉଜର ଗୁଳି, ଗୁଳା, ରାଜା, ଝଡ଼ କିଛି ନ ମାନିଲା । / ଧୂଳି ଖେଳ ଛାଡ଼ି / ଗୁଳି ଆଗେ ଜୀବନକୁ ହସି ହସି ଦେଲା ସିନା ବାଢ଼ି ।। / ଝଡ଼ ଠାରୁ ସେ ଯେ ବଡ଼ / ମେଘ ଠାରୁ ଆହୁରି ସେ କଳା, / ସାନ ଦେହେ ଖେଳେ ତାର / ଜୀବନର ଅଲିଭା ଚପଳା । / ରାତି ପରି ହୁଏ ବାଟବଣା / ପଥ ଭୁଲି ଏଣେ ତେଣେ ବୋହିଯାଏ / ସେ ପରା ଝରଣା ।।"

ମଣିଷ ପ୍ରତି କବିଙ୍କ ଅସୀମ ଶ୍ରଦ୍ଧା, ପ୍ରଗାଢ଼ ସହାନୁଭୂତି, ଶାନ୍ତି ସ୍ଥାପନର ନିବିଡ଼ ଆକାଂକ୍ଷା ଯୁଦ୍ଧ ପ୍ରଭାବଶାଳୀ ସ୍ୱର ପ୍ରକାଶ ପାଇଛି 'ପାଣ୍ଡୁଲିପି'ରେ । ମଣିଷ ପ୍ରତି କବିଙ୍କ ଆଦେଶ ପ୍ରକାଶ ପାଇଛି ଭିନ୍ନ ଦୃଷ୍ଟିକୋଣ ନେଇ । ଶ୍ରମଜୀବୀ ମଣିଷ ପ୍ରତି ତାଙ୍କର ସମ୍ମାନ ଚୁମ୍ବନ କରିଛି ଆକାଶକୁ । 'କୋଣାର୍କ' କବିତାରେ ସେ କହିଛନ୍ତି : "ତୁମେ ଦେଖୁଅଛ ଶିଳାରେ ତାର ତ / ରମ୍ୟ କଳାର ରୂପ / ମୁଁ ଦେଖୁଛି ତହିଁ କୋଟି କଙ୍କାଳ / ଭଗ୍ନ ବୁକୁର ସ୍ତୁପ ।"

'ପ୍ରତିମା ନାୟକ' ଭଳି କବିତାରେ ଯୁଦ୍ଧ କିପରି ମଣିଷ ମନର ସବୁ

ସୌନ୍ଦର୍ଯ୍ୟ ଓ ସମ୍ଭାବନାକୁ ଲୁଣ୍ଠନ କରି ନେଇଛି ତା'ର ପ୍ରକାଶ ଅତି ସହାନୁଭୂତି ସିକ୍ତ । ଆଧୁନିକ ଜୀବନର ନାନା ଦ୍ୱନ୍ଦ୍ୱ, ସଂଘାତ ଓ ବୈଫଲ୍ୟ ରାଉତରାୟଙ୍କ କବିତାରେ ରୂପାୟିତ । କିନ୍ତୁ ତାତ୍ପର୍ଯ୍ୟପୂର୍ଣ୍ଣ କଥା ହେଉଛି ବାସ୍ତବତାର ରୂପାୟନଠାରୁ ସମ୍ବେଦନଶୀଳତାର ସଞ୍ଚାଳନ କେତେ ଅଧିକ ତୀବ୍ର । ସଚ୍ଚିବାବୁଙ୍କ ପ୍ରଗତିଶୀଳ ଶିଳ୍ପୀ ଆତ୍ମାର ସଙ୍କେତ ଏକ ଅନନ୍ୟ ଶ୍ରଦ୍ଧା ଓ ସହାନୁଭୂତିର ସ୍ୱର ସହ ସଂଯୁକ୍ତ ହୋଇ ଅନ୍ତର୍ଭେଦୀ ହୋଇ ଉଠିଛି । 'ପାଣ୍ଡୁଲିପି'ର ଲୋହିତ ପର୍ଯ୍ୟାୟରେ ପ୍ରକାଶିତ କବିତା ଗୁଡ଼ିକ ଅତ୍ୟନ୍ତ ତୀକ୍ଷ୍ଣ ସ୍ୱରରେ ହୃଦୟକୁ ଭେଦ କରିଯାଏ । ସାଥୀ ଭଗବତୀ ଚରଣଙ୍କ ଅକାଳ ମୃତ୍ୟୁର ନବ ପ୍ରଭାତରେ ଅଗ୍ରଦୂତ ସେ ଥିଲେ ବୋଲି କବି ବର୍ଣ୍ଣନା କରିଛନ୍ତି । ଶରତର ଶିକ୍ତ ମାଟି ମୁକ୍ତି ପ୍ରେମୀ ଭଗବତୀ ଚରଣଙ୍କ ପରି ମଣିଷକୁ ବିଦାୟ ଦେବାକୁ ଚାହେଁନା । ମୃତ ପୃଥିବୀର କାନେ ମୁକ୍ତିର କବିତା ଏବେ ବି ବାଜି ନଥିବାରୁ, ଦୁର୍ବାଶାର ଅଭିଶାପରେ ଏବେବି ଜନତା ଝରି ପଡୁଥିବାରୁ, ଭୋକ ଶୋକ ତାପରେ ମଣିଷ ତଥାପି ମରୁଥିବାରୁ କବି ଭଗବତୀଙ୍କ ବିଦାୟ ନେବାର ସମୟ ହୋଇନାହିଁ ବୋଲି କବି ଆପଣାର ଆକୁଳତା ପ୍ରକାଶ କରିଛନ୍ତି ।

ଜଣେ ପ୍ରକୃତ କବିର କବିତା ବହି ମଣିଷର ଅନୁଭବଦୀପ୍ତ ହୃଦୟ ପରି ଜୀବନ୍ତ । ଯେଉଁ କବିତା ବହି ଛୁଇଁବା ମାତ୍ରକେ ମଣିଷକୁ ସ୍ପର୍ଶ କରିବାର ଅନୁଭୂତିରେ ପାଠକ ଆତ୍ମା ଥରିଉଠେ ସେହି ବହି ହିଁ ବାସ୍ତବିକ ରେଖାପାତ କରେ ଅନ୍ତର ଭିତରେ । ସେଥିପାଇଁ କବି Walt Whitman କହିଥିଲେ "Comrade, This is no book, who touches it touches a man." ଏହି କଣ୍ଠସ୍ୱର ସହ କଣ୍ଠ ମିଳାଇ ଦିନେ ରାଉତରାୟଙ୍କ କବିକଣ୍ଠ ଗାଇ ଉଠିଥିଲା :-

"ତୁମେ ମୋର ଛପା ବହି ଯେତେବେଳେ ଛୁଅଁ / ଛୁଅଁ ନୁଆଁ ମଣିଷର ଛାତି / ଏଇ ପୃଥିବୀର ସବୁ ମଣିଷ ଜାତି / ତା'ର ପ୍ରତିଟି ଖବର / ରୂପପାଏ କବିତାରେ ମୋର ।"

କବିଙ୍କ 'ଭାନୁମତୀର ଦେଶ' ଏହି ସ୍ୱୀକାରୋକ୍ତିର ଏକ ପ୍ରଭାବଦୀପ୍ତ ପ୍ରକାଶ । ଆଧୁନିକ ଜୀବନର ସଂକଟ ଏଥିରେ ଚିତ୍ରିତ । ବାସ୍ତବବାଦୀ ରୋମାଣ୍ଟିକ୍ ସ୍ୱର ବହନ କରି ଏକ ନୂତନତାର ସଂକେତ ପ୍ରଦାନ କରିଛି । ତରଙ୍ଗ ଓ ବିନତା ଦୁଇ ପ୍ରତୀକ ଚରିତ୍ର । ଆଧୁନିକ ଯୁଗର ସଂଶୟ, ସ୍ୱବିରୋଧ ଭିତରେ ଜୀବନ ପ୍ରତି ଅଙ୍ଗୀକାର ହିଁ ସେମାନଙ୍କର ସତ୍ୟପାଠ ବୋଲି କବି ସୂଚନା ଦେଇଛନ୍ତି । କାବ୍ୟଟିର ଶୈଳ୍ପିକ ସମୃଦ୍ଧି ପ୍ରତି କବି ସଚେତନ ହୋଇ ଉଠିଛନ୍ତି ଖୁବ୍ ବେଶୀ । ରୂପକ ଓ

ଉପମା ପ୍ରୟୋଗରେ ଏହାକୁ ସେ ଗତାନୁଗତିକ କାବ୍ୟ ରଚନା ରୀତିରୁ ଅନେକ ଆଗକୁ ନେଇ ଯାଇଛନ୍ତି । 'ମାଛକାତି' ମେଘ ରାତି, ଗହମ ରଙ୍ଗର ଗାଲ, ଅଫିମ ରାତି, ଚର୍ବି ପରି ସ୍ନିଗ୍ଧ ନିଦ, ଘାସର ହ୍ରଦ ଆଦି ପାଠକ ପାଇଁ ଭାବ ଉଦ୍‌ବୋଧକ ହୋଇ ଉଠିଛି ।

କବିତାର କଳାଗତ ଦିଗ ପ୍ରତି ବିଶେଷ ସଚେତନ ହୋଇ ଅବସର ବିନୋଦନ ପାଇଁ ମଧ କବି ଲେଖିଛନ୍ତି ଅନେକ କବିତା । ସେ ସବୁ 'ହସନ୍ତ' କବିତା ସଂକଳନରେ ପ୍ରକାଶିତ । କବିଙ୍କ ବିଦ୍ରୂପାତ୍ମକ ଦୃଷ୍ଟିଭଙ୍ଗୀ ଏଥିରେ ନାନା ଭାବରେ ଫୁଟି ଉଠିଛି । ତେବେ କୌଣସି ବ୍ୟକ୍ତି ବିଶେଷ ବା ଅନୁଷ୍ଠାନକୁ ତାଚ୍ଛଲ୍ୟ କରିବାର ଉଦ୍ଦେଶ୍ୟ କବିଙ୍କ ନାହିଁ । ଏହା ବ୍ୟଙ୍ଗ ରସାତ୍ମକ, କିନ୍ତୁ ସମାଜବୋଧରେ ତୀକ୍ଷ୍ଣ । ପୁଣି କବିଙ୍କ ଭାଷାରେ, "କବିତା ଗୁଡ଼ିକ ଆପାତତଃ ଅନ୍ୟର ସମାଲୋଚନା ପରି ଜଣାଯାଉଥିଲେ ମଧ ମୁଖ୍ୟତଃ ଆତ୍ମସମାଲୋଚନା । ଏ ସମାଲୋଚନା ସମାଜର ଆଉ ପାଞ୍ଚଜଣଙ୍କ ପ୍ରତି ଯାହା ପ୍ରଯୁଜ୍ୟ, ଲେଖକ ପ୍ରତି ମଧ ସେତେ ପ୍ରଯୁଜ୍ୟ ।"

ଆଲୋକର ଗୀତ ଗାଇବା ପାଇଁ ସଚେତନ ଶିଳ୍ପୀ ମାତ୍ରକେ ପ୍ରାଣର ଅନୁଭବ କରନ୍ତି ବିପୁଳ ଉଦ୍ଦାମତା । 'ଅଭିଜ୍ଞାନ' କବିତା ସଂକଳନର ପ୍ରଭାତଫେରୀର ଗାନ କବିତାରେ ମୁକ୍ତିର ସେତୁ ବାହିଯିବା ପାଇଁ ଓ ସୂର୍ଯ୍ୟର ଗାନ ଗାଇଯିବା ପାଇଁ ଆହ୍ୱାନ କରନ୍ତି । ୧୯୪୭ ଅଗଷ୍ଟ ୧୫ ଉପଲକ୍ଷେ ରଚିତ 'ଆମେ ଶେଷ ବନ୍ଦୀ' କବିତାରେ ପୁରପଲ୍ଲୀ, ପାହାଡ଼, ପର୍ବତ ସେଇ ଚିର ସ୍ୱପ୍ନମୟ ଆଶ୍ଚର୍ଯ୍ୟ ମୁହୂର୍ତ୍ତ ଆସିବ ବୋଲି ଅପେକ୍ଷା କରିଥିବାର ଚିତ୍ର କବି ବାଢ଼ିଛନ୍ତି । ନୂଆ ଯୁଗର ଚେହେରାକୁ ରୂପ ଦେବାରେ କବିର କଲମ ଯେପରି ଚଳଞ୍ଚଳ ହୋଇ ଉଠିଛି । ବଂଶୀ ରଖିଦେଇ ରଣର ଡାକରା ଦେବାପାଇଁ ସେ ଇସାରା ଦେଇଛନ୍ତି 'ରକ୍ତବୀଜର ଅଭିଯାନ' କବିତାରେ । ଗାନ୍ଧିଜୀଙ୍କ ଭାବନାରେ ତନ୍ମୟ ହୋଇ ଉଠିଥିବା କବି ପ୍ରାଣର ପ୍ରକାଶ ଏ କବିତା ସଂକଳନରେ ଅତି ଶକ୍ତିଶାଳୀ । ଯାହାର ଜୀବନ ମଣିଷର ପାଦତଳେ ହୋଇ ପାରେ ଏକ ନମସ୍କାର, ସେଇ ଜୀବନ ହିଁ ତ କବିର ପ୍ରିୟ । ଯେପରି ମଣିଷର ମୃତ୍ୟୁ ତାହାର ଅବସାନ ଯେ କରିପାରେନା ଏ କଥାରେ କବି ନିଶ୍ଚିତ । ଗାନ୍ଧିଜୀଙ୍କ ସାନ୍ନିଧ ଲାଭର ସୁଯୋଗ ପାଇଥିଲେ ୧୯୪୭ ମସିହାରେ । ବାପୁଜୀଙ୍କ ସାର୍ଥକ ଉଜ୍ଜ୍ୱଳ ହସ ପରିଷ୍କାର ପରିଛନ୍ନ ଆତ୍ମା ତାଙ୍କୁ ଦେଇଛି ଅତୁଳନୀୟ ଆଶ୍ଚର୍ଯ୍ୟ ଅନୁଭବ । ଗାନ୍ଧୀ ଜୀବନର ଓ ତାଙ୍କ ଅମର ବାଣୀର ମାର୍ମିକତା ଫୁଟାଇବାକୁ ଯାଇ କବି

କହିଛନ୍ତି :-
"ମା'ପରେ ସଭା । / ରାମ ଧୂନି କଲେ ମନୁ, ଆଭା । / ସଭାରେ ମାମୁଲି କଥା, ସାଧାରଣ / ମାମୁଲି ଭଜନ, / ଅତି ଅଳ୍ପ, ସରଳ ଭାଷଣ / ପୁରୁଣା  କେତୋଟି ଶବ୍ଦ / ନାଇ କାହିଁ ମିଥ୍ୟାର ଆଘ୍ରାଣ ।।"

ଉଚ୍ଚକୋଟିର କବିତା ମାତ୍ରକେ ମଣିଷକୁ ଓ ପୃଥିବୀକୁ ଭଲ ପାଇବାର ଭାବନାରେ ସଦା ସମୁଜ୍ଜ୍ୱଳ । ପୁଣି ପ୍ରତିଟି ମୁହୂର୍ତ୍ତର ଶିଳ୍ପୀ ଆତ୍ମ ଅନୁସନ୍ଧାନରେ ସଦା ବ୍ରତୀ । କବିଦ୍ୱୟ ସେଇ ଉନ୍ମୁକ୍ତ ଅନୁଭବ ସଞ୍ଚି ରାଉତରାୟ ପ୍ରକାଶ କରିଛନ୍ତି 'ସର୍ଗତ' କବିତା ସଂକଳନର 'କବିତାରେ ଏକ ସଂଜ୍ଞା'ରେ :-
"ମୁଁ କବି ଧରିତ୍ରୀର, ମାଟିର, ମଣିଷର ତଥା । / ଗାଇବା ମୋ ଧର୍ମ ମଣେ ଏ ପୃଥିବୀ, ଏ ଆକାଶ କଥା ।"

ପୁଣି ସେ କହି ଉଠନ୍ତି ;
"କବିତା ମୋ ତେଣୁ ଖାଲି କାବ୍ୟ ନୁହେଁ / ଏ ଯେ ଏକ ଆବିଷ୍କାର ସଖେ / ନିଜର ଏ ଆକୁଳ ସନ୍ଧାନ ।"

ନୂଆ ମଣିଷର ଛାତି ସ୍ପର୍ଶ କରିବାକୁ ଜନଗଣ ସହ ନିଜକୁ ସେ ଏକାକାର କରିଥିଲେ । ମାତ୍ର ନିଜ ଭିତରେ ଏକ ଅପୂର୍ବ ସ୍ଥିରତାର ସନ୍ଧାନ ସେ କରିପାରିଛନ୍ତି । ଯେପରିକି ସେ ଐଶ୍ୱରୀକ ଉପଲବ୍ଧିର ଏକ ଅର୍ଥପୂର୍ଣ୍ଣ ସଂକେତ । କବି ଅନୁଭବ କରୁଛନ୍ତି :-
"ରାଜପଥେ ସେଇ ସୁଅ ବହୁ ମୁହଁ / ମଣିଷର ସେଇ ଯାଆ ଆସ / ମନେହେଲା ଏକରଇ ଇଏ ସବୁ / ବହୁଧା ପ୍ରକାଶ । / ସେଇ ଜଣେ ଜଣଙ୍କର ପରା ! / ବାକି ଇଏ ଯେତେ ଯିଏ ନାନା ଦିଗ, / ବିଭିନ୍ନ ଚେହେରା ।" (ଉପର କକ୍ଷ)

ବାହାରର ବିଶାଳତା ଭିତରେ ନୁହେଁ କବି ଏଥର ନିଜକୁ ଆପଣା ଅନ୍ତର ଭିତରେ ଅନୁଭବ କରନ୍ତି ଧ୍ୟାନସ୍ଥ ଚିତ୍ତରେ । ବାହାରେ ତୁଚ୍ଛ ସେ । ଭିତରେ କିନ୍ତୁ ପୂର୍ଣ୍ଣ । 'ରଂଗମ୍' କବିତାରେ ସେ ଉଚ୍ଚାରଣ କରନ୍ତି ଆତ୍ମାନୁଭୂତିର ସେଇ ଅର୍ଥପୂର୍ଣ୍ଣ ଶବ୍ଦ-
"ବିରାଟ ନାହିଁର ମଧ୍ୟେ ଟିକେ ହଁ / ଏତେ ଟିକେ ମୁଁ, / ଟିକେ ରାଜଧାନୀ-/ ତଥାପି ସେ ମହାଶୂନ୍ୟେ / ଯହିଁ କୁସିନାରା / ସେଇଠାରେ ଶାଶ୍ୱତୀ ଲୁଂବିନୀ ।"

କବିଙ୍କ ଆତ୍ମ ଚେତନାର ଧାରା ଗଭୀରରୁ ଗଭୀରତର ହୋଇଛି ।

ଅନ୍ତର୍ନିହିତ ଏକ ଚିରନ୍ତନ ସତ୍ୟର ସନ୍ଧାନୀ ସେ । ଜୀବନର ନୂଆ ଆବିଷ୍କାରକ । ବଞ୍ଚିବାର ଦୁଃଖାନୁଭୂତି ଭିତରେ ଏକାନ୍ତ ନିଜର ଏକାନ୍ତ ନକ୍ଷତ୍ର ମାନଙ୍କୁ ସେ ପାଇବା ପାଇଁ ବ୍ୟାକୁଳ ।

କବି ସଚ୍ଚିଦାନନ୍ଦ ରାଉତରାୟଙ୍କ ପରିବର୍ତ୍ତିତ କାବ୍ୟ ଚେତନା ତାଙ୍କ କବି ମାନସର ଏକ ଉତ୍ତରଣ । ତେବେ ସାହିତ୍ୟ ସମାଲୋଚକମାନେ ଅନୁଭବ କରିଛନ୍ତି ଯେ କବି ଆପଣାର ବିଦଗ୍ଧ ଆତ୍ମାନୁଭୂତିକୁ ପ୍ରକାଶ କରିବାର ପ୍ରଯତ୍ନରେ ଯେତିକି ନିଷ୍ଠାବାନ୍ ତା ଅପେକ୍ଷା କବିତାର ଅଙ୍ଗସଜ୍ଜା ପ୍ରତି ସେ ଅଧିକ ଏକାଗ୍ରଚିତ୍ତ । ଏଇ ଆଗିଂକ ସଚେନତନା ହେତୁ ତାଙ୍କର କାବ୍ୟ ଚେତନା ବୌଦ୍ଧିକ ଓ ଜଟିଳ ହୋଇ ପଡ଼ିଛି ବୋଲି ସେମାନଙ୍କର ମତ । ପାଠକ ସହିତ ଏକାତ୍ମତା ସ୍ଥାପନରେ ସେଗୁଡ଼ିକ ବିଫଳ ହୋଇଛି ବୋଲି ସମାଲୋଚକମାନେ ଅଭିହିତ କରିଛନ୍ତି । ତେବେ କବି ଚେତନାର ଉତ୍ତରଣକୁ ମଧ ଓଡ଼ିଶାର ବହୁ କବି ଓ ସମାଲୋଚକ ତାତ୍ପର୍ଯ୍ୟପୂର୍ଣ୍ଣ ଦୃଷ୍ଟିରେ ଦେଖିଛନ୍ତି । କବି ସୌରୀନ୍ଦ୍ର ବାରିକଙ୍କ ଭାଷାରେ, "ସଗତରେ ନିଜର ଏକକକୁ ଏକାନ୍ତ ରୂପେ ଅନୁଭବ କରିବାର ଜ୍ୱଳନ୍ତ ପିପାସା କବିତା ୧୯୬୨ରେ ଅନନ୍ତ ଓ ଚିରନ୍ତନ ସହ ନିଜକୁ ହଜାଇ ଦେବାର ବ୍ୟାକୁଳତାରେ ପରିଣତ ହୋଇଛି । ତେଣୁ ଏହି ଆଧାତ୍ମିକ ଚେତନା ଏଠାରେ ଟିକିଏ ବ୍ୟାପକ ରୂପେ ନେଇଛି ।"

ନିଜ ପ୍ରାଣର ନିଭୃତ ବାଣୀ ଶୁଣିବାରେ ସେ ଯେପରି ଉତ୍କୀର୍ଣ୍ଣ । 'ଅନ୍ତରାଳ' କବିତାରେ ସେଇ ଅନୁଭୂତି ଅକ୍ଷୟ ରୂପେ ଲାଭ କରିଛି–

"ନିଦ୍ରାରେ ଯେବେ ମୁଁ ଶୁଣେ ଗଭୀର ନିଦ୍ରାରେ /(ସବୁଠୁଁ ଗଭୀରତମ ନିଦ୍ରାରେ) / ନିଜର ଗୋପନ ବାଣୀ ମର୍ମିତ ଓଁକାରେ / (ନିଜକୁ ହରାଇ ଦେଇ ଆପଣାର ଠାରେ) / ତେବେ ତାହା ନିଭିଯାଉ ମହାଶୂନ୍ୟ ମାଳେ / ଆକାଶୁଁ ଆକାଶେ କାହିଁ ଅଣାକାର ତଳେ । / ସାତ ଶ' ତାରାର ସ୍ତଂଭ ପାରିହେବା ପରେ- / ଶୂନ୍ୟ ପଟଳରେ । / ମୋ ଭିତରେ ମୁଁଇ ହଜେ, ମୁଇ ଖୋଜେଁ / ମୋର ଅଂତରାଳେ ।"

ନାନା ଅନୁଭବର ସ୍ପର୍ଶରେ କବି ଜୀବନ ବର୍ଣ୍ଣିଳ । କବିତାରେ ତେଣୁ ଫୁଟି ଉଠେ ବହୁବିଧ ବିଚିତ୍ର ଅଭିଜ୍ଞତା ଓ ଅନୁଭବର ଝଲକ । ତେବେ କବି ସତ୍ତା ତ ସତ୍ୟାନ୍ୱେଷୀ । ଧ୍ରୁବତାରାର ଜ୍ୟୋତିରେ ଉଜ୍ଜ୍ୱଳ ହୋଇ ଉଠିବା ତାର ଏକାନ୍ତ ଅଭିଳାଷ । କବିଚିତ୍ତ ସେଥିପାଇଁ ପ୍ରାର୍ଥନାରତ :

"ସବୁ ଫୁଲ, ସବୁ ତାରା / ସବୁ ପ୍ରେମ ମେଳେ / ଦିଅ ମୋତେ ଏକ ଧ୍ରୁବତାରା ।"

(ଏକ ପ୍ରାର୍ଥନା)

ବିକ୍ଷିପ୍ତ, ଚଞ୍ଚଳ ମାନସିକତା ଯେ କବି ଗଙ୍ଗାଧରଙ୍କ 'ଶ୍ୟାମ ଶାଂତ ଆବର୍ତ ରହିତ ତୃଣଭୂମି' ଆଡ଼କୁ ପ୍ରସରି ଯାଏ । ସଚ୍ଚି ରାଉତରାୟ ଗଙ୍ଗାଧରଙ୍କୁ ସମ୍ବୋଧନ କରି ଅନ୍ତରର ନିରୋଳାବାଣୀ ଉଚ୍ଚାରଣ କରନ୍ତି :

"ପ୍ରଭାତର ଗାଥାକାର ! ମଧ୍ୟାହ୍ନର ଖର ତାପ ଜାଳ / ସଂଘର୍ଷ ପୀଡ଼ିତ ମନ, ନାନା ଦ୍ୱନ୍ଦେ ବିକ୍ଷିପ୍ତ ଚଞ୍ଚଳ / ଜୀବନ ତୁମକୁ ଚାହେଁ, ହେ ନିର୍ଲିପ୍ତ ସୂରି ! / ବିଦଗ୍ଧ ଚେତନାର ଝଂଜାମୟ ବହ୍ନିମାନ ଗାନ / ଚରୈବେତି ଜୀବନର ଖରଗତି, ନିଦିଧ୍ୟାସନ / ତୁମକୁ ସ୍ମରଣ କରେ । / ତୁମକୁ ସ୍ମରଣ କରେ ଜ୍ୟାୟନ, ଯୁଆନ ।"

କେବଳ ଶାସ୍ତ୍ର ଅଧ୍ୟୟନ କାହାକୁ ଅନ୍ତର୍ମୁଖୀ କରାଇ ଦେଇ ପାରେନା । ଜୀବନକୁ ନିଜ ନିଜ ଦୃଷ୍ଟିରେ ଦେଖିଥିବା, ଅନୁଭବ କରିଥିବା ଓ ବଞ୍ଚିଥିବା ଅସାଧାରଣ ମଣିଷମାନଙ୍କ ପ୍ରତି କବି ଅନ୍ତରର ଆକର୍ଷଣ ଠାଏ ଠାଏ ରୂପ ପାଇଛି ଖୁବ୍ ମର୍ମସ୍ପର୍ଶୀ ଭାଷାରେ । ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଓ ଶ୍ରୀମତୀ ସାରଦାମଣିଙ୍କ ପ୍ରଥମ ମିଳନ ରାତି ଉପରେ ଆଧାରିତ କବିତା 'ପ୍ରଥମ ରାତ୍ର' ଜୀବନାନୁଭବର, ଆତ୍ମାନୁସନ୍ଧାନର ଏକ ତୀବ୍ରତମ ଉପଲବ୍ଧି । ରାମକୃଷ୍ଣଙ୍କ ଅନୁଭବର ଗଭୀରତା ବିନ୍ୟସ୍ତ ହୋଇଛି କବିଙ୍କ ଭାଷାରେ :

"ପ୍ରୀତିମୟୀ, ଶାଂତିମୟୀ ସେ ଏକ-ଅନେକ । / ଭିନ୍ନ ଓ ଅଭିନ୍ନ, ପ୍ରିୟା ପୁଣି ଜାୟା । / ଯା ମଧ୍ୟରେ ନିଜକୁ ନୂତନ କରି କରାଯାଏ ଜନ୍ମ / ସେଇ ଜାୟା, / ସେଇ ମାୟା-ମାୟାର ସଦମ୍ ।।/ ଦିବ୍ୟ ଦୀପାଧାର । / ନିଜ ଛାୟା ଘେରା ପୁଣି ନିଜର ଅତିରିକ୍ତ / ମହାଜ୍ୟୋତିରେ ଉଜ୍ଜ୍ୱଳ / ଦେଖ୍, ପୁଣି ଭଲ କରି ଦେଖ୍ / ତୋ ହାତ ମୁଠାରେ ଯାହା, ସେଇ ପୁଣି କେତେ ଦୂରରେ, / ସେଇ ପୁଣି ଧରାର ବାହାରେ ଛୁଟିଛି ସଳଖ ।"

ସଚ୍ଚି ରାଉତରାୟଙ୍କ ଦୃଷ୍ଟିରେ କବିତା ରଚନାର ସାଧନା ଯେପରି ନିଜର ହିଁ ଏକ ଆକୁଳ ସନ୍ଧାନ । ଏଇ ସନ୍ଧାନର ବିଭିନ୍ନ ସ୍ୱର କବିତାରେ ରୂପ ପାଇଛି ଭିନ୍ନ ଭିନ୍ନ ଭାବରେ କେବଳ । 'ବସନ୍ତର ନିଛକ ଜିଲ୍ଲାରେ', 'ମତ୍ସ୍ୟଗନ୍ଧା', 'ଏକ ଫାଲଗୁନ', 'ସୀମାନ୍ତ ଟ୍ରେନ୍', ଇତ୍ୟାଦି ଅନେକ କବିତାରେ କବିଙ୍କ ଚିରସନ୍ଧାନୀ ମନର ପରିଚୟ ଅତ୍ୟନ୍ତ ସ୍ପଷ୍ଟ ଓ ଯୁକ୍ତିନିଷ୍ଠ । କବିସତ୍ତା ଏକ ପାର୍ଥିବ ସୌନ୍ଦର୍ଯ୍ୟ ପ୍ରତି ଆକର୍ଷିତ । ସେଇ ପରମ ସୌନ୍ଦର୍ଯ୍ୟ ସର୍ବବ୍ୟାପୀ । ନିଜକୁ ଉର୍ଦ୍ଧ୍ୱମୁଖୀ କରିଥିଲେ ହିଁ ସେଇ ଉପଲବ୍ଧି ଓହ୍ଲାଇ ଆସେ କବିସତ୍ତା ମଧ୍ୟକୁ । ସୀମାନ୍ତ ଟ୍ରେନ୍ ଯେପରି ଏକ ଅବିଚଳିତ

ଆଶାର ପ୍ରତୀକ, ଯାହା ଅଗ୍ରସର ହୁଏ ସୁନ୍ଦରତମ ଉପଲବ୍ଧି ଉଦ୍ଦେଶ୍ୟରେ । କବିକଣ୍ଠ ସ୍ପନ୍ଦିତ ହୋଇଉଠେ–

"ରହ, ରହ, ହେ ନକ୍ଷତ୍ର ଆଉ ଭୟ ! ହେ ସମୟ ! / ଆଉ ହେ ଅବର୍ତ୍ତମାନ / ମୋତେ ଡ଼ାକେ ସୀମାନ୍ତର, କାଳାନ୍ତର / ଅଭୟ ଆହ୍ୱାନ । / ପୁଣି ଏ ଟ୍ରେନ୍ ଛୁଟି ଯେ ଚଲେ ସୀମାନ୍ତର ପାରେ /ପାର ହୋଇ / ଆମରି ନିର୍ଣ୍ଣିତ ସ୍ଥିତ ଭୁଗୋଳର ପରେ ।"

କବିଙ୍କ ଉତ୍ତରଣ ଆକାଂକ୍ଷା ଧ୍ରୁବ ସତ୍ୟର ଚିରନ୍ତନ ସୌନ୍ଦର୍ଯ୍ୟରେ ବିଲୀନ ହେବା ପାଇଁ ଯେପରି ବ୍ୟାକୁଳ । ସେ କହନ୍ତି :-

"ଏ ବର୍ଷ ବି ବିତିଯାଉ ଗତବର୍ଷ ପରି / କିମ୍ବା ଶହ ଶହ ବର୍ଷମାନ ପରି / କଛପ ସଦୃଶ । / ଗୋଟିଏ ମୁହୂର୍ତ୍ତ କିନ୍ତୁ ଧ୍ରୁବ ହେଉ / ହେଉ ନିରଂକୁଶ ।"

"କବିତା ୧୯୬୨" ପରବର୍ତ୍ତୀ କବିତା ସଂକଳନ ଗୁଡ଼ିକରେ କବିଙ୍କ ଚିନ୍ତା ଚେତନାର ବିବିଧତା ନାନା ଭାବରେ ରୂପାୟିତ । ରୂପକଳ୍ପ, ରୂପକ, ପ୍ରତୀକ ଓ ମିଥ୍‌ର ପ୍ରୟୋଗରେ କବିତାକୁ ପ୍ରଭାବଶାଳୀ ଶିଳ୍ପରୂପ ଦେବା ପାଇଁ ସେ ପ୍ରୟାସରତ । ଗଭୀର ଭାବାଲୋଡ଼ନ ଅଭାବରେ ତାଙ୍କର ବହୁ କବିତା ପ୍ରାଣପ୍ରାଚୁର୍ଯ୍ୟ ଗର୍ଭିତ ହୋଇପାରେ ନାହିଁ ବୋଲି ସମାଲୋଚକମାନେ ମତ ପୋଷଣ କରନ୍ତି । ତେବେ ଜଣେ କବିର କଲ୍ୟାଣକାମୀ ଅନ୍ତର କେବେ ପରିବର୍ତ୍ତିତ ହୋଇପାରେ ନାହିଁ । ଯେଉଁ ମଣିଷମାନେ ମାନବାତ୍ମାର ମୁକ୍ତି ପାଇଁ ନିଜକୁ ଉତ୍ସର୍ଗ କରି ଯାଇଛନ୍ତି ସେମାନଙ୍କ ଅମର ଜୀବନ ପ୍ରତି କବି ସଚ୍ଚି ରାଉତରାୟଙ୍କ ଅନ୍ତରର ଆକର୍ଷଣ ପ୍ରଗାଢ଼ ଓ ପ୍ରଭାବଶାଳୀ ହୋଇ ଉଠିଛି । ସହୀଦ ପ୍ରଦୀପ୍ତ (୧୯୬୪), ଏସିଆର ସ୍ୱପ୍ନ (୧୯୬୮), କବିତା (୧୯୬୯), କବିତା (୧୯୭୧), କବିତା (୧୯୭୪) ଇତ୍ୟାଦିରେ କବି ଆତ୍ମାର ବ୍ୟଥା ଅନେକ ସ୍ଥଳରେ ପାଠକ ଅନ୍ତରକୁ ତୀବ୍ର ଭାବେ ମନ୍ଥିତ କରିଦିଏ । କବିତା (୧୯୭୧)ରେ 'ରୋସନାରା' ଶୀର୍ଷକ କବିତା ଟିରେ ଢ଼ାକା ମହିଳା କଲେଜର ପ୍ରଥମ ବାର୍ଷିକ କଳାର ଛାତ୍ରୀ ରୋସନାରା ବେଗମ୍‌ର ଆତ୍ମତ୍ୟାଗ ଅତି ଜୀବନ୍ତ । ମଣିଷକୁ ଏକତାର ସୂତ୍ରରେ ବାନ୍ଧିବା ପାଇଁ ସେ ଏକ ପ୍ରେମର ହରଫ୍ । ଅସୀମ ଯନ୍ତ୍ରଣାରେ କବିସତ୍ତା କହେ :

ତୁମେ ମୋର ଶେଷ ବନ୍ଦୀଶାଳା
ମୁହିଁ ତୁମ ଶେଷ ବନ୍ଦୀ ସିନା ।

ନାଗଭୂଷଣଙ୍କୁ ବିପ୍ଳବର ଅମିତ ଶକ୍ତି ଭାବରେ ବର୍ଣ୍ଣନା କରିଛନ୍ତି କବି । ଧ୍ୱଂସ ନୁହେଁ ସୃଷ୍ଟି ହିଁ କବି ପୁରୁଷର ଆକାଂକ୍ଷା । ମୈତ୍ରୀ ଓ ପ୍ରୀତିର ପ୍ରାର୍ଥନା ହିଁ ତା'ର ଅନ୍ତରତମ ଆତ୍ମାର ନିଭୃତ ସ୍ୱର । ଏ ସ୍ୱର ବିଭିନ୍ନ କବିତାରେ ପ୍ରକାଶ ପାଇଛି ଆନ୍ତରିକତା ଶବ୍ଦ ନେଇ । ବିପ୍ଳବ ରଚନା କରୁଥିବା କବି ମଧ ପ୍ରେମର ମହାନୁଭବରେ ବିଗଳିତ । ମନୁଷ୍ୟ ମନର ସତ୍ୟସ୍ନିଗ୍ଧ ରୂପ ପ୍ରକଟନରେ ସେ ଏକାନ୍ତ ବିଶ୍ୱାସୀ । ନାରୀର ଶବରୀ ଆଖି ବିହ୍ୱଳତାରେ ଭରିଦିଏ ସେଥିପାଇଁ କବି ମନକୁ ।

କବିତା ୧୯୮୩, କବିତା ୧୯୮୫, କବିତା ୧୯୮୭, କବିତା ୧୯୯୦ ପ୍ରଭୃତି ବହୁ କବିତା ପୁସ୍ତକରେ କବି ରାଉତରାୟଙ୍କ ବହୁବିଧ ସ୍ୱରର ମୂର୍ଚ୍ଛନା ଶ୍ରୁତ ହୁଏ । ଏକ ଏକ ସ୍ୱରର ଗଭୀରତା ପାଠକକୁ ଉଦ୍‌ବେଳିତ କରିଦିଏ ବେଳେ ବେଳେ । ସମୁଦ୍ରକୁ ପ୍ରତ୍ୟକ୍ଷ ଭରିବାରେ ଭୁଲିଯାଏ ମଣିଷ ସବୁ କ୍ଷୁଦ୍ରତା । କବିଙ୍କ ଶବ୍ଦରେ :-

"ସବୁ ଶବ୍ଦ ମୁହୂର୍ତ୍ତକେ ହୁଅନ୍ତି ନିର୍ବାକ / ବାକ୍‌ର ଅତୀତ, ଶ୍ରୁତିରୁ ଅଶ୍ରୁତ । / ମନେହୁଏ ଶବ୍ଦମାନେ ଅର୍ଥହୀନ / ଅର୍ଥ ସବୁ ବ୍ୟର୍ଥ ଅକାରଣ ।" (ସମୁଦ୍ର, କବିତା ୧୯୮୩)

ଜାତି, ଧର୍ମ, ବର୍ଣ୍ଣ, ଗୋଷ୍ଠୀ ଓ ସମାଜ ଊର୍ଦ୍ଧ୍ୱରେ ଥିବା ମଣିଷଟିକୁ କୋଉ କବି ବା ନ ଚାହେଁ । ରାଉତରାୟ କବି ମଧ ସେପରି ଏକ ନିଦା ମଣିଷର ଅନୁସନ୍ଧାନ କରିଛନ୍ତି । ସେ ଜାଣନ୍ତି ଯେ, ଜାତି, ଧର୍ମ, ବର୍ଣ୍ଣ, ଗୋଷ୍ଠୀ ଆଦିର ପରିଚୟ ଏକ ଏକ ଖୋଳପା ମାତ୍ର । ସେଥିପାଇଁ 'ପ୍ରଶ୍ନବାଚୀ : ଏ ସାପର ଫଣା' କବିତାରେ ସେ ପ୍ରଶ୍ନ କରନ୍ତି :

"ଭୋକିଲାକୁ ଭୋକେ ରଖି ଏ ଯେଉଁ ଧର୍ମ ବିତରଣ / ମଣିଷକୁ ପଛେ ରଖି ଦେଶ, ଧର୍ମ, ଜାତିର ବଯ୍ୟାନ / ଇଏ ସବୁ କାହା ପାଇଁ/ଏ ସବୁର ଅର୍ଥ କ'ଣ ? / ତୁମେ କିଆଁ ଦେଉନା ଉତ୍ତର / ମଣିଷ ସବୁରି ଆଗେ/ନା, ପର ଖୋଳ ?"

କବିଙ୍କ ଉତ୍ତର ଜୀବନରେ କବିତା ମାନଙ୍କରେ ଦାର୍ଶନିକ ମନନଶୀଳତାର ସ୍ପନ୍ଦନ ସଞ୍ଚରି ଆସିଚି ସାର୍ଥକ ଭାବେ । ସମାଲୋଚକମାନେ ତାଙ୍କର ଏଇ ସମୟର କବିତା ଗୁଡ଼ିକୁ ଆକର୍ଷଣୀୟ ବୋଲି ବିବେଚନା କରିଥିଲେ ହେଁ କବି ପ୍ରାଣର ବିଶାଳତା ଓ ମଣିଷ ପ୍ରତି ତାଙ୍କ ଅନ୍ତରର ଅକୁଣ୍ଠ ପ୍ରେମ ଅନୁଭବ କରିହୁଏ ସର୍ବତ୍ର ।

ମଣିଷ କୌଣସି ଅନୁଶାସନ ଓ ନିୟମ ଭିତରେ ବନ୍ଦୀ ହୋଇ ନପାରେ । ସେ ଆଦର୍ଶର ଦାସ ହେବା ପାଇଁ ଚାହେଁନା । ଚାହେଁ ଏକ ମୁକ୍ତ ଜୀବର ଆକାଶ । କବି ଏ କଥା ଅନୁଭବ କରିଛନ୍ତି ଅତି ବିଶ୍ୱସ୍ତ ଭାବେ । 'ପ୍ରହେଳିକା' ନାମକ କବିତାରେ ତାଙ୍କ ମନରେ ପ୍ରଶ୍ନ ଉଠିଛି ସେ କିଏ ? କେଉଁଠୁ ଆସିଛନ୍ତି ? ପୁଣି ଯିବେ କେଉଁଠାକୁ ? କବି କୌଣସି ନିର୍ଦ୍ଦିଷ୍ଟ ବିଶ୍ୱାସ ଭିତରେ ବନ୍ଦୀ ହୋଇ ନପାରନ୍ତି । ସେ ଅଙ୍ଗୀକୃତ-ଜୀବନର ନବ ନବ ଆବିଷ୍କାର ସହ । କବିତା ୧୯୯୦ ଓ ୨୦୦୩ରେ ଏପରି ଅନେକ କବିତା ସଂକଳିତ, ଯେଉଥିରୁ କବିଙ୍କ ଆଲୋକିତ ଅନୁଭବର ଧାରା ପ୍ରବାହିତ ହୋଇଥିବା ଲକ୍ଷ୍ୟ କରାଯାଏ । ତାଙ୍କ ସାମାଜିକ ପ୍ରତିବଦ୍ଧତା ମଧ୍ୟ ପୁନଶ୍ଚ ଜାଗ୍ରତ । 'କ୍ଷୁଧାର କବିତା' ତା'ର ବଳିଷ୍ଠ ପ୍ରମାଣ-

"ଖାଦ୍ୟ ଥାଉ ଯେଉଁଠାରେ ତାହା ମୋର, ଯେଣୁ ମୁଁ କ୍ଷୁଦାର୍ଥ / ଥାଉ ତାହା ପୁଲିସ୍ ଘେରରେ, ଅବା କାହା ଗୋଦାମେ, ଖମାରେ / ତାହା ମୋର ଅଗ୍ରଦାବି, ମୋ କ୍ଷୁଧାର ଅନ୍ନ ।" (କ୍ଷୁଧାର କବିତା)

ଋଷିଆ ପରିଭ୍ରମଣ ବେଳେ ଟଲଷ୍ଟୟଙ୍କ ସମାଧି ନିକଟରେ ସେ ପ୍ରଣତି ବାଢ଼ିଛନ୍ତି । ଧନୀ ଓ ଦରିଦ୍ର ଭିତରେ ଥିବା ବିଭେଦ ଦୂର କରିବା ପାଇଁ ଟଲଷ୍ଟୟ ଦିନେ କବିଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ଧନାନ୍ଧ ମଣିଷମାନେ କେତେ ଘର ଜମିବାଡ଼ି ଓ ସମ୍ପତ୍ତି ଠୁଳ କରିବାରେ ଲାଗନ୍ତି । ମଣିଷ ପାଇଁ କେତେ ଜମି ଲୋଡ଼ା ଗଳ୍ପଟି ସଚ୍ଚି ବାବୁଙ୍କ ମନରେ ବାରମ୍ବାର ଉଙ୍କି ମାରିଛି । କବିତାରେ ତେଣୁ ସେ ଗାଇଛନ୍ତି :

"ତୁମର ଗଳ୍ପଟି ମୋର ପଡ଼ିଯାଏ ମନେ / କାହିଁ ପାଇଁ ଏତେ ଧାଁ ଦୌଡ଼ / ସକାଳରୁ ସୂର୍ଯ୍ୟ ଅସ୍ତ ଯାଏ / କାହିଁ କି ରାଜଧାନୀ ଜମି, କୋଠା, ମାଳ ମାଳ, / କିଛି ତ ଯିବନି ସଙ୍ଗେ / ରହିଯିବ ମୁଠାଏ ପାଉଁଶ / ତାହାହିଁ ତ ଜୀବନର ସକଳ ସାରାଂଶ ।"

ଆଜିର ଭାରତବର୍ଷ ଅନ୍ୟାୟ ଓ ଅତ୍ୟାଚାର ଦ୍ୱାରା ତଥାପି କେତେ଼ ଉତ୍ପୀଡ଼ିତ । ଗୋଟିଏ ପାଖରେ ଅପସଂସ୍କୃତିର ନଗ୍ନପୀଡ଼ା, ଅନ୍ୟ ପାଖରେ ମଣିଷର ଚରମ ଅସହାୟତା । କୌଣସି କବି କ'ଣ ଏପରି ବିଶ୍ୱରେ ଜନ୍ମ ନେବାକୁ ଚାହେଁ ? ଅଣୁ ଅଭିଯାନରେ କାହାର ଜୟ କି କାହାର ପରାଜୟ ଯେ ନାହିଁ, ଅଛି ଖାଲି ସମୂହ ଶ୍ମଶାନ- ଏ ବିଷୟରେ କବି ସଚେତନ । 'ପରଜନ୍ମ' ନାମକ କବିତାରେ ଆଗାମୀ

ଜନ୍ମ ନେବା ପାଇଁ କବି ଚାହାନ୍ତି ନାହିଁ ।

ବୟସ ଅତିକ୍ରାନ୍ତ ହେଲେ ଶୈଶବ ସ୍ମୃତି ଉଦ୍‌ବେଳିତ କରିଦିଏ ହୃଦୟକୁ । କବି ବି ହଜି ଯାଇଛନ୍ତି ପିଲା ଦିନର ସରଳ ଦିନ ଗୁଡ଼ିକ ମଧ୍ୟରେ । 'ବନ୍ଦେ ମାତରମ୍' 'ଗାଁ ଲୋକେ' ଆଦି କବିତାରେ ଶୈଶବ ଭାବନା ମୂର୍ତ୍ତ ହୋଇ ଉଠିଛି ।

କବି ସଚ୍ଚି ରାଉତରାୟଙ୍କ ଆଖି ଏବେ ମ୍ଳାନ ପଡ଼ିଗଲାଣି । ଏ ବୟସରେ ସୁଦ୍ଧା ସେ ତାଙ୍କ ଅନୁଭବ ଉଚ୍ଚାରଣ କରୁଥାନ୍ତି ଅହରହ । ରବୀନ୍ଦ୍ରନାଥଙ୍କ ପରି ସେ ହୁଏତ ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଲେଖୁଥିବେ କବିତା । ନିଜ ଅନୁଭବ ପ୍ରତି ଏକାନ୍ତ ବିଶ୍ୱସ୍ତ ଜଣେ କବି ଆତ୍ମାର କଥା ଉଚ୍ଚାରଣ ନକରି କ'ଣ ରହିପାରିବ ? ପତ୍ନୀ ଭୂଦେବୀଙ୍କ ମୃତ୍ୟୁପରେ ୧୯୯୯ ରେ ସେ ଲେଖିଥିଲେ :

"ମନେହୁଏ ତୁମେ ଅଛ ମୋର ପାଶେ ପାଶେୟ / ଅନୁଭବ କରେ ମୁହିଁ ତୁମର ନିଶ୍ୱାସ / ସମୟର ବେଳା ଭୂଇଁ ପାରେ ।"

ମଣିଷ ହୋଇ ମଣିଷକୁ ନିଃସର୍ତ୍ତ ଭାବରେ ଭଲ ପାଇଲେ କିଏ କି କେବେ ପୃଥିବୀଠାରୁ ବିଚ୍ଛିନ୍ନ ହୋଇ ରହିପାରେ ? କବି ରାଉତରାୟଙ୍କ ଆତ୍ମା ଲକ୍ଷ୍ୟ ମଣିଷଙ୍କ ଦୁଃଖ ସହ ସଂଯୁକ୍ତ । କବି ଆତ୍ମାତ ସବୁଦିନ ଦୁର୍ବଳ, ଦୁଃଖଗ୍ରସ୍ତ ମଣିଷପାଇଁ କ୍ରନ୍ଦନ କରେ । ଉତ୍ତର ଜୀବନରେ ସେଥିପାଇଁ କବି ଗାଆନ୍ତି :

"ଲକ୍ଷ ଲକ୍ଷ ମଣିଷଙ୍କ ଦୁଃଖ ମୋତେ କରେ ଅସ୍ଥିର, କାତର / ଶତାବ୍ଦୀର ମହାବାତ୍ୟା ଚୂର୍ଣ୍ଣ କରେ ଅଜସ୍ର ଜୀବନ / ସେ ଦୁଃଖରେ କାନ୍ଦେ ପୃଥ୍ୱୀ / ସେ ସମୂହ ଲୁହର ପ୍ଲାବନେ ଢ଼ାଳିଦିଏ ନିଜ ଦୁଃଖ / ନିଜ ଅଶ୍ରୁ କଣା / ସବୁରିର ମହାଦୁଃଖେ ଢ଼ାଳିଦେବା ନିଜ ଦୁଃଖ ଶୋକ / ଦେଇପାରେ କିଛି ମୁକ୍ତି ଏବଂ ଶାନ୍ତିର ସନ୍ଦେଶ / ଅଜଶ୍ର ଯନ୍ତ୍ରଣା ମଧ୍ୟେ ଆଣିପାରେ ମୁକ୍ତିର ବିଶ୍ୱାସ ।" (ବିୟୋଗ)

ସକଳ ଯନ୍ତ୍ରଣା ଭିତରେ କବିର କବିତା ହିଁ ତ ପାଠକ ମନରେ ଭରିଦିଏ ଆଶ୍ୱାସନାର ପବିତ୍ର ସ୍ପର୍ଶ । ରାଉତରାୟଙ୍କ କବିତ୍ୱ ପ୍ରେମ ଓ ଶାନ୍ତିର ସେଇ ସଙ୍କେତ ଦେବାରେ ନେଇ ଆସିଛି ଗୁରୁତ୍ୱପୂର୍ଣ୍ଣ ଭୂମିକା । ମାନବିକ ଅନୁଭବର ଏ ସଜୀବତା ତାଙ୍କ କବିତାକୁ ପ୍ରଦାନ କରୁଥିବ ନିଶ୍ଚୟ ସେଇ ଚିରନ୍ତନ ଉଷ୍ଣତା, ଯାହାର ସ୍ପର୍ଶରେ କବି ଓ ପାଠକ ଉଭୟେ ଧନ୍ୟ ହୋଇଯାଆନ୍ତି ।

# ମୁଁ ସଚ୍ଚି ରାଉତରାୟ
# ଓ
# ଗତିବାନ ନକ୍ଷତ୍ରର ଧାର

ପ୍ରାଧ୍ୟାପିକା ଡ. ଜ୍ୟୋସ୍ନା ଦାସ

ଗ୍ରୀକ୍ ପୋଏଟିକସ୍ ଶବ୍ଦର ଅଭିଧା ଅର୍ଥରେ Poet ଶବ୍ଦର ଅର୍ଥର ନିର୍ମାତା । ଏହାର ସମସ୍ତ ସତ୍ତା ସଚ୍ଚିରାଉତରାୟଙ୍କ କବିତା ସମଗ୍ରରେ ଦେଖିବାକୁ ମିଳେ । 'ପାଥେୟ' (୧୯୩୧) ପ୍ରଥମ କବିତା ସଂଗ୍ରହ ଠାରୁ କବିତା ୨୦୦୩- (ପ୍ରକାଶ ୨୦୦୩) କବିଙ୍କର କାବ୍ୟଜଗତ ଗତିବାନ ନକ୍ଷତ୍ରର ଧାରପରି ବିଚିତ୍ରବର୍ଣ୍ଣ ଓ ବହୁମୁଖୀ ଚେତନାର ଆତ୍ମଅନ୍ୱେଷଣ କହିଲେ ଅତ୍ୟୁକ୍ତି ହେବନାହିଁ ।

କବିର ଗୋଟିଏ ଗୋଟିଏ ଧାଡ଼ି କାଳରେ ଗାର ପଡ଼ିଯାଏ । ଯେମିତି ସାରଳା ଦାସଙ୍କ ଭକ୍ତି ଭିତରେ ଦେବୀ ସତ୍ତାର ଐଶ୍ୱର୍ଯ୍ୟମୟ ବିଭୁତିର ଚିତ୍ର, ପଞ୍ଚସଖା ସାହିତ୍ୟରେ ବୈଷ୍ଣବ ଧର୍ମର ଉଚ୍ଚାଙ୍ଗ ଉଚ୍ଚାରଣ ଓ ଉପେନ୍ଦ୍ର ଭଂଜଙ୍କ 'ମୁଁ ଲଭିଛି ଶବଦ ସମୁଦ୍ର ପାର' କି ଭୀମଭୋଇଙ୍କ 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ', ରାଧାନାଥଙ୍କ 'ଚିଲିକାକୁ ସଖୀପ୍ରାୟେ ସ୍ମରୁଥିବା', ଗୋପବନ୍ଧୁଙ୍କର 'ମିଶୁ ମୋର ଦେହ ଏ ଦେଶ ମାଟିରେ', କୁନ୍ତଳା କୁମାରୀଙ୍କ 'ତଥାପି ମୋ ଆମ୍ବଫୁଲ ନଯିବରେ ମଉଳି', ଗଡ଼ନାୟକଙ୍କ "'ଅର୍ଯ୍ୟପୃଥ୍ୱୀ' ଆଉଥରେ କାମଧେନୁ ହୁଅ ଆଜି ତୁମେ" ଏପରି ଅନେକଙ୍କର ଆତ୍ମାର ସ୍ୱର କାଳରୁ କାଳକୁ ରୂପାନ୍ତରିତ ହେବାକୁ ବସିଛି ।

କବିତାକୁ ୨ଟି ଦିଗରୁ ଆଲୋଚନା କରିବାକୁ ହୁଏ । ଗୋଟେ ପଟେ ନିରୋଳା ପାଠକ ଅନ୍ୟପାଖେ କବିତାର ସମୀକ୍ଷକ । ସମାଲୋଚକ ପରମ୍ପରା, ପୁରୋଦୃଷ୍ଟି, ପରିବେଶ, କାବ୍ୟର ଦୋଷଗୁଣକୁ ତନ୍ନ ତନ୍ନ କରି ଖୋଜେ । ପାଠକ କବିତାର ଧାଡ଼ି ଭିତରେ ନିମଜ୍ଜିତ ରହିଯାଏ ।

ସଚ୍ଚି ରାଉତରାୟ ପୂର୍ବବର୍ତ୍ତୀ କାବ୍ୟ ପରମ୍ପରାରୁ (ଭଂଜ, ରାଧାନାଥ, ଗଙ୍ଗାଧର) ବାହାରି ଆସି ନୂଆ ରାସ୍ତା, ନୂଆମୋଡ଼ ଦେଇଛନ୍ତି କାବ୍ୟକୃତିକୁ । "ସେ ଜାଣିଥିଲେ ଯେ - ସାରଳା ଦାସ କିମ୍ବା ଜଗନ୍ନାଥ ଦାସ, ଭଂଜ କିମ୍ବା ଗୋପାଳକୃଷ୍ଣ, କବିସୂର୍ଯ୍ୟ କିମ୍ବା ଗୋଦାବରୀଶ - ଏମାନଙ୍କ କବିତାର ବିଷୟବସ୍ତୁ ଓ ଶୈଳୀ ସହ ଅଭ୍ୟସ୍ତ ବା ସମ୍ପୃକ୍ତ ପାଠକକୁ ତାଙ୍କ ନିଜର ଅପାରମ୍ପରିକ କବିତାର 'ଚେହେରା' ନିଶ୍ଚିତ ଭାବେ ଅଜବ ଲାଗିବ । ଏଣୁ ଆଧୁନିକ କବିତା ପାଇଁ ଆବଶ୍ୟକୀୟ 'ଜଳବାୟୁ' ତିଆରି କରିବା ନିହାତି ଜରୁରୀ ଏବଂ ତାହା ପ୍ରତ୍ୟେକ ଅଗ୍ରଗାମୀ ସାହିତ୍ୟିକର କାମ

ବୋଲି ଥିଲା ତାଙ୍କ ମତ ।" (୧)

ସବୁ ସମୟରେ ଯେଉଁମାନେ ପରମ୍ପରା, ସଂସ୍କୃତି, ଭାଷା, ଇତିହାସ, କଳା, ସଂସ୍କୃତିକୁ ନୂଆ ଢ଼ାଞ୍ଚାରେ ଗଢ଼ନ୍ତି ତାହା ପୂର୍ବସୂରୀ ମାନଙ୍କ ଠାରୁ ଅଲଗା ଏବଂ ହଠାତ୍ ପାଠକୀୟ ଶ୍ରଦ୍ଧା ପାଇପାରେ ନାହିଁ । ଆହରଣ ପ୍ରବଣ ଆଧୁନିକତା ଓ ସଂରକ୍ଷଣ ପ୍ରବଣ ଜାତୀୟତା ଭିତରେ ଦ୍ୱନ୍ଦ୍ୱ ଲାଗିରହେ । କିନ୍ତୁ ସମୟର ସ୍ପନ୍ଦନ ସୃଷ୍ଟି ଭିତରେ ଛାପ ଛାଡ଼ିଯାଏ ।

ବିଂଶ ଶତାବ୍ଦୀର ୩ୟ ଦଶକରେ ବିଶ୍ୱ ସାହିତ୍ୟରେ ଚିନ୍ତାଧାରାର ଯେଉଁ ପରିବର୍ତ୍ତନ ସଂଘଠିତ ହେଲା ତାହା ଓଡ଼ିଆ ସାହିତ୍ୟର ପ୍ରଗତିଶୀଳ ଚିନ୍ତାଧାରା ସହ ଜଡ଼ିତ । ଏହି ପ୍ରଗତିଶୀଳ ଆଧୁନିକତା ଭିତରେ ପଶିଆସିଲା ପୁଞ୍ଜିବାଦ ଓ ସର୍ବହରାର ସ୍ୱର । ୧୯୨୮ ମସିହା ବେଳକୁ 'ଗର୍କି' ତାଙ୍କର 'How learn to write' ? ପ୍ରବନ୍ଧରେ ମଣିଷର ଶ୍ରମକୁ ସମ୍ମାନ ଦେଇଛନ୍ତି । ତାଙ୍କ ମତରେ ଈଶ୍ୱର ମଣିଷର କଳ୍ପନା ପ୍ରସୂତ, ଏ ସମସ୍ତ ଜାଗତିକ ସୌନ୍ଦର୍ଯ୍ୟ ପଛରେ ମଣିଷର ସବୁ ସତ୍ତା ରହିଛି । ଯେମିତି 'କୋଣାର୍କ' କବିତାରେ ଲାବଣ୍ୟମୟୀ କୋଣାର୍କକୁ କବି ମୁଲିଆ ଆଖି ନେଇ ଦେଖିଛନ୍ତି ।

ଋଷି ବିପ୍ଳବର ନାୟକ ଲେନିନ୍' ପ୍ରଥମେ ସାହିତ୍ୟ ଶ୍ରମିକ ଗୋଷ୍ଠୀଙ୍କର ବୋଲି ଦାବୀ କରିଛନ୍ତି । ଚ୍ଚଲସ୍ ଓ୍ୱାର୍ଦ୍ଧ, ହେନେରୀ ଫୋର୍ଡ଼, ଟଲଷ୍ଟୟ ଆଦି ସାହିତ୍ୟ ମାଧମରେ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ଚେଷ୍ଟା କରିଛନ୍ତି । ମାର୍କ୍ସ ତାଙ୍କ ଦର୍ଶନ ମାଧମରେ ସମାଜ ବ୍ୟଷ୍ଟିର ନୁହେଁ ଗୋଷ୍ଠୀର ବୋଲି ପ୍ରମାଣିତ କରିଛନ୍ତି । ମାର୍କ୍ସ ବ୍ୟକ୍ତି ଚେତନା ନେଇ 'ଟିଆରୀ' ଲେଖିଛନ୍ତି "Man is not an object but living Subjectivetivity connected with Othes Subjectivities and he is engaged with them in the task of creating for each one and for others existance, the interaction of which makes history". (2)

ପାରମ୍ପରିକ ବିତର୍କ ହେଉ ଅବା ପାଶ୍ଚାତ୍ୟର ପ୍ରତିଧ୍ୱନୀ ହେଉ ତା' ସବୁର ଉର୍ଦ୍ଧ୍ୱରେ କବି ବକ୍ତବ୍ୟର ପ୍ରତ୍ୟେକ ଧାଡ଼ି ହେଲା ବାସ୍ତବଧର୍ମୀ । କବି ଆଙ୍କିଛି ମାଟି ଓ ଜୀବର ଚିତ୍ର । କବି ସମୟର ଦାସ, ସମୟର ସ୍ରଷ୍ଟା । ଜୀବନ ପ୍ରତି, ପୃଥିବୀ ଗତିଙ୍କର ନିଷ୍ଠା ଗଭୀର । ସଚ୍ଚିରାଉତରାୟଙ୍କର ପ୍ରାୟ କବିତାରେ ମଣିଷର କଥା କୁହାଯାଇଛି । ଅସ୍ତିତ୍ୱବାଦର ଜନକ 'କିର୍‌କେଗାର୍ଡ଼' ମଣିଷ ଛଡ଼ା ଅନ୍ୟର ଅସ୍ତିତ୍ୱ ନାହିଁ ବୋଲି ଘୋଷଣା କରି ମଣିଷକୁ ମହାନ୍ ଓ ଦିବ୍ୟ ପ୍ରାଣୀ ବୋଲି ଆଖ୍ୟା ଦେଇଛନ୍ତି । ମଣିଷର ନିଚ୍ଛକ ବଞ୍ଚିବାକୁ ହିଁ ସ୍ଥିତିବାଦୀ ଦାର୍ଶନିକ ଆଙ୍କିଛି । କିର୍‌କେଗାର୍ଡ଼ ଥରେ କହିଥିଲେ - It is a Philosophy not of things but of the human situation. ସ୍ଥିତିବାଦୀର ଅନୁଭବ ସମକାଳୀନ ବାସ୍ତବବାଦୀ, ମାନବାଦୀ, ମାର୍କ୍ସବାଦ, ପ୍ରକୃତିବାଦ ଏପରିକି ସ୍ୱୈରବାଦରେ ପରିଲକ୍ଷିତ ହୁଏ । ଏହାହିଁ ଥିଲା ସଚ୍ଚିରାଉତରାୟଙ୍କ ସାମଗ୍ରିକ କାବ୍ୟସ୍ୱର । ଅବାଞ୍ଛିତ ଜୀବନକୁ ଜୀବନ୍ୟାସ ଦେବା,

ଅକଥାକୁ କଥାରେ ଭରିବା, ଅଦୃଷ୍ଟକୁ ହାତମୁଠାକୁ ଆଣିବା, ଅନୁଭବ ଅନୁଭୂତିକୁ ବ୍ୟକ୍ତିସତ୍ତା ଭିତରେ ଚିତ୍ରଣ କରି 'ମୁଁ' ତ୍ୱର ଅଭିବ୍ୟକ୍ତି ଭିତରେ ସତ୍ୟ ଘୋଷଣା କରିଛନ୍ତି । କବିତାରେ କବିର ଆବେଗ :-

"ମୁଁ କବି ଧରିତ୍ରୀର, ମାଟିର ମଣିଷର ତଥା / ଗାଇବା ମୋ ଧର୍ମ ମଣେ ଏ ପୃଥିବୀ, ଏ ଆକାଶ କଥା / ତଥାପି ମୁଁ ମୁକ୍ତପକ୍ଷୀ, ଅବା ମୁଁ କି ଯୁଧେଷ୍ଠିଙ୍କ ରଥ / ଭୂଇଁରୁ ଆଙ୍ଗୁଳେ ଛାଡ଼ି ଭାସିଗଲେ ସମୟର ପଥ । / x x x x / ଏ ଧରାର ନାନାରଙ୍ଗ, ନାନା ଧୂଳି, ସୁରଭିତ ବିଚିତ୍ର ମୁହୂର୍ତ୍ତ, / ମୋତେ ଯେ ଆକୁଳ କରେ, କରେ ମୋତେ ବାକ୍‌ମୟ ମୂର୍ତ୍ତ, / x x x x x / କବିତା ମୋ ତେଣୁ ଖାଲି କାବ୍ୟ ନୁହେଁ, ଏ ଯେ ଏକ / ଆବିଷ୍କାର ସଖେ । / ନିଜରଇ ଆକୁଳ ସଂଧାନ / (ଅଥବା) ସେ ନିଜକୁ ନିମିତ୍ତ କରି ଏ ସୃଷ୍ଟିର ଶୁଭ ସମ୍ବୋଧନ ।" (୩)

ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀ ବିଶ୍ୱସାହିତ୍ୟରେ ମଣିଷର ନୂତନ ସ୍ୱର ଶୁଣାଗଲା । ତାହା ପାରମ୍ପରିକ ପ୍ରଭାବରୁ ମୁକ୍ତି ଚାହିଁଲା । ୧୯୨୨ ମସିହା Virginia woolsso 'Jacob's Room' I Jamesjoyece Ulysses I T.S. Eliot u Wasfe Land କାବ୍ୟ ଗ୍ରନ୍ଥ ଶିଳ୍ପୀକୁ ନୂତନ ଖୋରାକ ଯୋଗାଇଲା । ଅସନ୍ତୋଷର ଜୀବନବୋଧରୁ ଜନ୍ମନେଲା ଆଧୁନିକ କବିତା । ୧୯୩୬ ମସିହା ପରେ ମାନବବାଦ ଓ ବାସ୍ତବବାଦ କେତେଜଣ କବିଙ୍କ ରଚନାରେ ପ୍ରକାଶ ପାଇଲା । 'ମାନବ ଶିଶୁ ମୁଁ ଉଚ୍ଚ ମହାନ୍' (୧୯୩୦ ରାମା ରଂଜନ ମହାନ୍ତି) ୧୯୩୬ ମସିହା ବେଳକୁ ଅନନ୍ତ ପଟ୍ଟନାୟକ, ସଚ୍ଚିରାଉତରାୟଙ୍କ କାବ୍ୟ କବିତାରେ ପ୍ରତିଫଳନ ଘଟିଲା । ଏହି ଆଧୁନିକ କବିତାର ମୂଳଉତ୍ସ ଥିଲା ୟୁରୋପର ନାନା ସଂଗ୍ରାମ, ରାଷ୍ଟ୍ର ବିପ୍ଳବ, ଦାର୍ଶନିକ ଚିନ୍ତାର ବିଶ୍ଳେଷଣ । ଫଳରେ କଳା, ଭାସ୍କର୍ଯ୍ୟ ସାହିତ୍ୟରେ ତା'ର ପ୍ରତିଫଳନ ଘଟିଲା ଏବଂ ଏହା ଭାରତୀୟ ଜନଜୀବନକୁ ପ୍ରଭାବ ପକାଇ ଓଡ଼ିଆକୁ ପ୍ରଭାବିତ କଲା । ପ୍ରଥମକରି ସଚ୍ଚିରାଉତରାୟ ବହୁ ଦିଗନ୍ତର ରୂପକୁ କବିତାରେ ଚିତ୍ର ଦେଲେ । ଅର୍ଥନୀତି, ରାଜନୀତି, ପୁଂୟେଦ୍ରିୟ ମନସ୍ତତ୍ତ୍ୱ, ନୈତିକତାର ଅଧୋଗତି, ଦୁଃଖ, ଶୋକ, ପ୍ରେମ, ବୈରାଗ୍ୟ, ଶୂନ୍ୟତା ରୂପ ପାଇଲା । (୧୯୪୭ ମସିହା) 'ପାଣ୍ଡୁଲିପି' ତା'ର ସାକ୍ଷର ବହନ କରିଛି । ବହୁ ଦିଗନ୍ତକୁ ଚିତ୍ରଣ କରିବା ପାଇଁ ଯେଉଁ ଭାଷା ଲୋଡ଼ା ଆଙ୍ଗିକକୁ ସଜାଡ଼ିବା ପାଇଁ ଯେଉଁ ଆଭୂଷଣ ଲୋଡ଼ା ତାକୁ ମଧ ସେ ପାଶ୍ଚାତ୍ୟରୁ ଅନୁସରଣ କରିଥିଲେ । ତାଙ୍କ ଭାଷାରେ "ଯେତେଦିନ ଯାଏଁ ଗଦ୍ୟ ଓ ପଦ୍ୟ ପରସ୍ପର ପାଖାପାଖି ରଖିବା ବ୍ୟବସ୍ଥା ନହୋଇଛି ସେତେଦିନ ଯାଏଁ ସାମାଜିକ ଜୀବନର ଅନ୍ଧି କନ୍ଧିରେ କବିତାର ଯାତାୟାତ ବନ୍ଦ ।" (୪)

କବିତାକୁ ସେ ନୂଆ ପୋଷାକ ପିନ୍ଧାଇଲେ । ଅଳଙ୍କାର ଉତାରି ରାଜଦାଣ୍ଡରେ ଠିଆ କଲେ । ପ୍ରତୀକ, ଚିତ୍ରକଳ୍ପ, ମିଥ୍, ଆର୍କିଟାଇପ୍, ବାକ୍‌ଛାନ୍ଦ, କାବ୍ୟିକ ଛନ୍ଦ, ଗଦ୍ୟଛନ୍ଦ ନାନାବିଧ ବିଦେଶୀ ଆଭୂଷଣ ପ୍ରୟୋଗ କରି କବିତାର

ସୌନ୍ଦର୍ଯ୍ୟକୁ (ବାହ୍ୟ ଓ ଅଭ୍ୟନ୍ତର) ଆଧୁନିକତାରେ ଭରିଦେଲେ ।

ସଚ୍ଚିରାଉତରାୟଙ୍କ ଜୀବନ, ଜଗତ, ମଣିଷ ପ୍ରତି ଧାରଣା ସ୍ୱଚ୍ଛ ଓ ସେ ନିର୍ଭୀକ, ଯାହା ସତ୍ୟ ତାକୁ ପ୍ରକାଶ କରିଛନ୍ତି । କାରଣ ମନରେ କୌଣସି ଧାରଣା ଅଭିବ୍ୟକ୍ତି ମାଧ୍ୟମରେ ହିଁ ପ୍ରକାଶ ପାଇଥାଏ । ସେ ଶିଳ୍ପ ହେଉ ବା କବିତା ହେଉ । ଟି. ଏସ୍. ଏଲିଅଟ୍‌ଙ୍କ ମତରେ, ଜଣେ ଲେଖକର ବା କବିର ଆବେଗ ପ୍ରକାଶ କରିବା ନିମନ୍ତେ ଏକମାତ୍ର ଶ୍ରେଷ୍ଠ ପନ୍ଥା ହେଉଛି 'ଅବ୍‌ଜେକ୍‌ଟିଭ୍' କୋରିଲେଟିଭ୍ ବା ପରସ୍ପର ସମ୍ବନ୍ଧଯୁକ୍ତ ବିଷୟାଶ୍ରୟ । ମନ ଭିତରେ ଗଠିତ ହୋଇଥିବା ପ୍ରତିମା, ଆବେଗ ବା ଅଭିବ୍ୟକ୍ତିକୁ ପ୍ରକାଶ କରିବା ପାଇଁ ବାହ୍ୟବସ୍ତୁ ଜଗତ ଏକ ମାଧ୍ୟମ ଭାବରେ କାର୍ଯ୍ୟ କରେ । ଅର୍ଥାତ୍ ବାହ୍ୟ ଜଗତର କୌଣସି ବସ୍ତୁ, ଘଟଣା ବା ପରିସ୍ଥିତି ହିଁ ମନରେ ପ୍ରତିମାର ବାହକ । ସେଗୁଡ଼ିକର ଆଶ୍ରୟ ଲାଭ କଲେ ଯାଇ ମନର ପ୍ରତିମା ବାହାରେ ପ୍ରକାଶିତ ହୋଇପାରେ" । (୫)

କବିମନର ପ୍ରତିମା ବହୁଧାରେ ବିଭକ୍ତ । କବିର ସ୍ୱର :-

"ଗୋଟାଏ ମଣିଷ ମୁହିଁ ହୁଏ କେତେ ଖଣ୍ଡ / କବିତା ମୋ ପ୍ରସାରଣ ଏକ ଓ ବହୁର / ଉଚ୍ଚାରଣ ସବୁ ମଣିଷର / ପଡ଼ିନାହିଁ ଗୋଟାଏ ଛାଞ୍ଚରେ / ଯାଇଅଛି ଆଗକୁ ଆଗକୁ / ନିଜ ଆବିଷ୍କାରେ / ଚାଲିଛି ଯେ ଏକଇ ଗୁଳାରେ / ଜୀବନର ବିସ୍ତୀର୍ଣ୍ଣ ପ୍ରାଙ୍ଗଣେ / ବାଜେ ତା ନୂପୁର । / ପ୍ରତିସୂର୍ଯ୍ୟୋଦୟେ ଗଢ଼ିଚାଲେ ନୂତନ ଅଧ୍ୟାୟ / କେବେ ଯଦି ତନ୍ତ୍ରର ନାୟିକା ବ୍ରଜ ସାଧନାରେ / କେବେ ସ୍ଥିତିବାଦୀ କନ୍ୟା ମାର୍ଗ ଓ ସ୍ଥାନୀୟ / ନାନା ଚିତ୍ରକଳ୍ପ, ପ୍ରତୀକର ବିନ୍ଦେ / ଦେଖାଦିଏ ସ୍ରୋତସ୍ୱିନୀ, ଜୀବନର ଶତରୂପା / ବହୁଧା ବିସ୍ମୟ / ଜୀବନର ସମସ୍ତ ଆହ୍ୱାନ ଲିଭାଇଚି ଅଙ୍ଗେ ।" (୬)

'ମୁଁ' ବ୍ୟକ୍ତି ସତ୍ତା ମାଧ୍ୟମରେ କବି ଅନେକ କଥା କରିବାକୁ ଦ୍ୱିଧା ମଣିନାହିଁ । କବିଙ୍କ ଭାଷାରେ -

"ମୁଁ ଆସିଚି ବିଂଶ ଶତକର କିନାରା ହୋଇପାରି / ମୋ କଣ୍ଠରେ ଜ୍ୱଳନ୍ତ ବିପ୍ଳବ / କାନ୍ଧରେ ମୋର ପୁରାତନ ଶବ । / ମୁଁ ଅଟେ ଏକ / କବି ପ୍ରଚାରକ, / ପୁଞ୍ଜିବାଦୀ ସମାଜର / ଧ୍ୱଂସର ଗାୟକ । / ଧୈର୍ଯ୍ୟ ମୋର ନାହିଁ / ଅପେକ୍ଷା କରିବା ପାଇଁ / ମୁଁ କହିବାକୁ ଚାହେଁ ଏଇ ମୁହୂର୍ତ୍ତରେ, ଏବେ ।" (୭)

ଅତୀତ ଏଠି ଶବ । କବି ବର୍ତ୍ତମାନ ସମାଜର କଥା କରିବାକୁ ଚାହିଁଛନ୍ତି । ବିପ୍ଳବର ସ୍ୱର ତୋଳିଛନ୍ତି । ତାଙ୍କ କବିତାରେ ଦୁଇଟି ଧାରା ପ୍ରାୟତଃ ଦେଖିବାକୁ ମିଳେ । (୧) ପ୍ରୟୋଗବାଦୀ ଧାରା (୨) ବାସ୍ତବବାଦୀ ଧାରା । ପ୍ରଥମଟି ରୂପତତ୍ତ୍ୱ ଉପରେ ପ୍ରତିଷ୍ଠିତ । କାରଣ ରୂପର ଗତି ପରିବର୍ତ୍ତନଶୀଳ । ଏହି ରୂପତତ୍ତ୍ୱ ଅନେକ ତତ୍ତ୍ୱର ସମାହାର, ଛାୟାବାଦ, ରହସ୍ୟବାଦ, ମନସ୍ତତ୍ତ୍ୱବାଦ, ଚିତ୍ରକଳ୍ପବାଦ ସବୁର ମିଶ୍ରଣରେ ତାଙ୍କ କବିତାର ଗଢ଼ଣ ଦେଖିବାକୁ ମିଳିଛି । କଳାସୃଷ୍ଟିରେ କବିତାର ଅଙ୍ଗ ଚିରକାଳ ପାଠକକୁ ଆକୃଷ୍ଟ କରି ରଖିଛି । ୨ୟଟି ବାସ୍ତବବାଦ ଏଥିରେ ସମୟ, ସମାଜ, ବିଶ୍ୱ ସାହିତ୍ୟର ଦର୍ଶନ, ଚିତ୍ରକଳା ଇନ୍ଧନ ଯୋଗାଇଛି । ଏହି ବାସ୍ତବବାଦର

ଦୁଇଟି ରୂପ (୧) ଇନ୍ଦ୍ରିୟ ଅନୁଭୂତିର ସ୍ୱର (୨) ସମାଜର ନଗ୍ନରୂପର ଚିତ୍ର । 'ଲୁଚି' (Luchi) ଙ୍କ ଭାଷାରେ – To heaver and earthin the case of form. କବି ଜଣେ ମଣିଷ ଓ ଶିଳ୍ପୀ ଏ ଦୁଇଟି କଥା ସଚ୍ଚିରାଉତରାୟଙ୍କ କବିତାର ଦର୍ଶନ । ପ୍ରଥମସ୍ୱର ମଣିଷ ପାଇଁ ୨ୟଟି କବିତାର ଶିଳ୍ପ ଚାତୁରୀ ଯାହା ଆମ ପରମ୍ପରାରୁ ବ୍ୟତିକ୍ରମ ଓ ଅନୁଭୂତି ସର୍ବସ୍ୱ । ୧୯୪୬ ମସିହା ପରେ ନୂଆଖାଲି ଓ କଲିକତା ଦଂଗା ପୃଷ୍ଠଭୂମିରେ ମଣିଷର କଥା କହିଛନ୍ତି ଚମତ୍କାର ଚିତ୍ରକଳ୍ପ ମାଧ୍ୟମରେ–

"ମାଟିଆ ବୁରୁଜର ମଇଳା ଆକାଶରେ / ଜହ୍ନ ଉଠିଛି / ଛୋଟ ଛୋଟ ଆଲୁଅରେ ବୀଚି / ଚଇଁଆଡ଼େ ଖେଳେ / ଜହ୍ନ ଉଠୁଛି ଆହା ଉଠୁ ଉଠୁ । / ପଦ୍ମ ଫୁଟୁ ଏଇ ଅନ୍ଧାରରେ / ମୋ ମନରେ ବି ବେଳେ ବେଳେ ଜହ୍ନ ଉଠେ / ସୂର୍ଯ୍ୟ ଛୁଟେ ।" (ମାଟିଆ ବୁରୁଜରେ ଜହ୍ନ)

କାବ୍ୟିକ ଛନ୍ଦ ଭିତରେ ଜୀବନ ଛନ୍ଦରେ ଆଶାବାଦ ସୂଚନାର ସ୍ୱର ଉକୁଟି ଉଠୁଛି । ତଳମଣିଷ ପାଇଁ ତାଙ୍କର ଭାବନା ଏଠି ନିଆରା । ଯେଉଁ ମନ ଭିତରେ ଜହ୍ନ ଉଠେ ସେ ମନ ବି ବେଳେ ବେଳେ କେତେ ଶୁନ୍‌ଶାନ୍ ତା'ର ଏକ ମାର୍ମିକ ଚିତ୍ର ଦେଖିବାକୁ ମିଳେ –

"ଆଉ ଏଇ ଟିଣର ସହର / ଖେଣ ଜହ୍ନ ଫିକା ମନ, ଜାଲ ପଠା / ଆନିକଟ ନକଲି ଜୁଆର / ନିଅନର ଆଲୁଅର ଝଡ଼ / ଆଉ ଖାଁ ଖାଁ ଶୁନ୍‌ଶାନ୍ ଏକର ଏକର / ବାଲୁଚର ମନ ।" (୮)

ଅମୁହାଁ ସୁଡ଼ଙ୍ଗ, ନିଷ୍ଛିଦ୍ର ଗଳି, ଭଙ୍ଗା ବାରଣ୍ଡା, ନିର୍ଜନସିଡ଼ିରେ ନିଜକୁ ଦେଖିବା ଅର୍ଥ ଜୀବନର ଅନ୍ଧାର ପକ୍ଷକୁ ତର୍ଜମା କରିବା । ଏଥିପାଇଁ ସେ ଯେଉଁ ଶବ୍ଦ ବ୍ୟବହାର କରିଛନ୍ତି ତାହା ଆଦର୍ଶ ଓ କଳ୍ପନାରୁ ବାହାରେ; ଯାହା ଜୀବନର ନିରାଟ ସତ୍ୟ ତାକୁଇ ପ୍ରକାଶ କରିଛନ୍ତି । କବି ଭାଷାରେ –

"ସହରର ମିଞ୍ଜି ମିଞ୍ଜି କିରାସିନୀ ବତୀ ଖୁମ୍ୱେ ଖୁମ୍ୱେ / ଅବା କେଉଁ ଅମୁହାଁ ସୁଡ଼ଙ୍ଗେ / ଅବା ନିଷ୍ଛିନ୍ନ ଗଳିରେ, / ନିଜକୁ ଦେଖିବା ସେଇ ଭଂଗା ବାରଣ୍ଡାରେ / ନିର୍ଜନ ସିଡ଼ିରେ ।" (୯)

ଏଇ ନୂତନ ଚେତନା ନୂତନ ଶବ୍ଦ କବିଙ୍କୁ ଦେଇଛି ସାରା କାଳର ସଫଳତା, ଏଇ ସଫଳତା ପଛରେ T.S. Eliot ଓ ଫ୍ରଏଡ଼ଙ୍କର ପ୍ରଭାବ ପଡ଼ିଲେ ମଧ୍ୟ ଏହି ଶବ୍ଦର ସତ୍ୟକୁ ଖୋଲାଖୋଲି ଭାବେ ପାଠକ ପାଖରେ ପହଞ୍ଚେଇବା ମଣିଷ ଜୀବନର ବାସ୍ତବତାକୁ ସମ୍ପୂର୍ଣ୍ଣ ଭାବେ ଦେଖେଇବାର କଳା କେବଳ ସଚ୍ଚିରାଉତରାୟଙ୍କ ପାଖରେ ହିଁ ସମ୍ଭବ ହେଇପାରିଛି ।

ଆଧୁନିକ ମଣିଷ ନିଜକୁ ଲୁଚେଇ ପାରେନି କି ଆଧ୍ୟାତ୍ମିକତାର ଘୋଡ଼ଣୀରେ ଘୋଡ଼େଇ ପାରେନି । ସେ ସମ୍ପୂର୍ଣ୍ଣ ଭାବେ ଖୋଲିବାକୁ ଚାହେଁ । ମଣିଷ ମନ ହିଁ ଇନ୍ଦ୍ରିୟର ନିବୁଜ କୋଠରୀ । ଅଚେତନ ମନରେ ଅସଂଖ୍ୟ କାମନା ବାସନା ହୋଇଥାଏ । ଫ୍ରଏଡ଼ଙ୍କ ଭାଷାରେ– "Mental Processes are essentially Un-

conscious and that those which are conscious are mesely isolated acts and parts of those whole Psychicentity." (10) ସେଥିପାଇଁ ସଚ୍ଚିରାଉତରାୟ ପ୍ରଥମକରି ଯୌନଜଟିଳତାକୁ ଆତ୍ମପ୍ରକାଶ କରିବାରେ କୁଣ୍ଠା ପ୍ରକାଶ କରି ନାହାନ୍ତି । ମଣିଷ ଭିତରେ ଥିବା ଜାନ୍ତବକ୍ଷୁଧା କେତେ ତୀବ୍ର ତାହା ତାଙ୍କ କବିତାରେ ସ୍ପଷ୍ଟ । କବିଙ୍କ ଭାଷାରେ-

"ରାତ୍ରିର ତିମିର ସାଥେ ଭାସିଆସେ ନାରୀ ଦେହ ଗନ୍ଧ / ଭିତରର ବ୍ୟାଘ୍ରମୋର ଜିଭଚାଟେ ଭୁଲି ବାଧାବନ୍ଧ / ରମଣୀର ଛାୟା ଭାସେ ରାତ୍ରିଟୀରେ ଲଭେସେ ଆସ୍ୱାଦ /ନାରୀମାଂସ ନାରୀଦେହ ଆଘ୍ରାଣର ସେ ଲଭେ ଆସ୍ୱାଦ ।" (ଶରୀର ସଙ୍ଗୀତ-ପାଣ୍ଡୁଲିପି)

ବ୍ୟକ୍ତି ସର୍ବସ୍ୱ ଚେତନାର ରୂପ ଏଠି ସ୍ପଷ୍ଟ । ଫ୍ରଏଡ଼ଙ୍କ ଏହି ଚେତନା ଯେଉଁ ଚେତନା ଦେଇ ଅଭିବ୍ୟକ୍ତବାଦକଳା ଆତ୍ମ ପ୍ରକାଶ କରିଛି ସାହିତ୍ୟରେ ଏବଂ ଯାହା ସଚ୍ଚି ରାଉତରାୟଙ୍କ ଉପରେ ଗଭୀର ପ୍ରଭାବ ପକାଇଛି ତାହା ଅନୁମିତ ହୁଏ । ଆଧୁନିକ କବିତାରେ ଏହା ଏକ ବଳିଷ୍ଠ ଦିଗ । ଏଠି ବ୍ୟକ୍ତି ସର୍ବସ୍ୱ ଚେତନା ଦେଇ ସାମଗ୍ରିକ ଚେତନା ରୂପାନ୍ତରିତ ହୋଇଛି । କାରଣ (Sex Instinct) ମଣିଷ ପ୍ରକୃତିର ମୃତ୍ୟୁ ନାହିଁ ଏ ପ୍ରକୃତି ମୃତ୍ୟୁ ସହ ତୁଳିତ । ମୃତ୍ୟୁସତ୍ୟ, ଦେହସତ୍ୟ, କାମନା ବି ସତ୍ୟ । ମୃତ୍ୟୁ ଓ ଯୌନତା ହାତ ଧରାଧରି ହୋଇ ଚାଲିଛନ୍ତି ଅନାଦି କାଳରୁ । ଆଉ ଏକ ମନ ଗହୀରର ଭାଷା କବିର-

"ଶରୀରର ଗୁପ୍ତ ପଥେ ସୁପ୍ତ ମୋର ଅଚେତନ ସତ୍ତା / ବାରେ ବାରେ ଦୁସ୍ୟସମ ମହାଭୟେ ତୋଳେନତ ମଥା / ଅବଲୁପ୍ତ ଅନୁଭୂତି ମାଗେ ମୋର ଆଜିବନ ଆୟୁ / ଯେସନ ଜରାୟୁ ।" (ଶରୀର ସଙ୍ଗୀତ-ପାଣ୍ଡୁଲିପି)

ଦ୍ରୌପଦୀର ଶାଢ଼ୀ କବିତାରେ -

"ମୃତ୍ୟୁ ଆଉ ମୈଥୁନ ଯେପରି ହାତ ଧରାଧରି ହୋଇ / ଚାଲିଛନ୍ତି ଅନାଦି କାଳରୁ / ରତିହ୍ରସ୍ୱ ରାତିର ଗହ୍ୱରୁ / ମାଦ୍ରି ଡାକେ ବାରେ ବାରେ / ମୃଖୁ ଆଉ ସମ୍ଭୋଗ ଶେଜରୁ ।" (ଦ୍ରୌପଦୀର ଶାଢ଼ୀ)

T.S. Eliot ଓ ୟେଟ୍‌ସ୍‌ଙ୍କ ଦ୍ୱାରା ମିଥ୍ ପଦ୍ଧତି ଓଡ଼ିଆ କବିତାକୁ ଆସିଥିଲେ ମଧ ଭାରତୀୟ ପରମ୍ପରାରେ ପୁରାଣକୁ ଭିତ୍ତି କରି ମିଥ୍ ସୃଷ୍ଟି ହୋଇଚି । ମିଥ୍ ସହିତ ଶବ୍ଦ ମାନଙ୍କର ଯଥାର୍ଥ ସଂଯୋଗ ଘଟିଛି । ଶବ୍ଦ ଗୁଡ଼ିକ ଯଦି ମିଥ୍ ସହ କଥା ନକୁହେ ତେବେ କବିତାରେ ଅସଂଗତି ଘଟେ । ଏହି ମିଥ୍‌କୁ କବି ଆଧୁନିକରଣର ସମସ୍ୟା ଭିତରେ ସଂଯୋଗକରି ମଣିଷ ମନରେ ଥିବା ଯୌନପୀଡ଼ନର ଚିତ୍ରକୁ 'ମାଦ୍ରି' (ପୌରାଣିକ ଚରିତ୍ର) ମାଧ୍ୟମରେ ରୂପାୟିତ କରିଛନ୍ତି ।

ସବୁର ଉର୍ଦ୍ଧ୍ୱରେ ମଣିଷର କଥା କହିଛନ୍ତି କମି, ମଣିଷ ପାଇଁ ଆଙ୍କିଛନ୍ତି ଜୀବନର ଜଳଛବି । Wordswosth Lysical ballad ରେ କବି ସତ୍ତାକୁ - A Poet is

a man speaking to man – କବି ମଣିଷ । କବି ତା କାବ୍ୟର ନାୟକ । "ଯଥାସୈଂ ରୋଚ୍ୟତେ ବିଶ୍ୱ ତଥୈବ ପରିବର୍ତ୍ତତେ" । ମଣିଷର ଅଶ୍ରୁ, ପ୍ରେମ, ସୁଖ, ଦୁଃଖ ସବୁର ରୂପକାର । ସମାଜର ପରିବର୍ତ୍ତନ କବିର ମୂଳ ଲକ୍ଷ୍ୟ । 'ମୁଁ' ବ୍ୟକ୍ତିସତ୍ତା ଭିତରେ ଆଗାମୀ କାଲିର ସତ୍ୟ ଘୋଷଣା କରିଛନ୍ତି । କବିର ସ୍ୱର-

"ମୁଁ ବିପ୍ଳବ ମୁଁ ମହାକାଳ / ମୁଁ ଇ ସେଇ ଅନାଗତ ସ୍ୱପ୍ନର ସକାଳ / ମୁଁ ସମଷ୍ଟି, ବିସ୍ତୃତ ସତ୍ତାର / (ସତ୍ତାର ବିନାଶ ନୁହେଁ ତାର ରୂପାନ୍ତର) / ମୁଁ ବିସ୍ତାର ରାଷ୍ଟ୍ରର ରାଜ୍ୟର / ରାଷ୍ଟ୍ରହୀନ, ନୈରାଜ୍ୟିକ / ମଣିଷ ଜାତିର / ମୁଁ ଇ ସେଇ ଅଦୃଷ୍ଟ ତାରିଖ / ଆଗାମୀ କାଲିର ।" (କବିତା ୧୯୬୯, 'ବିପ୍ଳବ' କବିତା)

କବିର ସମଗ୍ର କବିତାରେ ଆଗାମୀ ସକାଳର ସନ୍ଧାନ ଦେଇଛନ୍ତି । ସଚ୍ଚି ରାଉତରାୟଙ୍କ କବିତାର ମୂଲ୍ୟାୟନ ସମ୍ପର୍କରେ ଏତିକି କୁହାଯାଇପାରେ – "କଳା ଓ ସାହିତ୍ୟରେ ଶୀର୍ଷତାର ସଂକୋଚନ ମୂଲ୍ୟବୋଧନ ସଂକୋଚନ ସହିତ ଘନିଷ୍ଠ ଭାବେ ଜଡ଼ିତ । ଆଧୁନିକ ଶିଳ୍ପୀ ମହାନ ଓ ତୁଚ୍ଛ ବସ୍ତୁକୁ ସମଦୃଷ୍ଟିରେ ଦେଖେ । ତା'ର ତୂଳୀ ସମସ୍ତଙ୍କୁ ସମାନ ଗୁରୁତ୍ୱ ଦିଏ । କଳା କ୍ଷେତ୍ରରେ ଏହା ଏକ ବୈପ୍ଳବିକ ପରିବର୍ତ୍ତନ । ଉଚ୍ଚକୋଟୀର କଳାର ବିଷୟବସ୍ତୁ ମହାନ୍ ଓ ପବିତ୍ର ହେବା ଅପରିହାର୍ଯ୍ୟ ବୋଲି ପାଶ୍ଚାତ୍ୟର ଯୁଗ ଯୁଗର ଧାରଣାକୁ କ୍ୟୁବିଷ୍ଟମାନେ ଭାଙ୍ଗିଦେଲେ । ଅଙ୍କନ ପାଇଁ ଟେବୁଲ୍, କପ୍ ବା ଡଷ୍ଟବିନ୍ ପରି ସାଧାରଣ ବା ତୁଚ୍ଛବସ୍ତୁ ବାଛି ସେମାନେ ଅଭିନବ ଉଚ୍ଚକୋଟୀର କଳା ସୃଷ୍ଟି କରିଛନ୍ତି । କେବଳ କଳାକ୍ଷେତ୍ରରେ ନୁହେଁ, ସାହିତ୍ୟରେ ମଧ୍ୟ ତୁଚ୍ଛ ବସ୍ତୁ ଓ ଘଟଣାମାନ ସେମାନଙ୍କର ଦାବୀ ସାବ୍ୟସ୍ତ କରିଛନ୍ତି । (୧୧)

**ଶେଷଟୀକା**

(୧) କୋଣାର୍କ, ଆଧୁନିକ ଓଡ଼ିଆ କବିତା ବିଶେଷାଙ୍କ, ଭଗବାନ ଜୟସିଂ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କାବ୍ୟର ଆଧୁନିକତା ।
(2) A esthetics of modernism - P.26, 1970.
(3) କବିତାର ସଂଜ୍ଞା, ଗ୍ରନ୍ଥାବଳୀ, ପ୍ରଥମ ଖଣ୍ଡ, ପୃ-୫୧୫ ।
(୪) ନାନ୍ଦୀମୁଖ-ପୃ-୮, ପାଣ୍ଡୁଲିପି ।
(୫) ସାହିତ୍ୟରେ ଅଭିବ୍ୟକ୍ତିବାଦ, ଡ. ଦିନବନ୍ଧୁ ମିଶ୍ର, ପୃ-୧୭ ।
(୬) କବିତାର ଜନ୍ମଦିନେ-କବିତା ୧୯୮୭ ।
(୭) ରାଜଜେମା, ଗ୍ରନ୍ଥାବଳୀ, ୧ମ, ପୃ-୧୫୦ ।
(୮) କବିତା ୧୯୬୯- 'ଲଳିତା' କବିତା ।
(୯) ସ୍ୱଗତ(୩)-ସ୍ୱର୍ଗତ-ସଚ୍ଚରାଉତରାୟ ଗ୍ରନ୍ଥାବଳୀ-ପୃ-୫୨୩ ।
(୧୦) Boxi & Live Right edition, Published 1926.A.V. Petrovsky-P.25.
(11) ସାହିତ୍ୟରେ ଅସ୍ତିତ୍ୱବାଦ, ଅସ୍ତିତ୍ୱବାଦର ମର୍ମକଥା, ଶରତ କୁମାର ମହାନ୍ତି, ପୃ-୪୦୦ ।

# ଓଡ଼ିଆ କାବ୍ୟକାନନରେ ଖୋରଧା ଶିକ୍ଷାଳୟର କିଶୋର-କଳିକା

*ପ୍ରାଧ୍ୟାପକ ଗୋପାଳକୃଷ୍ଣ ଦାସ*

ବ୍ରିଟିଶ୍ ରାଜତ୍ୱକାଳରେ ଖ୍ରୀ.୧୮୪୫ରେ ସ୍ଥାପିତ ଖୋର୍ଦ୍ଧା ହାର୍ଡିଞ୍ଜ ସ୍କୁଲ- ଖ୍ରୀ.୧୮୬୫ରେ ରୂପାନ୍ତରିତ ଖୋର୍ଦ୍ଧା ମିଡିଲ୍ ଇଂଲିଶ୍ ସ୍କୁଲ- ପରିଶେଷରେ ଖ୍ରୀ.୧୮୯୬ରେ ରୂପାନ୍ତରିତ ଖୋର୍ଦ୍ଧା ହାଇଇଂଲିଶ୍ ସ୍କୁଲ- ଦେଶ ସ୍ୱାଧୀନତା ପ୍ରାପ୍ତି ପରେ ଖ୍ରୀ.୧୯୫୦ରେ ନାମାନ୍ତରିତ ବକ୍ସି ଜଗବନ୍ଧୁ ବିଦ୍ୟାଧର ଉଚ୍ଚବିଦ୍ୟାଳୟ- ଚାରିଟି ସ୍ତରରେ ବିକଶିତ ଏହି ଖ୍ୟାତି ସଂପନ୍ନ ଶିକ୍ଷାନୁଷ୍ଠାନ ରାଜ୍ୟ ତଥା ଦେଶର ଶିକ୍ଷା ସାହିତ୍ୟ କଳା ସଂସ୍କୃତି, ସ୍ୱାଧୀନତା ସଂଗ୍ରାମ, ଇତିହାସ, ଅର୍ଥନୀତି ଓ ବହୁବିଧ ବିକାଶଧାରାରେ ରଖିଛି ଅନନ୍ୟ ଅବଦାନ । ପ୍ରଜ୍ଞାତୀର୍ଥ ଏହି ଶିକ୍ଷାଳୟର ପ୍ରଧାନ ଶିକ୍ଷକ, ସହକାରୀ ଶିକ୍ଷକ ଓ ଛାତ୍ରଛାତ୍ରୀମାନେ ସାରସ୍ୱତ କାନନକୁ ଆପଣାର ସୃଷ୍ଟି ସଂଭାରରେ କରିଛନ୍ତି ସୁରଭିତ ।

ଖୋର୍ଦ୍ଧା ସ୍କୁଲ ସହିତ ପଣ୍ଡିତ ଗୋଦାବରୀଶ ମିଶ୍ର (୧୮୮୬-୧୯୫୬) ଓ ଉତ୍କଳଭାରତୀ କୁନ୍ତଳା କୁମାରୀ ଥିଲେ ଘନିଷ୍ଠ ଭାବେ ସମ୍ପୃକ୍ତ । ଏହି ସ୍କୁଲର ପ୍ରଥମ ପ୍ରଧାନଶିକ୍ଷକ ମାଧବଚନ୍ଦ୍ର ମିଶ୍ରଙ୍କ ତତ୍ତ୍ୱାବଧାନରେ ଗୋଦାବରୀଶ ଉଚ୍ଚ ପ୍ରାଥମିକ ପରୀକ୍ଷା ଦେଇଥିଲେ । ସ୍କୁଲର ବିଶାଳ ଲାଇବ୍ରେରୀ (ବର୍ତ୍ତମାନର ଖୋର୍ଦ୍ଧାଥାନା)କୁ କିଶୋରୀ କୁନ୍ତଳା କୁମାରୀ ପ୍ରତ୍ୟହ ଆସି ବହୁ ବିରଳ ଗ୍ରନ୍ଥ ଅଧ୍ୟୟନ କରୁଥିଲେ । ଗୋଦାବରୀଶ ବିଦ୍ୟାଳୟର ବିବିଧ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ ।

ସାରା ରାଜ୍ୟରେ ପ୍ରଖ୍ୟାତ ପ୍ରଧାନଶିକ୍ଷକ ରାୟସାହେବ (୧୮୮୯-୧୯୬୧), ବାଙ୍କନିଧି ପଟ୍ଟନାୟକ ଫକୀରମୋହନୋ ର ଅଙ୍ଗୁଳିମେୟ ଗାଳ୍ପିକ ଓ ଶିଶୁ ସାହିତ୍ୟିକ ଭାବେ ଥିଲେ ସୁପରିଚିତ । ଉତ୍କଳ ସାହିତ୍ୟ, ମୁକୁରରେ ତାଙ୍କ ଲେଖା ପ୍ରକାଶିତ । ଚତୁର୍ଥ ଦଶକରେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ମାଟ୍ରିକ୍ ସିଲାବସ୍‌ରେ ତାଙ୍କ ଧୂପଛାୟା ଗ୍ରନ୍ଥ ଥିଲା ଅନ୍ତର୍ଭୁକ୍ତ । ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ତାଙ୍କ ଗ୍ରନ୍ଥାବଳୀ ପ୍ରକାଶିତ । ୧୯୬୦ରେ ଓଡ଼ିଶାର ପ୍ରଥମ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ପ୍ରଧାନଶିକ୍ଷକ ଦିବ୍ୟସିଂହ ପଟ୍ଟନାୟକ (୧୮୯୭-୧୯୭୦) ଓଡ଼ିଆ ସାହିତ୍ୟରେ ପ୍ରଥମ ଦଳିତ ଉପନ୍ୟାସ ମାଧ୍ୟମିକ ଶ୍ରେଣୀରେ ପାଠ୍ୟପୁସ୍ତକ ହରିଜନ ନନ୍ଦ (ପ୍ରକାଶ- ୧୯୩୩) ଓ କୃଷ୍ଣ ବନ୍ଦେ ଜଗତ୍ ଗୁରୁମ୍ ଗ୍ରନ୍ଥର ପ୍ରଣେତା ପ୍ରଧାନଶିକ୍ଷକ ମୁରଲୀଧର ପ୍ରଧାନ (୧୯୧୯-୨୦୧୮) ଜଣେ ବରିଷ୍ଠ ସାରସ୍ୱତ ସାଧକ ଭାବେ ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ । ଗଳ୍ପ, ପ୍ରବନ୍ଧ, ଇତିହାସ, ଶିଶୁ ସାହିତ୍ୟ ଆଦି ବିଷୟକ ତାଙ୍କର ରହିଛି ୨୦ରୁ ଊର୍ଦ୍ଧ୍ୱ ପୁସ୍ତକ । ୧୯୮୬ରେ ପ୍ରଧାନଶିକ୍ଷକ ରୂପେ ଦାୟିତ୍ୱ ନିର୍ବାହ କରିଥିବା ପଦ୍ମଲୋଚନ ପାଲଟାସିଂହଙ୍କ ପ୍ରବନ୍ଧ ବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ଥିଲା ପ୍ରଚଳିତ ।

ଏହି ପ୍ରଥିତଯଶା ଶିକ୍ଷାନୁଷ୍ଠାନରେ ସହକାରୀ ଶିକ୍ଷକ ରୂପେ କାର୍ଯ୍ୟ କରିଥିବା ଶିକ୍ଷକଶିକ୍ଷିକାମାନଙ୍କ ମଧ୍ୟରେ ଡମ୍ବରୁଧର ପରିଡ଼ା, ପଣ୍ଡିତ ଭଗବାନ ହୋତା, ପଣ୍ଡିତ ହରିକୃଷ୍ଣ ପ୍ରଧାନ, ପଦ୍ମଚରଣ ପଟ୍ଟନାୟକ, ଆଶୁତୋଷ ବାଗଚୀ, ଜଗଦାନନ୍ଦ ମହାନ୍ତି (୧୯୦୪- ୧୯୯୩), ରାଧାଚରଣ ସାହୁ, ଲକ୍ଷ୍ମୀଧର ମିଶ୍ର (୧୯୩୨), ଦୟାନିଧି ସାହୁ, ଆରତୀମଞ୍ଜରୀ ଦାଶ ପ୍ରଭୃତି ଥିଲେ ସାହିତ୍ୟସେବୀ ।

କବି ଡମ୍ବରୁଧର ପରିଡ଼ା (ଜନ୍ମସ୍ଥାନ- ଗୋଳବାଇ ଶାସନ) ଜଣେ କବି, ଗାଳ୍ପିକ, ଶିଶୁ ସାହିତ୍ୟିକ, ସମାଲୋଚକ, ଅନୁବାଦକ ଓ ପାଠ୍ୟପୁସ୍ତକ ସଂକଳକ ଭାବେ ଥିଲେ ସୁପରିଚିତ । ପୁରାଣ ଓ ଇତିହାସ ଅବଲମ୍ବନରେ ତାଙ୍କର ରହିଛି ଶତାଧିକ କବିତା । ଆଦ୍ୟତାରୁଣ୍ୟରେ କବିନ୍ଦ୍ର ରବିନ୍ଦ୍ରଙ୍କ ପ୍ରଭାବରେ ସେ କବିତା ରଚନାରେ ଥିଲେ ନିମଗ୍ନ । "ପ୍ରଦୀପ", "ତ୍ରିବେଣୀ" ଓ "କବିତା ମଞ୍ଜରୀ" ପ୍ରଭୃତି କବିତା ସଂକଳନର ସେ ସାର୍ଥକ ସ୍ରଷ୍ଟା । ପ୍ରଦୀପରେ ପୌରାଣିକ, ଐତିହାସିକ ଓ ଆଧୁନିକ ଆଦି ବାଇଶଟି କବିତା ଓ ତ୍ରିବେଣୀରେ ମଧ୍ୟ ଅନୁରୂପ ବାଇଶଟି କବିତା ଗ୍ରନ୍ଥିତ । ଉତ୍କଳ ସାହିତ୍ୟ, ସହକାର ଆଦିରେ ୧୯୩୨-୩୩ରେ ତାଙ୍କର ଆତ୍ମପ୍ରକାଶ । ତାଙ୍କ କବିତାର ଏକ କଳନାରେ ଡ. ମାୟାଧର ମାନସିଂହ ଉଲ୍ଲେଖ କରିଛନ୍ତି- "ଡମ୍ବରୁବାବୁଙ୍କ କବିତାଗୁଡ଼ିକ ନିରାଡ଼ମ୍ବର, ଲଜ୍ଜାଶୀଳ । ସେ ତାଙ୍କର ପ୍ରତ୍ୟକ୍ଷ ଅନୁଭୂତିକୁ ବେଳେବେଳେ ଭାଷାରେ ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି- ତାହା ହିଁ ତାଙ୍କ କବିତା ।"

ତାଙ୍କ ସମ୍ପର୍କରେ ସୁସମାଲୋଚକ ପ୍ର. ନିତ୍ୟାନନ୍ଦ ଶତପଥୀ ସବୁଜରୁ ସାଂପ୍ରତିକ ଗ୍ରନ୍ଥରେ ଲେଖିଛନ୍ତି- ଶ୍ରୀ ପରିଡ଼ାଙ୍କ କାବ୍ୟଚେତନାରେ ଦେଶୀ ଓ ବିଦେଶୀ ବହୁ ସ୍ୱରର ଗୁଞ୍ଜରଣ ଶୁଣାଯାଏ । ଜଳାବର୍ତ୍ତର ଅସହାୟ ନିମ୍ନଗାମୀ ମଣିଷ ଯେପରି ଖୁବ୍ ବ୍ୟାକୁଳତାରେ ଆତ୍ମୋଦ୍ଧାର ପାଇଁ ଚେଷ୍ଟାଶୀଳ ହୁଏ । ମୋର ମନେହୁଏ ଶ୍ରୀ ପରିଡ଼ା ମୌଳିକ କାବ୍ୟ ପ୍ରତିଭାର ଅଭାବରେ ସେହିପରି ଚାରିଆଡ଼କୁ ହାତ ବଢ଼ାଇ ଅବଲମ୍ବନ ଖୋଜିଛନ୍ତି । ଶେଷକୁ ନିଜ ଜନ୍ମସ୍ଥାନର ବରୁଣେଇ ପର୍ବତ ତାଙ୍କ ଚିନ୍ତାରେ ଅତୀତର କେତେକ ଗୌରବାବହ ସ୍ମୃତି ଜାଗରୁକ କରାଇଛି । ଡ. ବାଉରୀବନ୍ଧୁ କର କହନ୍ତି- "କବିତା ମଞ୍ଜରୀ, ତ୍ରିବେଣୀ ଓ ପ୍ରଦୀପ କବି ଭାବରେ ଡମ୍ବରୁଧର ପରିଡ଼ା ସୁପରିଚିତ । ସେ ଅନେକାଂଶରେ ତରୁଣ ବୟସରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାବଧାରାରେ ଅନୁପ୍ରାଣିତ ହୋଇ କବିତା ଗ୍ରନ୍ଥରେ ମନୋନିବେଶ କରିଥିଲେ । ସେ ଖଣ୍ଡଗିରି, କୋଣାର୍କ, ଗୌରବ ଶ୍ମଶାନ (ବରୁଣେଇ ପର୍ବତ) ପ୍ରଭୃତି କବିତାରେ ତାଙ୍କର ସ୍ୱଦେଶ ପ୍ରେମର ପରିଚୟ ଦେଇଛନ୍ତି ।"

ପଣ୍ଡିତ ଭଗବାନ ହୋତା ଥିଲେ ଖୋର୍ଦ୍ଧା ହାଇସ୍କୁଲର ଖ୍ୟାତନାମ୍ା ଶିକ୍ଷକ । ଓଡ଼ିଶାର ଲୋକଗୀତର ପ୍ରଥମ ସଂଗ୍ରାହକ, ୧୯୧୪ମସିହାରେ ତାଙ୍କର ଓଡ଼ିଆ ପ୍ରବାଦମାଳା ପ୍ରକାଶିତ । "କୌତୁକ ପ୍ରଶ୍ନମାଳା", "ହଟକେଶ୍ୱର ଜଣାଣ" ଓ "ଫଗୋଲର ଉତ୍ପତି ଓ ତହିଁର କ୍ରମବିକାଶ"ତାଙ୍କର କେତୋଟି କୃତି । ପଣ୍ଡିତ ହରିକୃଷ୍ଣ ପ୍ରଧାନ ମଧ୍ୟ ୨୦ରୁ ଉର୍ଦ୍ଧ୍ୱ ଗ୍ରନ୍ଥର ପ୍ରଣେତା ।

ଏହି ଖ୍ୟାତନାମା ଶିକ୍ଷାନୁଷ୍ଠାନର ଛାତ୍ର କବିଚନ୍ଦ୍ର କାଳିଚରଣ, ମାୟାଧର ମାନସିଂହ, ଉତ୍କଳଭାରତୀ, ବିଚ୍ଛନ୍ଦଚରଣ ପଟ୍ଟନାୟକ, କବି ସଚ୍ଚିଦାନନ୍ଦ ରାଉତରାୟ, ଜାନକୀବଲ୍ଲଭ ପଟ୍ଟନାୟକ, ପ୍ରାଧ୍ୟାପକ ଜାନକୀବଲ୍ଲଭ ମହାନ୍ତି, ସତ୍ୟାନନ୍ଦ ଚମ୍ପତିରାୟ ରାଉତରାୟ, ଅଖିଳମୋହନ ପଟ୍ଟନାୟକ ଏବଂ ବଂଶୀଧର ଷଡ଼ଙ୍ଗୀ (ଉଭୟେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ବିଜେତା) ପ୍ରଭୃତି ଶତାଧିକ କବି ଓଡ଼ିଆ ବାଣୀ ଭଣ୍ଡାରକୁ କରିଛନ୍ତି ଐଶ୍ୱର୍ଯ୍ୟଶାଳୀ । (ଦୀର୍ଘ ପ୍ରବନ୍ଧର କିୟଦଂଶ)

ଭ୍ରାମ୍ୟଭାଷ : ୯୪୩୮୫୬୮୬୯୦

# କିଛି ସ୍ୱପ୍ନ କିଛି ବାସ୍ତବତା:
# ଡ. ଦିଲ୍ଲୀପ ଶ୍ରୀଚନ୍ଦନଙ୍କ କବିତା

**ସୁଜାତା ସାହାଣୀ**

ଉତ୍ତର ଅଶୀ ଓଡ଼ିଆ କବିତାରେ ଡ. ଦିଲ୍ଲୀପ ଶ୍ରୀଚନ୍ଦନ ଏକ ଶ୍ରଦ୍ଧାଶୀଳ ଉତ୍ତରଣ । କବିତା ବ୍ୟତୀତ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଯଥା- ଗଳ୍ପ, ନାଟକ, ଉପନ୍ୟାସ, ପ୍ରବନ୍ଧ ଆଦିରେ ମଧ୍ୟ ତାଙ୍କ ସର୍ଜନଶୀଳତାର ସ୍ପର୍ଶ ବେଶ୍ ବାରିହୋଇପଡ଼େ । ଇତିହାସ, ଐତିହ୍ୟବୋଧ, ମାଟି ପ୍ରତି ଗଭୀର ମମତ୍ୱ, ସତ୍ୟପ୍ରକାଶନରେ ନିର୍ଭିକତା, ରାଜନୀତିକ ବ୍ୟବସ୍ଥା ପ୍ରତି ବ୍ୟଙ୍ଗୋକ୍ତି ଓ ପ୍ରତ୍ୟାଶାହୀନ ପ୍ରେମର ଅନୁଭବ ତାଙ୍କ କବିତାର ଆତ୍ମା । ସରଳ ସାବଲୀଳ ଶବ୍ଦପ୍ରୟୋଗ ଓ ହୃଦୟର ନିରାଡ଼ମ୍ବର ଅଭିବ୍ୟକ୍ତି ଯେ କୌଣସି ସ୍ତରର ପାଠକଙ୍କୁ ତଲ୍ଲୀନ କରିବାର କ୍ଷମତା ରଖେ । ବାସ୍ତବଧର୍ମୀ ଜୀବନବୋଧରୁ ଉଜ୍ଜୀବିତ ତାଙ୍କ କବିତା ପରବର୍ତ୍ତୀ ସମୟରେ ସୌନ୍ଦର୍ଯ୍ୟ, ପ୍ରେମ-ପ୍ରଣୟ ଓ ସମର୍ପଣ ଆଦିକୁ ସ୍ପର୍ଶ କରି ଜୀବନର ବହୁବିଧ ଅନୁଭୂତିର ସଫଳ ରୂପାୟନ କରିପାରିଛି । ତାଙ୍କ କାବ୍ୟଯାତ୍ରା "ବିଧାନସଭା କବିତା"ରୁ ଆରମ୍ଭ ହୋଇ "ଶ୍ରାବଣ ପାରିନି ଦେଇ ରକତର ଦାଗ ଏ ମାଟିରୁ", "କୃଷକପୁଅ ପ୍ରଣାମ ନିଅ", "ମୁକ୍ତିମନ୍ତ୍ର", "ତୁମ ଅପେକ୍ଷାରେ ଚିରକାଳ", "ରତୁର ନାଁ ପ୍ରେମ" ଓ "ତୁମେ ଭାରି ମନେପଡ଼" ପର୍ଯ୍ୟନ୍ତ ପରିବ୍ୟାପ୍ତ । ତେବେ ତାଙ୍କ ଜୀବନାନୁଭୂତିରୁ ସ୍ଫୁରିତ ହୋଇଥିବା କାବ୍ୟିକ ଆବେଦନକୁ ଆଉ ଟିକେ ଭଲ ଭାବରେ ଚିହ୍ନିବା ପାଇଁ ନିମ୍ନଲିଖିତ ଆଲୋଚନା ଏକ ସାମାନ୍ୟତମ ପ୍ରୟାସ ।

ଇତିହାସ, ଐତିହ୍ୟ, ପରମ୍ପରା ସହିତ ସାହିତ୍ୟ ବେଶ୍ ଅନ୍ତରଙ୍ଗ । ଆଉ ତା'ଠୁ ବି ବେଶି ଅନ୍ତରଙ୍ଗ ହେଉଛି ମାଟି । ଯାହା ମଣିଷକୁ କବି କରେ । କବି ଆଶୁତୋଷ ପରିଡ଼ାଙ୍କର ଏକ କବିତାଂଶରୁ ଏହି ଉକ୍ତିର ଯଥାର୍ଥତା ଆଉ ଟିକେ ସ୍ପଷ୍ଟ ହୋଇଯାଏ-

"କ'ଣ ତୋର ସ୍ୱପ୍ନ କବି ସାଧୀନତା ଛଡ଼ା / ଯାହାପାଇଁ ମୃତ୍ୟୁର ପିଠିରେ ବସି ହସିଦେଇହୁଏ / କହ କବି, କେତେ ଭଲପାଇଲେ ମାଟିକୁ / କବିତାରେ ନିଆଁ ଲାଗିଯାଏ ।" (କବିର କଟାମୁଣ୍ଡରେ)

ଅତୀତର ସୁଦୃଢ଼ ମୂଳଦୁଆ ଉପରେ ଛିଡ଼ାହୋଇ କବି ତା ଶବ୍ଦରେ ଆପଣା ସଭ୍ୟତା ଓ ସଂସ୍କୃତିକୁ ଆୟୁଷ୍ମାନ କରେ । ଇତିହାସ କେବଳ କିଛି ତଥ୍ୟ ଓ ବିବରଣୀର ସମାହାର ନୁହେଁ, ଏହା ଗୋଟିଏ ଜାତିର, ଗୋଟିଏ ଭୂଖଣ୍ଡର ସବୁଠୁ ବଳି ପରିଚୟ । ଯେଉଁ ପୁଣ୍ୟପ୍ରଭା ମାଟିରେ କବି ଶ୍ରୀଚନ୍ଦନଙ୍କ ଜନ୍ମ, ଯେଉଁ ବୀରପ୍ରସବିନୀମାଟି ତାଙ୍କ ଶୈଶବ ଶିଖେଇଛି ସେବା ଓ ତ୍ୟାଗର ମହାମନ୍ତ୍ର । ସେହି ମାତୃତୁଲ୍ୟ ମାଟିର ଯଶଗାନରୁ ନିଃସୃତ 'ଶ୍ରାବଣ ପାରିନି ଧୋଇ ରକତର ଦାଗ ଏ ମାଟିରୁ' ସଂକଳନର ସାକାର ରୂପ । ଭାରତୀୟ ମୁକ୍ତି ସଂଗ୍ରାମରେ ଖୋରଧାମାଟିର ବୀରତ୍ୱପୂର୍ଣ୍ଣ ଲଢ଼େଇ ଓଡ଼ିଆ ଜାତିପ୍ରାଣରେ ଯେଉଁ ଅଗ୍ନିସ୍ଫୁଲିଙ୍ଗ ସୃଷ୍ଟି କରିଥିଲା ତାର ଉଷ୍ମତା ଅନୁଭୂତ ହୁଏ କବିଙ୍କର ଏହି ସଂକଳନରେ । ଇତିହାସରେ ବିଦ୍ରୋହର ପ୍ରତୀକ ପାଲଟି ଯାଇଥିବା ଏହି ମାଟିରେ ଜନ୍ମନେବା କିଛି କମ୍ ସୌଭାଗ୍ୟର କଥା ନୁହେଁ । ଏହି ମାଟି ହିଁ କବିଙ୍କ ଛାତିରେ ଭରିଛି ନିର୍ଭିକତା । ଦେଇଛି ସେବା ଓ ତ୍ୟାଗର ପ୍ରେରଣା । ମାଟିକୁ କିଛି ମାଗିବାକୁ ପଡ଼ିନି କିଛି ବରଂ ମାଗିବା ଆଗରୁ ହିଁ ନିଜକୁ ଏଇମିତି ମେଲିଦିଏ ମାଟି-
"ତତେ ଲୁହ ମାଗିଲେ ଦେଉ ସମୁଦ୍ର / ସ୍ୱପ୍ନ ମାଗିଲେ ଦେଉ ସମ୍ମୋହନ / ଅଭିଶାପ ମାଗିଲେ ଦେଉ ଐଶ୍ୱର୍ଯ୍ୟ / × × × / ସେଥିପାଇଁ ଖୋରଧାର ମାଟି / ମା' ମୋର / ତତେ ମୁଁ ସମ୍ପାଦୁଛି ଏବେ ମୋର ଶବ୍ଦରେ ଅକ୍ଷରରେ ।"

ଏ ମାଟି ଖାଲି ଆପଣାଙ୍କୁ ନିଃସଙ୍କୋଚରେ ସମର୍ପି ଦେବା ଶିଖେଇନି, ବରଂ ତା ସନ୍ତାନମାନଙ୍କୁ ଶିଖେଇଛି ବରାଭୟ, ଶିଖେଇଛି ସମୂହର ଉପକାରରେ ଜୀବନ ସାର୍ଥକ କରିବାର କଳା । ଯେଉଁ କଳାକୁ ସାଧନା କରି ବକ୍ସି, ଜୟୀରାଜଗୁରୁ, ଦଳବେହେରାଙ୍କ ପରି ବହୁ ତ୍ୟାଗୀ ରକ୍ତ ଦେଇ ମୁକ୍ତିର ପୂର୍ବାଶାକୁ ଆଲୋକିତ କରିବା ସହିତ ଏ ଜାତିର ଅବଚେତନରେ ସ୍ମରଣୀୟ ହୋଇଗଲେ; ସେହି କଳା ବି କବିଙ୍କ ଜୀବନକୁ ଆଚ୍ଛନ୍ନ କରିଛି । ଯେଉଁଥିପାଇଁ କବି ଅତୀତକୁ ଉଖାରନ୍ତି । ପୁରୁଣା କ୍ଷତରୁ ସତେଜ ଦରଜ ଆଣି ଛାତିରେ ଭରନ୍ତି । ଅତିକ୍ରାନ୍ତ ସମୟଠୁ ମାଗି ଆଣନ୍ତି

କିଛି ସାହସ ଓ ତୟାର ହୋଇପଡ଼ନ୍ତି ଯୁଝିବାକୁ । ତେବେ ତାଙ୍କର ଏ ଯୁଦ୍ଧପ୍ରସ୍ତୁତି କାହାପାଇଁ, କାହା ପ୍ରତିପକ୍ଷରେ ?

"ଏବେ ଆସିଛି ଅତୀତକୁ ଉଖାରିବାର ବେଳ / ନୀରବରେ; କିଛି ଲେଖିବାକୁ, ଯୁଝିବାକୁ / ବିଶ୍ୱାସ ଓ ନିଃଶ୍ୱାସ ବାଣ୍ଟିବାକୁ ପବନରେ ।"

ତେବେ ତାଙ୍କ ଯୁଦ୍ଧଯାତ୍ରାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ବିଷୟରେ ଆମେ ଅବଗତ ହେଉ "ବିଧାନସଭା" କବିତା ସଂକଳନରେ ।

ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ଶାସନବ୍ୟବସ୍ଥାରେ ଦେଖା ଦେଇଥିବା ଭୟଙ୍କର ବିଷମତା । ରାଜନୀତିକ ଶଠତା, ଭୋଟରଙ୍କ ନ୍ୟାର୍ଯ୍ୟ ଅଧିକାର ଓ ସ୍ୱପ୍ନ ସହ ଖେଳ ଓ ସର୍ବୋପରି ଜନ ସହ ବିଶ୍ୱାସଘାତକତା ଆଦିର ଚିତ୍ର ଦେଖିବାକୁ ମିଳେ "ବିଧାନସଭା କବିତା"ରେ । କବି ଏହି ସବୁ ଅସଙ୍ଗତି ବିରୋଧରେ ଲେଖନୀର ତରବାରୀ ଧରି ଯୁଝିବା ପାଇଁ ଉତ୍ସାହ ପ୍ରକାଶ କରନ୍ତି ଓ ସେଥିପାଇଁ ପ୍ରଚଳିତ ରାଜନୀତିକ ବ୍ୟବସ୍ଥାର ଅଂଶ ହୋଇ ସେଥିରେ ଥିବା ତ୍ରୁଟିକୁ ସୁଧାରିବାକୁ ଚାହିଁଛନ୍ତି । କଲମମୁନରେ ଯୁଦ୍ଧ କରିବା ପାଇଁ ଓଡ଼ିଶା ଇତିହାସରେ ଡ. ଶ୍ରୀଚନ୍ଦନ ପ୍ରଥମ ନୁହନ୍ତି ବରଂ ତାଙ୍କ ପୂର୍ବରୁ କିଛି ସମାଜ ସେଚତନ କବି ରାଜନେତା କବିତାରେ ଅସ୍ତ୍ର ପଜେଇଛନ୍ତି, ବୋମା ଫୁଟାଇଛନ୍ତି । ହେଲେ ବ୍ୟବସ୍ଥା ପ୍ରତି ବିଶେଷ କିଛି ଫରକ ପଡ଼ିନାହିଁ । ବରଂ ସେଇ ବ୍ୟବ୍ସ୍ଥା ସେମାନଙ୍କୁ ଧୀରେ ଧୀରେ ବାକ୍ଶୂନ୍ୟ କରିଦେଇଛି । ସାଧାରଣ ମଣିଷମାନଙ୍କ ଦୁଃଖ-ସୁଖ, ଅଭାବ-ଅସୁବିଧା, ସମସ୍ୟା-ସମାଧାନ ଆଦିକୁ କେନ୍ଦ୍ର କରି ବିଧାନସଭାରେ ଝଡ଼ ଉଠେ, ବାକ୍ବିତଣ୍ଡା ହୁଏ । ପଣସ ଖାଇସାରି ଅପର ମୁଣ୍ଡରେ ଅଠା ବୋଳିବା ପାଇଁ ପ୍ରତିଯୋଗିତା ଚାଲେ । ହେଲେ ଏସବୁଥିରୁ ସାଧାରଣ ମଣିଷକୁ ମିଳେ କ'ଣ ? ତା'ର ଲୋଡ଼ା କେବଳ ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା, ସ୍ୱାସ୍ଥ୍ୟ ଓ କର୍ମନିଯୁକ୍ତିର ଦୀର୍ଘକାଳୀନ ସୁରକ୍ଷା ଓ ନିଶ୍ଚିତତା । କିନ୍ତୁ ପ୍ରତିଥର ନିର୍ବାଚନ ସମୟରେ ସେମାନଙ୍କ ପାଖରେ ପହଞ୍ଚେ କିଛି ନରମ-ଗରମ ଭାଷଣଭୋଗ, ଫମ୍ପା ଆଶ୍ୱାସନା । ଏହା କବିଙ୍କ ପ୍ରତ୍ୟକ୍ଷ ଅନୁଭୂତି-

"ଜନତା ମାଗିଲେ ଝାଟିମାଟି ଘର / ପେଟକୁ ଗଣ୍ଡିଏ ଦାନା / ତମେ ଦେଲ ଖାଲି ଗରମ-ମରଣ / ଫୁଟାଇଲ ଅଣୁବୋମା ।"

ଶାସନକଳର ଅଂଶ ହୋଇ ତାକୁ ବିଦ୍ରୂପ ତଥା ସମାଲୋଚନା କରିବା ଏଡ଼େ ସହଜ କି ? ଯେଉଁମାନେ ଶାସନକଳର ମୁଣ୍ଡିଆଳ ସାଜି ଦିନେ ତାଙ୍କର ଦୁର୍ଦ୍ଦଶାକୁ ନେଇ ବିଧାନସଭା ପେଣ୍ଡାଲ୍‌ରେ ଯାତ୍ରା କରନ୍ତି, ଭାବାନୁସାରୀ ଭାଷଣର ସଂଳାପରେ ପ୍ରକୃତ କଥାକୁ ଆଢୁଆଳକୁ ଠେଲି ଦିଅନ୍ତି, ସେମାନଙ୍କୁ କବି ଚିତ୍ରିତ କରନ୍ତି ଏଇପରି-

"ବିଧାନସଭା ଏ ବିଧାନସଭା / ଭାଷଣେ ମଣ୍ଡାନ୍ତି ନାଣ୍ଡିର ଗଭା ।"

ମଣିଷର ଦୁଃଖ ଦୁର୍ଦ୍ଦଶାକୁ କାଳେକାଳେ କବିଚିତ୍ତକୁ ଦୋହଲାଇ ଦେଇଛି । ଡ. ଶ୍ରୀଚନ୍ଦନ ରାଜନେତା ଭାବରେ କେତେ ଉତ୍ସର୍ଗୀକୃତ, ସେ ସମ୍ପର୍କରେ ଆମେ ଅଜ୍ଞାତ । କିନ୍ତୁ କବି ଭାବରେ ସେ ଯେ ମଣିଷର ସପକ୍ଷରେ ଏତିକି ଆମପାଇଁ ଶାନ୍ତ୍ୱନା ।

ସାଧାରଣ ମଣିଷ ପ୍ରତି କବିଙ୍କର ଭଲପାଇବା ଓ ଶ୍ରଦ୍ଧାର ନିଦର୍ଶନ "ମୁକ୍ତିମନ୍ତ୍ର" ସଂକଳନ । ଦୁନିଆଁର ଯାବତୀୟ ଦୁଃଖ-ଅନାଦର ସହି ଯେଉଁମାନେ ଲୁହଲହୁକୁ ଏକାଠି କରି ମାଟିର ଶସ୍ୟରେ କ୍ଷୀର ଭରନ୍ତି, ସେମାନଙ୍କୁ କବି ହୃଦୟ ଭରି ଭଲପାଆନ୍ତି, ସମ୍ମାନ କରନ୍ତି । ଉଦାହରଣସ୍ୱରୂପ-

"ଛାତିରେ ଚାପି ତୁ ଚାଲିଥାଉ ବୋଲି ଦୁନିଆଁ ଦୁଃଖ / ଦେଇଥାଇ ସଦା ଅନ୍ୟକୁ ତୁହି ଭିକ ଓ ଭେକ / ସେଇଥିପାଇଁ ତୁ ମାଟିର ପୁଅ / ତତଲା ନିଆଁରେ ଜଳିଜଳି ତୁହିଁ / ଛୁଟାଇ ଧରାରେ ଗଙ୍ଗାର ସୁଅ ।"

ସମାଜରେ ଦୃଶ୍ୟମାନ ଆର୍ଥନୀତିକ ଅସମାନତା ଓ ଶ୍ରେଣୀପାର୍ଥକ୍ୟର ଉଦ୍ଭଟ ରୂପକୁ କବି ଦେଖି ଦେଖାଇବାର ଚେଷ୍ଟା କରିଛନ୍ତି । କେଉଁଠି ଐଶ୍ୱର୍ଯ୍ୟର ରାଣୀହଂସପୁର ତ କେଉଁଠି ଉକୁଡ଼ି ଯାଉଥିବା ଫଟାଭୂଇଁର ହାହାକାର, କିଏ ଘିଅମହୁରେ ଫାଟିପଡୁଛି ତ ଆଉ କିଏ ଆପଣା ହାଡ଼ରେ ବଜଉଛି ଦାସକାଠିଆ । ମଖମଲ୍ଲି ଶେଜରେ କେଉଁଠି ରଙ୍ଗରଙ୍ଗର ସ୍ୱପ୍ନ କିଣା ଚାଲିଥାଏ ତ ଆଉ କେଉଁଠି ଡିବିରିର ଶୁଖିଲା ସଳିତାରେ ଭରା ଅନ୍ଧାରର ବିଭୀଷିକା । ସତରେ ମୂଲିଆର ଭାଗ୍ୟ ଏମିତି କାହିଁକି ? ଅଭାବର ଚିରଅମାରାତି ! ମଣିଷ-ମଣିଷ ଭିତରର ଏଇ ଭେଦଭାବକୁ କବି ହୃଦୟଙ୍ଗମ କରି ଲେଖନ୍ତି-

"ସବୁ ସକାଳର ମଙ୍ଗଳଗୀତି / ଆମକୁ ଶୁଣାଏ ସିଏ / ପଖାଳ କଂସାରେ ଭାଗିଆରୀ ଭାଗ / ସିଏ କିନ୍ତୁ ଶୁଣୁଥାଏ ।" (ଆଉ ବା କାହାର ଅଛି ଏମିତିକା ଛାତି- ମୁକ୍ତିମନ୍ତ୍ର)

ଏହିସବୁ ବିଭେଦକୁ ଦୂର କରିବା ପାଇଁ ବୋଧେ କବି ଏକ ନୂଆ ସକାଳର ସ୍ୱପ୍ନ ଦେଖିଛନ୍ତି । ଯେଉଁ ସକାଳ ଧୋଇନେବ ମଣିଷ-ମଣିଷ ଭିତରେ ଏଇ ଭେଦଭାବ, ବୈଷମ୍ୟ । ସାମ୍ୟ-ସମତାର ଏକ ସୁନ୍ଦର ପୃଥିବୀଟିଏ ଗଢ଼ିତୋଳିବାର ଇଚ୍ଛାରେ ବିଭୋର କବି ସିନା ଆଙ୍କିପାରେ କାଳରାତ୍ରିର କାନ୍‌ଭାସ୍‌ରେ ଏକ ସକାଳର ଛବି । ଆଉ ସେଇଥିପାଇଁ ନିର୍ଦ୍ଦିଷ୍ଟ କରିବାକୁ ହୁଏ ରାସ୍ତା, ବଦଳାଇବାକୁ ହୁଏ ପୁରୁଣା ରଣକୌଶଳ-

"କିଛି ବାଉଳା ପବନକୁ ଖଞ୍ଜିବାକୁ ହେବ ଦିଗମାନଙ୍କ ବାହୁରେ / ସ୍ଥିର କରିବାକୁ ହେବ ରଣକୌଶଳ / ଯାହା ପୂର୍ବନିର୍ଦ୍ଧାରିତ ଥିଲା ସେମିତି ନୁହେଁ / ବରଂ ଯା ହେବାକୁ ଅଛି ଆଗକୁ / ଯାର ନାଁ ସକାଳ ।" (ସକାଳ-ମୁକ୍ତିମନ୍ତ୍ର)

ତେବେ କେବଳ ମୁକ୍ତିରମନ୍ତ୍ର ଜପ ନୁହେଁ, ବରଂ ନିରନ୍ତର ସାଧନା ହିଁ ସାଫଲ୍ୟର ଶେଷାଗ୍ର ପର୍ଯ୍ୟନ୍ତ ନେଇଯାଇପାରିବ ।

ଦୁନିଆକୁ, ମଣିଷକୁ ଏତେ ଶ୍ରଦ୍ଧା କରିଥିବା କବି ସବୁଠୁ ବଡ଼ ପ୍ରେମିକ ହୋଇ ଆବିର୍ଭାବ ହୁଅନ୍ତି "ତୁମେ ଭାରି ମନେପଡ଼" ସଂକଳନରେ । ଏଥିରେ ସ୍ଥାନିତ ଶବ୍ଦମାନେ କେତେବେଳେ ସ୍ମୃତିର ମଧୁରତାରେ ଭିଜନ୍ତି ତ କେତେବେଳେ ବିରହର ବନ୍ୟାରେ ଅଣନିଃଶ୍ୱାସୀ । ଏମିତିକି ଜହ୍ନରାତିର ଅନ୍ୱେଷଣରେ ବାହାରିଥିବା କବି ଶ୍ରାବଣର ନିର୍ଦ୍ଧୁମ୍ ରାତି ସହ ମୁହାଁମୁହିଁ ହୁଅନ୍ତି । ଜହ୍ନ ଆଲୁଅରେ ଭିଜିବାର ସ୍ୱପ୍ନ ଇପ୍‌ସିତ ସ୍ୱପ୍ନ ଗଜୁରିବା ଆଗରୁ ହିଁ କବିଙ୍କ ରାତି ଅପହୃତ । ଶ୍ରାବଣର ଅସ୍ରାଅସ୍ରା ବର୍ଷାରେ ଧୋଇସାରିଛି ସ୍ୱପ୍ନର ଅସ୍ତିତ୍ୱ । ପ୍ରେମର ମଧୁରରାଗିଣୀ ଗାଇବା ଆଗରୁ ଶୁଖିସାରିଛି କବିଙ୍କର କଣ୍ଠ । ହାୟ ! ଏମିତି କାହିଁକି ? ପ୍ରେମ କେତେବେଳେ ଅମୃତ ଅନୁଭବ ତ କେତେବେଳେ ଭଗ୍ନବୀଣାର ଯନ୍ତ୍ରଣାବିଧୁର ଧ୍ୱନି । କେବେ ଏକ ଛନଛନ ଶାଗୁଆ-ପୃଥିବୀ ତ କେବେ ଧୂ ଧୂ ତପ୍ତମରୁବାଲି । ତଥାପି ଯେତେ ବି ତିକ୍ତ ହେଇ ପ୍ରେମ କେଉଁଠି ନା କେଉଁଠି ଏକ ସୂକ୍ଷ୍ମ ମଧୁରତାର ଧାର ପ୍ରବହମାନ । ଆଉ ସେଇଥିପାଇଁ ତ ଅଶେଷ ଯାତନା ଓ ଦହନ ପରେ ବି କବି ଏବେ ବି ନିଃଶବ୍ଦରେ

ବାଟ ଚାହିଁ ବସନ୍ତି ପ୍ରିୟତମ ମଣିଷର । ସତରେ ନହେଲା ନାହିଁ ଟିକିଏ ସାନିଧ୍ୟ ସପ୍ନରେ ଖୋଜିହୁଅନ୍ତି । ଯେତେ ଯେତେ ଝରୁଥାଏ ଲୁହ- ସେତେ ସେତେ ନିବିଡ଼ ହେଉଥାଏ ପ୍ରେମ । ଯେତେ ବେଶି ବଢ଼ିଚାଲେ ଦୂରତ୍ୱ ସେତେ ବେଶି ମନେପଡ଼େ କେହି ଜଣେ ଅନ୍ତରତମ । ଏହା ପ୍ରମାଣସିଦ୍ଧ ନୁହେଁ ଅନୁଭୂତିସିଦ୍ଧ, ଯାହା କବି ଅର୍ଜନ କରିଛନ୍ତି-

"ତୁମେ ଯେବେ ମନେପଡ଼ / ଆଉ କିଛି ମନେପଡ଼େ ନାହିଁ / ମୋ ଲୁହ ତ ବନ୍ୟା ହୋଇ / ମୋତେ ନିଏ ସେଥିରେ ଭସାଇ ।" (ତୁମେ ଭାରି ମନେପଡ଼)

କାହାର ରହିବା ଓ ଛାଡ଼ିଯିବାରେ ପ୍ରେମର କିଛି ଯାଏ ଆସେ ନାହିଁ । ପ୍ରେମ କେବଳ ମାତ୍ର ଏକ ମଧୁର ଅନୁଭବ ଆଉ ସେ ଅନୁଭବ କେବଳ ଆଉ କେବଳ ଅନୁଭବୀର । ସେଥିପାଇଁ କିଏ ଅଧାବାଟରୁ ହାତଛାଡ଼ିଗଲା ପରେ ବି କବି ଆତ୍ମିକ ଭାବରେ ସେଇ ମଣିଷ ସହ ଛାଇପରି ରୁହନ୍ତି । ଅସରା ଦୁଃଖକୁ ନୀରବରେ ପିଇଚାଲନ୍ତି ସିନା; ମନର ନିରନ୍ଧ୍ର କୋଠରୀରୁ ସେଇ ମଣିଷଟିକୁ ବାହାରି ଯିବାକୁ ଦେଇପାରନ୍ତି ନାହିଁ । ପ୍ରେମ ପ୍ରତି ଥିବା ତାଙ୍କର ଅଙ୍ଗୀକାରର ଦୃଢ଼ତାକୁ ଲକ୍ଷ୍ୟ କରାଯାଇପାରେ ।

"ତଥାପି ଏକା ମୁଁ / ଚାଲୁଥିବି ସଦା ଘାସ ଫୁଲ ପଥ ପରେ / ତୁମେ ସେମିତି ଅଛ ମୋ ଭିତରେ ।" (ତୁମେ ସେତିକି ଅଛ ମୋ ଭିତରେ- ମୁକ୍ତିମନ୍ତ୍ର)

ନିଃସ୍ୱାର୍ଥପର ତଥା ପ୍ରତ୍ୟାଶାହୀନ ପ୍ରେମ ହିଁ 'ଚିରନ୍ତନ' ତାହା କବି ବୁଝି ବୁଝାଇବା ପାଇଁ ଚାହିଁଛନ୍ତି ।

ମୋଟାମୋଟି ଭାବରେ ଏଠାରେ ଗୋଟିଏ କଥା ଲକ୍ଷ୍ୟ କରାଯାଇପାରେ ଯେ ବ୍ୟକ୍ତିଗତ ହେଉ ଅଥବା ସାମାଜିକ, ରାଜନୀତିକ ଜୀବନ ସବୁଠି କବିଙ୍କ ଦରଦୀପ୍ରାଣ ନିଜକୁ ହିଁ ଉତ୍ସର୍ଗ କରିଦେବା ପାଇଁ ପ୍ରସ୍ତୁତ । ମାନବୀୟ ପ୍ରେମର ଆରାଧନା ତାଙ୍କ ଜୀବନର ବ୍ରତ ବୋଲି ମନେହୁଏ । ନିଜର କ୍ଷମତା ଅନୁସାରେ ସେ ସବୁପ୍ରକାର ଦୁଃସମୟକୁ ସାମ୍ନା କରିଛନ୍ତି । ମଣିଷ ପରି ମଣିଷଟିଏ ହେବା ପାଇଁ ଆଉ କ'ଣ ଲୋଡ଼ା ? ଏତିକି ତ ? ଆଉ 'ମଣିଷଟି' ହିଁ ତ କବି ।

# ଅନାଲୋଚିତ ଗୀତିକବି ବିଭୁଦତ୍ତ ମିଶ୍ର :

# ଏକ ମନୋଜ୍ଞ ଅନୁଶୀଳନ

ଅଧ୍ୟାପିକା ଡ. ସଂଘମିତ୍ରା ଭଞ୍ଜ

ଆତ୍ମକୈନ୍ଦ୍ରିକ ଅନ୍ତର୍ମନର ନିରୀହ ଆବେଗ ତଥା ସୂକ୍ଷ୍ମ ଚେତନାର କାବ୍ୟମୟ ଅଭିବ୍ୟକ୍ତି ହିଁ କବିତା । ସାଧାରଣ ଜଗତଠାରୁ କବିର ଜଗତ ଖୁବ୍ ସ୍ୱତନ୍ତ୍ର । କବି ତା'ର ଦିବ୍ୟ ଅନୁଭବକୁ ନେଇ ଆର୍ଦ୍ର ଥାଏ । ଏହି ଆର୍ଦ୍ରତା ହିଁ ପାଠକ ଚିତ୍ତକୁ ମୋହାଚ୍ଛନ୍ନ କରିଥାଏ । କାବ୍ୟ-କୋଣାର୍କ କବିର ବ୍ୟକ୍ତିକ-ଅସଂଖ୍ୟ ଅନୁଭବ ଦ୍ୱାରା ଦୀପ୍ତ ହୁଏ । ସୁଖ-ଦୁଃଖ, ପ୍ରେମ-ପ୍ରତାରଣା, ମିଳନ-ବିଚ୍ଛେଦ ଅବା ଜନ୍ମ ମୃତ୍ୟୁ-ପୁନର୍ଜନ୍ମର ଅବଧାରଣାକୁ ନେଇ କବି ଶବ୍ଦରାଗ ତୋଳେ । ଜନୈକ କବିଙ୍କ ମତରେ "We suffer more in imagination than in reality" "ଏକ ଅଲିଖିତ ଯନ୍ତ୍ରଣା କବିର ସାମଗ୍ରିକ ସତ୍ତାକୁ ଅହରହ କେନ୍ଦ୍ରକରି ବୁଲେ ଏବଂ ଏହାର ଝଲକ କବିର ଚିନ୍ତାଶକ୍ତିକୁ ଉଜ୍ଜ୍ୱଳ କରେ, କରେ ରସାଣିତ । ଦୈହିକ ଯନ୍ତ୍ରଣାର ଅବବୋଧ ଅପେକ୍ଷା ମନର ବା ବେଳେ ବେଳେ ଆତ୍ମାର ଯନ୍ତ୍ରଣା କବିତାକୁ ବହୁ ଉଚ୍ଚସ୍ତରକୁ ଉନ୍ନୀତ କରାଏ ।" (୧) ଯାହା ଜଗତ ଲେଖେନି ତାକୁ ଏକମାତ୍ର କବି ହିଁ ଲେଖିବସେ ।

କବି ଏଲିୟଟ୍‌ଙ୍କ ମତରେ - "A poem has its own life" [The sacred wood-1928]" କବିତାର ଜୀବନ ଅଛି । ତାହା ଯୁଗେଯୁଗେ ଜୀବନ୍ତ । କୌଣସି ନିର୍ଦ୍ଦିଷ୍ଟ ଧରାବନ୍ଧା ନିୟମ ଭିତରେ କବିତାର ସୃଷ୍ଟି ଅସମ୍ଭବ । ଭାବସର୍ବସ୍ୱ ଦିବ୍ୟ ଅନୁଭବଙ୍କୁ ନେଇ କବିର ଶବ୍ଦ କ୍ଷରିତ ହୁଏ । "୧୯୪୦ ପରବର୍ତ୍ତୀ କବିତାରେ ଆଧୁନିକତାର ନୂତନ ପ୍ରସ୍ଥ ଉନ୍ମୋଚିତ ହୋଇଛି । ଏହି ସମୟ ଖଣ୍ଡର କବିତା ତା'ର ଭାବ ଓ ପ୍ରକରଣରେ ଯେଉଁ ନୂତନତା ପ୍ରଦର୍ଶନ କଲା, ସେଥିରେ ପ୍ରତୀକ, ଚିତ୍ରକଳ୍ପ ଓ ମିଥ୍ ପରି ଲୋକ ଉପାଦାନ ଏକ ବିଭବ ଭାବେ ସ୍ୱୀକୃତ ହେଲା ଏବଂ ପ୍ରୟୋଗ ମାନ୍ୟତା ଅର୍ଜନ କଲା ।" (୨) ତେବେ ୧୯୬୦ ପରବର୍ତ୍ତୀ ଆଧୁନିକ କବିତା ବିଭିନ୍ନ ପ୍ରୟୋଗ ଦ୍ୱାରା ଅତ୍ୟନ୍ତ ସକ୍ରିୟ ହୋଇଉଠିଥିଲା । ନିର୍ଦ୍ଦିଷ୍ଟ-ନିର୍ଦ୍ଧାରିତ

ଆଙ୍ଗିକରୁ ମୁକ୍ତ ହୋଇ ଆଧୁନିକ କବିତାର ଭାବସତ୍ତା ଅତ୍ୟନ୍ତ ସମୃଦ୍ଧ ହୋଇଥିଲା । ବିଶେଷତଃ "୧୯୫୫ରୁ ୧୯୭୫-ଏଇ ଦୁଇ ଦଶନ୍ଧିରେ ୟୁରୋପୀୟ ଆଧୁନିକତାର ଅନୁସରଣରେ ଯେଉଁ ପାଶ୍ଚାତ୍ୟ ହତାଶବୋଧ, ନଷ୍ଟ ମୂଲ୍ୟବୋଧ ଆଦିକୁ ନେଇ ଦୁର୍ବୋଧତା, ଜଟିଳତା ଓ ପରୀକ୍ଷାଧର୍ମିତା ପରିଲକ୍ଷିତ ହୁଏ, ତାହା କବିତାର ସୌକୁମାର୍ଯ୍ୟ, ମୃତ୍ତିକା-ଅସ୍ମିତାର ବିକାଶରେ ବାଧକ ହୋଇଛି । କାବ୍ୟଭାଷା ଏବଂ କବିତା ଗଠନ ସୌଷ୍ଠବରେ ସ୍ୱଚ୍ଛତା ବା ପ୍ରାଞ୍ଜଳତାର ଅଭାବ ତା'ର ଅବବୋଧଗତ ଗ୍ରହଣଶୀଳତାକୁ ସଂକୁଚିତ କରିଛି । ୧୯୭୫ ମସିହା ପରେ ଷାଠିଏ ପରବର୍ତ୍ତୀ ବହୁ କାବ୍ୟଶିଳ୍ପୀ ଏହି ଧାରାରୁ ମୁକୁଳି ଗଲେ ଏବଂ ନୂତନ ପାଢ଼ିର ପ୍ରାରମ୍ଭିକ କାବ୍ୟସ୍ୱର ସବୁ ପରିଚ୍ଛନ୍ନ ଭାବ ଓ ଭାଷାର କବିତା ଲେଖିବା ଆରମ୍ଭ କଲେ ।" (୩) କୌଣସି ଦୃଶ୍ୟକୁ ନେଇ କବିର ଦୃଶ୍ୟଧର୍ମୀ ଚିତ୍ରକଳ୍ପ, ପ୍ରତୀକାଦିର ପ୍ରୟୋଗ ସ୍ୱଭାବିକ - ଅକୃତ୍ରିମ ରୂପ ପ୍ରୟୋଗ ଦ୍ୱାରା ଆଧୁନିକ କାବ୍ୟଶ୍ରୀର ଅଳଙ୍କରଣରେ କବିର ସୌନ୍ଦର୍ଯ୍ୟବାଦୀ ମୁଗ୍ଧ ଦୃଷ୍ଟିକୋଣ କ୍ରମେ ସକ୍ରିୟ ହୋଇଉଠିଥିଲା ।

ଉନବିଂଶ ଶତାବ୍ଦୀର ରାଷ୍ଟ୍ର ସ୍ୱାଧୀନତା, ପ୍ରଥମ-ଦ୍ୱିତୀୟ ବିଶ୍ୱଯୁଦ୍ଧ, ଋଷୀୟ ବିପ୍ଳବ ଆଦି ବିଶ୍ୱସ୍ତରୀୟ ଘଟଣାର ତୀବ୍ର ପ୍ରଭାବ, ଅନ୍ତର୍ବିପ୍ଳବ, କମ୍ୟୁନିଜିମ୍, ଫାସିସିଜିମ୍, ହତ୍ୟା, ବିଭୀଷିକା, ଯୁଦ୍ଧ, ସାମାଜିକ ଶ୍ରେଣୀ ସଂଘର୍ଷ, ଆର୍ଥନୀତିକ ସଂକଟ, ରକ୍ତପାତ, ମୂଲ୍ୟବୋଧର ଅବକ୍ଷୟ, ମୂଲ୍ୟବୋଧର ସଂକଟ, ପାପବୋଧ, ମୃତ୍ୟୁଭୟ, ସାଂସ୍କୃତିକ ସଂଘର୍ଷ, ବିଜ୍ଞାନର ଅଭ୍ୟୁଦୟ, ସାମାଜିକ ଶୋଷଣ, ଅନ୍ୟାୟ, ଅନୀତି, ଅତ୍ୟାଚାର ଇତ୍ୟାଦି ଭାବଧର୍ମ ଦେଶବ୍ୟାପୀ ସମସ୍ତ ପ୍ରାନ୍ତୀୟ ସାହିତ୍ୟର ଆଙ୍ଗିକକୁ ବହୁଳାଂଶରେ ପ୍ରଭାବିତ କରିଥିଲା ।

୧୮୫୭ ମସିହାରେ ବୋଦ୍‌ଲେୟାରଙ୍କ "The flower of evil" ପ୍ରକାଶନ ପରବର୍ତ୍ତୀ ସମୟକୁ ଆଧୁନିକ କବିତାର ଉନ୍ମେଷ ସମୟ ବୋଲି ଆଲୋଚକମାନେ ମତ ପ୍ରଦାନ କରନ୍ତି । ବୋଦ୍‌ଲେୟାରଙ୍କ ପ୍ରଭାବ ଫ୍ରାନ୍‌ସରେ ବ୍ୟାପକ ଭାବରେ ପ୍ରଭାବ ବିସ୍ତାର କରି ପରବର୍ତ୍ତୀ ସମୟରେ ୧୯୦୭-୦୮ରୁ ଅନ୍ୟାନ୍ୟ ଦେଶର ସାହିତ୍ୟର ଆଙ୍ଗିକକୁ ପ୍ରଭାବିତ କରିଥିଲା । ବୋଦ୍‌ଲେୟାରଙ୍କ ପରେ ଆଧୁନିକ କବିତାର ଦୃଢ଼ ଭିତ୍ତିସ୍ଥାପକ ଭାବରେ ମାଲାର୍ମେ, ର୍‌ଁାବୋ, ଲାପର୍ଟ, ଭର୍ଲେନ୍, ପଲ୍‌ଭାଲେରୀ, ଇଟାଲୀୟ କବି ଡିନୋ କାମ୍ପାନା, ଆଙ୍ଗାରେଛି, ଇଂରେଜୀ କବି ଉଇଲ୍‌ଫ୍ରେଡ୍ ଆଓ୍ୱେନ୍, ସିଗ୍‌ଫ୍ରାଏଡ୍ ସାସୁନ୍, ଋଷୀୟ କବି ମାୟାକୋଭସ୍କି, ଫ୍ରଏଡ୍,

ଲେନିନ୍, ଇଟ୍ସ, ଟି.ଇ. ହ୍ୟୁମ୍, ଇଲିୟଟ୍, ପାଉଣ୍ଡ୍, ଡେଭିଡ୍ ଜୋନ୍ସ, ଫ୍ରେଜର୍ ଆଦି ପ୍ରମୁଖ ସାହିତ୍ୟରଥୀ ପ୍ରତିନିଧିତ୍ୱ କରିଥିଲେ । ବିଶେଷତଃ ଇଲିୟଟ୍ଙ୍କ 'ୱେଷ୍ଟଲ୍ୟାଣ୍ଡ', ଫ୍ରେଜରଙ୍କ ଗୋଲଡନ୍‌ବୋ, ଜେସି ୱେଷ୍ଟନ୍‌ଙ୍କ 'ଫ୍ରମ୍ ରୋମାନ୍ସ ଟୁ ରିଚୁଆଲ୍' କବିତାଦି ସହିତ ଡି.ଏଚ୍.ଲରେନ୍ସଙ୍କ ଆଦିମ ଅବଚେତନର ରହସ୍ୟ ଉନ୍ମୋଚନ ତତ୍ତ୍ୱ ଆଧୁନିକ ଓଡ଼ିଆ କବିତାକୁ ପ୍ରତିଷ୍ଠା ସହିତ ଦେଇଥିଲା ନୂତନ ଚମକ ଏବଂ ନୂତନ ପରିଚିତି । ତେବେ, ପାଉଣ୍ଡ ଏବଂ ଇଲିୟଟ୍ଙ୍କ ପ୍ରଦର୍ଶିତ ପଶ୍ଚାତ୍ୟ କାବ୍ୟଧାରାର ଗୀତିମୟତାକୁ ଆଧୁନିକ ଓଡ଼ିଆ କବିଗଣ ଉତ୍ତର ଷାଠିଏ ପରେ ସ୍ୱୀକାର କରିଛନ୍ତି । କବିତାର ଏକ ବିଶିଷ୍ଟ ଆଭୂଷଣ-ଛନ୍ଦର ଯାଦୁକରୀ ମାୟାଜାଲ ବୁଣି କବି ପାଠକଙ୍କୁ ବିମୋହିତ କରିଛି । 'ଏନ୍‌ସାଇକ୍ଲୋପେଡିଆ ବ୍ରିଟାନିକା'ରେ ଏହି ଛନ୍ଦ ସମ୍ବନ୍ଧିତ ଏକ ବିଶେଷ ପରିଭାଷା ପ୍ରକାଶ ପାଇଛି- "Rythm is an expression of the instinct for order in sound which normally governs the human ear" କବିତାର - ଭାବ ସମନ୍ୱିତ ଛନ୍ଦମାଧୁରୀ, ଶ୍ରବଣେନ୍ଦ୍ରିୟକୁ ଆନନ୍ଦପ୍ରଦାନ କରିବା ସହିତ ଅତିନ୍ଦ୍ରିୟ ଅନୁଭବ ସହିତ ଏକୀଭୂତ କରିବାରେ ସମର୍ଥ । କବିତାରେ ଛନ୍ଦର ଆବଶକତାକୁ ସ୍ୱୀକାର କରି ବିଶ୍ୱକବି ରବୀନ୍ଦ୍ରନାଥ କହିଛନ୍ତି:-

"ମାନବେର୍ ଜୀର୍ଣ୍ଣ ବାକ୍ୟେ ଛନ୍ଦ ମୋର ଦିବେ ନବସୁର / ଅର୍ଥେର୍ ବନ୍ଧନ ହତେ ନିୟେତା'ରେ ଯାବେ କିଛୁ / ଭାବେର୍ ସ୍ୱାଧୀନ ଲୋକେ" (କାହିନୀ, ଭାଷା ଓ ଛନ୍ଦ)

ଆଧୁନିକ କବିତାରେ ଜୀବନର ମୌଳିକ ଉଚ୍ଚାରଣ ସହିତ ଛନ୍ଦ ମାଧୁର୍ଯ୍ୟ ଏବଂ ସୌନ୍ଦର୍ଯ୍ୟବୋଧର ସମନ୍ୱିତ ରୂପକୁ ନେଇ ପ୍ରତ୍ୟେକ କବି କବିତାକୁ ଶିଳ୍ପାନ୍ୱିତ କରିଥିଲେ ।

ଇଟାଲୀୟ କବି ପେଟ୍ରାର୍କଙ୍କ ଦ୍ୱାରା ବ୍ୟବହୃତ ଏକ କାବ୍ୟରୂପ 'ସନେଟ୍' (Sonett)କୁ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଇଂରାଜୀ କବି ସାର୍ ଥୋମାସ୍ ୱାଟ୍ (Wyatt) ଓ ହେନ୍‌ରୀ ହେୱାର୍ଡ଼ ପ୍ରତିଷ୍ଠା ଦେଇଥିଲେ । ଚତୁର୍ଦ୍ଦଶ ପଦ ବିଶିଷ୍ଟ ଏହି 'ସନେଟ୍' କାବ୍ୟରୂପ ଇଂରାଜୀ ସାହିତ୍ୟରେ ଅନୁସୃତ ହେବାପରେ ଉନବିଂଶ ଶତାବ୍ଦୀର ଶେଷଭାଗରେ ଏହାକୁ ଅନୁସରଣପୂର୍ବକ ଓଡ଼ିଆ କବିଗଣ ଚତୁର୍ଦ୍ଦଶପଦୀ କବିତା ରଚନା କରିଥିଲେ ।

'ସନେଟ୍' ଚଉଦଧାଡ଼ି ବିଶିଷ୍ଟ କ୍ଷୁଦ୍ରସଂଗୀତକୁ ବୁଝାଏ । ଛନ୍ଦବନ୍ଧନର ଜଟିଳତା ଭିତରେ ଭାବ, କଳ୍ପନା, ଆବେଗାଦି ସୁରକ୍ଷିତ ରହିବା ଅତ୍ୟାବଶ୍ୟକ । "ବଙ୍ଗକବି ମୋହିତଲାଲ୍ ଚତୁର୍ଦ୍ଦଶପଦୀ କବିତାକୁ "ବିଗାଢ଼ ନିବଦ୍ଧା ତନ୍ୱୀ" ଓ D.G.Rossetti ଏହାକୁ 'ମୁହୂର୍ତ୍ତର ସ୍ମୃତିସ୍ତମ୍ଭ' ନାମରେ ଅଭିହିତ କରିଛନ୍ତି ।" (୪) ଇଟାଲୀୟ ସନେଟ୍ ରୀତି ଅନୁଯାୟୀ ସନେଟ୍‌ର ପ୍ରଥମ ଅଷ୍ଟଚରଣ ବିଶିଷ୍ଟ ସ୍ତବକକୁ ଅଷ୍ଟକ (Octave) ଏବଂ ପରବର୍ତ୍ତୀ ଷଷ୍ଠ ଚରଣକୁ ଷଟ୍‌କ (Sestet) କୁହାଯାଏ । ୟୁରୋପୀୟ ରେନେଂସାକାଳୀନ ସନେଟ୍‌ରେ କବିମାନେ 'ପ୍ରେମ'କୁ କେନ୍ଦ୍ରକରି କବିତା ରଚନା କରୁଥିଲେ । ଯଦିଚ ପରବର୍ତ୍ତୀ ସମୟରେ ଏହା ବିବିଧ ଭାବର ବାହକ ହୋଇଛି । ଇଂରାଜୀ ସାହିତ୍ୟର ସେନ୍‌ସର୍, ମିଲ୍‌ଟନ୍, ସେକ୍‌ସପିୟର, ସେଲି, ଓ୍ୱର୍ଡ଼ସଓ୍ୱର୍ଥ, ଏଲିଜାବେଥ୍, ବାରେଟ୍, ରସେଟି ଆଦି ଏହି ସନେଟ୍‌ର ସଫଳ ପ୍ରୟୋଗ କରିଥିଲେ । ଇଂରାଜୀ ସାହିତ୍ୟରେ ଏହି ଛନ୍ଦବିଧାନର ସର୍ବଶ୍ରେଷ୍ଠ ପ୍ରବକ୍ତା ଥିଲେ ସେକ×ସପିୟର । "ସେକ୍‌ସପିୟର ଚାରିପାଦ ବିଶିଷ୍ଟ ତିନିଗୋଟି ସ୍ତବକ (Quartrain) ଓ ଗୋଟିଏ ଦ୍ୱିପାଦ ବିଶିଷ୍ଟ (Couplet) ସ୍ତବକର ସଂଯୋଗରେ ଚତୁର୍ଦ୍ଦଶପଦୀ କବିତା ରଚନା କରି ଏ କ୍ଷେତ୍ରରେ ଅଭିନବତ୍ୱ ସଂପାଦନ କଲେ ।" (୫) ଓଡ଼ିଆ କବିଗଣ ସେକ୍‌ସପିୟରୀୟ ରୀତିକୁ ପ୍ରାୟତଃ ଅନୁସରଣ କରିଛନ୍ତି ।

କବି ବିଭୂଦତ୍ତଙ୍କ ପୂର୍ବରୁ ଚତୁର୍ଦ୍ଦଶ ପଦୀ କବିତାର ଏକ ବଳିଷ୍ଠ ପୃଷ୍ଠଭୂମି ଦୃଷ୍ଟିଗୋଚର ହୁଏ । ପାଶ୍ଚାତ୍ୟ କାବ୍ୟରୂପ 'ସନେଟ୍' ପ୍ରଚଳନର ବହୁ ପୂର୍ବରୁ ଓଡ଼ିଆ 'ପଦିଆଗୀତ'ର ବ୍ୟବହାର ଥିଲା । ପରେ ଏହା ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ସନେଟ୍ ରୂପରେ ଆତ୍ମପ୍ରକାଶ ଲାଭ କରିଥିଲା । ଓଡ଼ିଆରେ ଥିବା ଅସଂଖ୍ୟ ଚଉତିଶା, ଚଉପଦୀ, ପୋଇ ପ୍ରଭୃତି ଏହାର ପ୍ରାଚୀନ କାବ୍ୟରୂପ ଭାବରେ ଉଭା ତେବେ ଇଂରାଜୀ ସନେଟ୍ ଅନୁକରଣରେ ଭକ୍ତକବି ମଧୁସୂଦନଙ୍କ 'ବସନ୍ତଗାଥା' । ଫକୀରମୋହନଙ୍କ 'ପୂଜାଫୁଲ', ଅବସରବାସରେ, ଗଙ୍ଗାଧରଙ୍କ ଅର୍ଘ୍ୟଥାଳୀ, ନନ୍ଦକିଶୋରଙ୍କ ନିର୍ଝରିଣୀ, ଉତ୍କଳ ଭାରତୀ, କୁଞ୍ଜବିହାରୀ ଦାଶଙ୍କ 'ପ୍ରଭାତୀ', କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ 'ଆତ୍ମଲିପି', ରାଧାମୋହନ ଗଡ଼ନାୟକଙ୍କ 'ଦାରିଦ୍ର୍ୟ' ଆଦିରେ ସେକ୍‌ସପିୟରୀୟ ସନେଟ୍ ରଚନା ରୀତି ଅନୁସୃତ ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ କବିମାନଙ୍କ ମଧ୍ୟରେ କବି ଲକ୍ଷ୍ମୀକାନ୍ତ ମହାପାତ୍ର, ବୈକୁଣ୍ଠନାଥ ପଟ୍ଟନାୟକ, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ପ୍ରମୁଖ ସନେଟ୍ ରଚୟିତା ପ୍ରସିଦ୍ଧି ଅର୍ଜନ କରିଛନ୍ତି । ଏ

ସମସ୍ତଙ୍କୁ ମଧ୍ୟରୁ ସବୁଜ କବି ମାନସିଂହ ସନେଟ୍ ରଚନା କ୍ଷେତ୍ରରେ ଅଧିକ ଯଶସ୍ୱୀ ହୋଇଛନ୍ତି । ବ୍ୟକ୍ତିଗତ ଭାବାବେଗ ଆଧାରରେ ସେ ଅସଂଖ୍ୟ ସନେଟ୍ ରଚନା କରିଛନ୍ତି । ମାନସିଂହଙ୍କ 'ତିନୋଟି' ସନେଟ୍ ଏକ ଉତ୍କୃଷ୍ଟ କାବ୍ୟକୃତି । ମାନସିଂହଙ୍କ ପରେ କବି ବିଭୁଦତ୍ତ ମାନବପ୍ରେମର ଜଣେ ଉଦାତ୍ତ ଗାୟକ ।

ଆଧୁନିକ ଓଡ଼ିଆ କବିତା ଧାରାରେ ସବୁଜ ବନାମ୍ ରହସ୍ୟବାଦୀ କବି ମାୟାଧର ମାନସିଂହ ଏବଂ ରୋମାଣ୍ଟିକ୍ କବି ବିନୋଦ ନାୟକଙ୍କ ପରବର୍ତ୍ତୀ ଜଣେ ସଚ୍ଚୋଟ ଉତ୍ତରାଧିକାରୀ ଭାବେ ଅସଂଖ୍ୟ ସନେଟ୍‌ର ରଚୟିତା ତଥା ଗୀତିକବି ବିଭୁଦତ୍ତ ମିଶ୍ର ଏକ ଶ୍ରଦ୍ଧାପୂର୍ଣ୍ଣ ଉଚ୍ଚାରଣ । ସ୍ୱଳ୍ପ ସମୟସୀମା ଭିତରେ ଜୀବନକୁ ଭିନ୍ନ ଢଙ୍ଗରେ ସନ୍ଦର୍ଶନ କରିଥିବା ଦରଦୀ-କବି ବିଭୁଦତ୍ତ ମିଶ୍ର ଓଡ଼ିଆ କବିତା ରାଜ୍ୟର ଜଣେ ଅନନ୍ୟ କାବ୍ୟପୁରୁଷ । କବିତାରେ ମାତ୍ରାଛନ୍ଦର ପ୍ରୟୋଗ ସହିତ ଚଉଦଗୋଟି ଧାଡ଼ି ବିଶିଷ୍ଟ ସନେଟ୍ ରଚୟିତା ଭାବେ ସେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ଅଭିଜାତ ପୂର୍ଣ୍ଣ ଭାଷା, ବିଚିତ୍ର ଝଙ୍କାର ସୃଷ୍ଟିକାରୀ ଶବ୍ଦସମ୍ଭାର ଓ ଶ୍ରୁତିରଞ୍ଜକ ଛନ୍ଦ ସଂପଦ ଦ୍ୱାରା ସେ ପାଠକକୁ ଅଭିଭୂତ କରିପାରନ୍ତି ।

ଅବିଭକ୍ତ ପୁରୀ ଜିଲ୍ଲା ଅନ୍ତର୍ଗତ ଖୋର୍ଦ୍ଧା ସବ୍‌ଡିଭିଜନ୍‌ର 'କୁଦିଆରୀ' ଗ୍ରାମରେ ୧୯୩୬ ମସିହା ନଭେମ୍ବର ୨୯ ତାରିଖରେ କବି ବିଭୁଦତ୍ତଙ୍କ ଜନ୍ମ । ପିତା ସ୍ୱର୍ଗତ ବାଞ୍ଛାନିଧି ମିଶ୍ରଙ୍କ ପ୍ରେରଣାରେ ସାହିତ୍ୟଆଡ଼କୁ ଢଳିଥିଲେ ଏବଂ କବିତା ରଚନାରେ ଆଗ୍ରହୀ ହୋଇଥିଲେ । ୧୯୫୬ ମସିହାରେ ରେଭେନ୍‌ସା ମହାବିଦ୍ୟାଳୟରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ପ୍ରଥମ ସ୍ଥାନ ଲାଭ କରିଥିଲେ । ୧୯୫୮ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଲାଭ କଲାପରେ 'ଓଡ଼ିଶା ଶିକ୍ଷା ବିଭାଗ'ରେ ଅଧ୍ୟାପକ ଭାବରେ ଯୋଗଦାନ କରିଥିଲେ । ୧୯୭୬ ମସିହାରେ 'ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ୍.ଫିଲ୍ (କଳାଭୂଷଣ) ଲାଭ କରିବାରେ ସେ ଥିଲେ ସର୍ବପ୍ରଥମ ବ୍ୟକ୍ତି । ରେଭେନ୍‌ସା, ସାମନ୍ତ ଚନ୍ଦ୍ରଶେଖର, ପୁରୀ, ଖଲ୍ଲିକୋଟ କଲେଜ୍, ବ୍ରହ୍ମପୁର ପ୍ରଭୃତିରେ ସେ ଦୀର୍ଘ ୩୭ ବର୍ଷ ଧରି ଅଧ୍ୟାପନା ପରେ ଅବସର ପ୍ରାପ୍ତ ହୋଇ ଅତି ସ୍ୱଳ୍ପ ବୟସରେ ୨୦୦୩ ମସିହାରେ ଦେହ ତ୍ୟାଗ କରିଥିଲେ । ମାତ୍ର ୫୭ ବର୍ଷର ସମୟସୀମା ଭିତରେ ତାଙ୍କ ଅବାଧ ଲେଖନୀର ଯାଦୁକରୀ ମାୟାଜାଲ ପାଠକଙ୍କ ନିକଟରେ ଜଣେ ବିଶିଷ୍ଟ ଛନ୍ଦଧୁରୀଣ କବିର ପରିଚୟ ପ୍ରଦାନ କରିଛି । ଅନନ୍ୟ ତାଙ୍କର କଳ୍ପନା ବିଳାସ, ଅଦ୍ଭୁତ ତାଙ୍କର ଶବ୍ଦବସାଣ !

ତାଙ୍କ ରଚିତ ଉତ୍କୃଷ୍ଟ ସୃଷ୍ଟିସମ୍ଭାରରେ ରହିଛି- "ଉର୍ବଶୀର ଚିଠି" (୧୯୬୧), ହେ ସାରଥି! ରଥ ରଖ (୧୯୬୩), ଶହେଟି ସନେଟ୍ (୧୯୬୫), ବିସ୍ମୃତିର ସ୍ମୃତି (୧୯୮୧), ସୁପର୍ଣ୍ଣର ସଂଗୀତ (୧୯୯୦) ଆଦି ପ୍ରକାଶିତ କବିତା ପୁସ୍ତକ । ସାହିତ୍ୟ ସମାଲୋଚନା କ୍ଷେତ୍ରରେ ମଧ ସବୁଜ ଯୁଗ ଓ କାବ୍ୟ ସଞ୍ଚୟନ (୧୯୬୪), ଓଡ଼ିଆ ନାଟକ ଓ ମୁକୁନ୍ଦ ଦେବ (୧୯୬୫), ଚନ୍ଦ୍ରଭାଗା ଓ ରାଧାନାଥ (୧୯୬୨), କବିତା କଲ୍ଲୋଳ ପର୍ଯ୍ୟାଲୋଚନା (୧୯୬୫), ଚନ୍ଦ୍ରଭାଗା ଓ ରାଧାନାଥ (୧୯୫୯), କବିତା କଲ୍ଲୋଳ ପର୍ଯ୍ୟାଲୋଚନା (୧୯୬୫), ଗାଥାକବି ଗୋଦାବରୀଶ (୧୯୯୫) ଇତ୍ୟାଦି ଉଲ୍ଲେଖଯୋଗ୍ୟ ଅଟେ । 'ସାଗରିକାର ସପ୍ନଭଙ୍ଗ' (୧୯୬୩) ତାଙ୍କର ଏକମାତ୍ର ଉପନ୍ୟାସକୃତ । କବିତା: କାଲି ଓ ଆଜିର, କବିତା କଳା, ମାନସଗଙ୍ଗା, ଏକାଙ୍କିକା ମାଧୁରୀ, ପ୍ରବନ୍ଧାୟନ ତଥା ଗନ୍ଧମାନସ ପ୍ରଭୃତି ବିଭୁଦତ୍ତ ମିଶ୍ରଙ୍କର ଉଚ୍ଚକୋଟୀର ସଂକଳିତ ପୁସ୍ତକ ଅଟେ । ତାଙ୍କର ସମସ୍ତ ସୃଷ୍ଟି ଭିତରେ ରହିଛି ଐଶୀ ଆଶୀର୍ବାଦ ପ୍ରେରିତ ଦିବ୍ୟ କବିତ୍ୱ, କିନ୍ତୁ; ଏକ ଖଣ୍ଡିତ-ପୂର୍ଣ୍ଣଚନ୍ଦ୍ର ରୂପେ ଓଡ଼ିଆ ସାରସ୍ୱତ ଜଗତକୁ ଔଜ୍ଜଲ୍ୟପୂର୍ଣ୍ଣ କରିବାରେ ଅଦ୍ୱିତୀୟ ଭୂମିକା ଗ୍ରହଣ କରିଛି ।

ବିଶେଷତଃ, କବିତାର ଭାବସ୍ରୋତ ଭିତର ସେଣ୍ଟିମେଣ୍ଟ୍ ପାଠକକୁ ବାନ୍ଧିରଖିପାରିବାର ଅଦ୍ଭୁତ ଚାତୁରୀ ବିଭୁଦତ୍ତଙ୍କ ମୌଳିକତାର ପରିଚାୟକ ହୋଇଛି । "ପ୍ରେମ ଓ ପ୍ରଣୟର ଅଦ୍ଭୁତ ବିଳାସରେ ଅଭିଷିକ୍ତ ତାଙ୍କର ପ୍ରତିଟି କବିତା । ପ୍ରେମ ଜର୍ଜର ଆବେଗ, ଅନୁରାଗ ବିସିକ୍ତ ଶବ୍ଦମେଖଳା ଏବଂ ପ୍ରେମାପ୍ଲୁତ ବିଦଗ୍ଧ ଚେତନାର ବର୍ଣ୍ଣିଳ ଦ୍ୟୁତି ହେଉଛି ବିଭୁଦତ୍ତଙ୍କ କବିତାର ବୈଶିଷ୍ଟ୍ୟ । ସନେଟ୍ ରଚନା କ୍ଷେତ୍ରରେ ରହିଛି ପୁଣି ତାଙ୍କର ଅଦ୍ଭୁତ ଦକ୍ଷତା, ଚମକପ୍ରଦ ଶାବ୍ଦିକ କାରିଗରୀର ପାରଦର୍ଶୀ ପାଟବତା ପ୍ରଦାନ କରିଛି ତାଙ୍କୁ ଏକ ସ୍ୱତନ୍ତ୍ର ସ୍ଥାନ । କବିତା ତାଙ୍କ ଜୀବନ ଓ କବିମନସ୍କ ମୁଗ୍ଧ ଚେତନାରେ ମଗ୍ନ ତାଙ୍କର ସମୁଦାୟ ସଂସାର ଓ ପାର୍ଥିବ ପରିମଣ୍ଡଳ ।" (୬) ସୁବିନ୍ୟସ୍ତ ଶବ୍ଦବସାଣ, ନିର୍ଦ୍ଦିଷ୍ଟ କାବ୍ୟନୈପୁଣ୍ୟ, ଛନ୍ଦମଗ୍ନ-ପ୍ରେମାଭିଭୂତ ଗୀତିମୟତା ସହିତ ବ୍ୟକ୍ତିକୈନ୍ଦ୍ରିକ ଜୀବନବୋଧର ଭାଷ୍ୟକାର ତଥା ପ୍ରେମ-ପ୍ରଣୟର ନୂତନ ସଂଜ୍ଞାକାର ଭାବେ କବି ବିଭୁଦତ୍ତ ମିଶ୍ର ଅବିସ୍ମରଣୀୟ ରହିବେ ନିଶ୍ଚୟ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟରେ ଆଧୁନିକ କବିଗଣ ଓଡ଼ିଆ ଗୀତି

କବିତାକ୍ଷେତ୍ରରେ ପାଶ୍ଚାତ୍ୟର 'ସନେଟ୍' କାବ୍ୟରୂପକୁ ପ୍ରତିଷ୍ଠା କରିଛନ୍ତି ।

ଆଧୁନିକ ଓଡ଼ିଆ କବିତା ସାହିତ୍ୟ ଧାରାର କବି ବିଭୁଦତ୍ତ ମିଶ୍ର ଜଣେ ସଫଳ ଗୀତିକବି ତଥା ଶ୍ରେଷ୍ଠ ସନେଟ୍ ରଚୟିତା ରୂପେ ବେଶ୍ ପରିଚିତ । ସାଧାରଣ ଜଗତଠାରୁ ତାଙ୍କ କବିତା ଜଗତର ସ୍ୱର ବେଶ୍ ସ୍ୱତନ୍ତ୍ର । ପାରମ୍ପରିକ କଳ୍ପନାବିଳାସୀ ଠାରୁ ତାଙ୍କ ଆବେଗ ଓ କଳ୍ପନା ସଂପୂର୍ଣ୍ଣ ଭିନ୍ନ । କବି ସେକ୍ସପିୟରଙ୍କ ମତରେ କବିର କଳ୍ପନା ଅନନ୍ୟ । "The poet's eye in a fine frenzey rolling. Doth glance from heaven to earth from earth to heaven. And as imagination bodies forth, the forms of things unknown the poet's pen. Turn them to shapes and gives to airy nothing. A local habitation and a name".

(୭) ବିଭୁଦ ଙ୍କ କବିତାରେ ପାର୍ଥିବ ଅଳୀକ ସଂସାରର ପ୍ରେମ ଉଜ୍ଜୀବିତ ହୋଇଛି । ଅଳୀକ ଭିତରେ ଚିରନ୍ତନ, ପାର୍ଥିବ ମଧ୍ୟରେ ଅପାର୍ଥିବର ଅନ୍ୱେଷା ରହିଛି । ତାଙ୍କ କବିତାରେ ନିଃସଙ୍ଗତା, ଅସଫଳତା, ଅଭିମାନ, ଅଭିଯୋଗ, ମୋହାବିଷ୍ଟ ବିଶ୍ୱାସର ନୀରବ ପ୍ରତିଧ୍ୱନି, ଆବେଗ ଏବଂ କ୍ଷୋଭର ସ୍ୱର ରହିଛି । ଇଲିୟଟ୍‌ଙ୍କ କଥିତ "A poem has its own life" ଭଳି ବିଭୁଦତ୍ତଙ୍କ କବିତାରେ ମଧ୍ୟ ଏକ ବ୍ୟକ୍ତିଗତ ଜୀବନବୃତ୍ତ ଅଛି ।

'ଉର୍ବଶୀର ଚିଠି' (୧୯୫୯) କବିତାରେ କବିଙ୍କର ଜୀବନକୁ ନେଇ ଅସଂଖ୍ୟ ଆବେଗ ଶବ୍ଦାୟିତ ହୋଇଛି । ଅନେକ ବ୍ୟର୍ଥତା, ପୁଞ୍ଜୀଭୂତ ନୈରାଶ୍ୟ, ଅଶ୍ରୁ, ପ୍ରେମ-ପ୍ରତାରଣା, ଆଘାତର କଥା ଅଛି । ଅତୀତ ଗତାୟୁ ସାଜେ । ବର୍ଷ ପରେ ବର୍ଷ ଚାଲିଯାଏ, ବିଭକ୍ତ ଜୀବନ ନେଇ ମଣିଷ ଆଗକୁ ବଢ଼ିଚାଲେ । ସ୍ମୃତି କିନ୍ତୁ ଦାଗ ଭଳି ଆତ୍ମା ଓ ପ୍ରାଣରୁ ଯାଏନି । କିଛି ଶେଷ କଥା, ଶେଷ ଦେଖା ଏବଂ 'ଶେଷ' ହେବା ଭିତରେ ଅଶେଷ ସ୍ମୃତି ସତେଜ ଥାଏ । ଯାହା ମୃତ୍ୟୁ ଯାଏ ଶାଶ୍ୱତ ରହେ । କବିଙ୍କ ମତରେ କେହି କାହାର ଖବର ରଖେନି, କେତେ କିଏ ଦୂରେଇ ଯାଆନ୍ତି । ଝଡ଼ର ମୁଠା ଭିତରେ ନିରୀହ କପୋତ ପରି ସ୍ମୃତି-ଅନୁଭବ ପଡ଼ିରହେ ।

"ରାତିର ସପନ କଥା ସକାଳକୁ ସବୁ ଯାଏ ଭୁଲି
କେତେ କଥା ଅସୁରୁଣୀ, ରାଜା ଝିଅ ଅପସରା ବାଲି ।"

ସମୟ ମଣିଷ ଜୀବନରୁ ସମସ୍ତ ଆବେଗକୁ ଶୋଷିନିଏ । ଜୀବନ ଘଟଣାବହୁଳ ହୋଇଯିବା ପରେ ନିର୍ଦ୍ଦିଷ୍ଟ ସ୍ମୃତିକୁ ବଞ୍ଚିହୁଏନି । ଜୀବନର ଘଟଣା ଓ

ସମୟର ପ୍ରଭାବକୁ ନେଇ ମଣିଷର ଜୀବନ ପ୍ରବନ୍ଧ ପାଲଟେ । ତା'ରି ଭିତରେ ମଧ୍ୟ "କା'ର ଡାକ ଶୁଭେ, ସମୁଦ୍ରର ପବନେ ପବନେ, ମୋତେ କିଏ ଖୋଜେ ଅବା ନେଳି ନେଳି ଆକାଶ ଅଣ୍ଡାଳି ।" 'କୁମାରୀ ମହାନ୍ତି' କବିତାରେ 'ପ୍ରେମ ପରେ ବିସ୍ମୃତି ଓ ବିସ୍ମୃତିରେ ସ୍ମୃତିଟା ହିଁ ସତ୍ୟ, ଭିତରେ ଜାଣିଶୁଣି ଭୁଲିବାର ଅଭିନୟ ଜାରିରହେ । 'ଉର୍ବଶୀର ଚିଠି' କବିତା ପୁସ୍ତକରେ କବି ଆନ୍ତରୀଣ ବୈକଲ୍ୟ ଓ ବୈଫଲ୍ୟକୁ ନେଇ ନିଛାଟିଆ ଜୀବନର ଚିତ୍ର ଆଙ୍କିଛନ୍ତି । କବି ବର୍ଷଣୋନ୍ମୁଖୀ ରାତିରେ ସ୍ମୃତିକୁ ଝୁରିଛନ୍ତି । ସେଇ ନିଃସଙ୍ଗତା ଭିତରେ ଛଟପଟ ହୋଇ ଅଶ୍ରୁ ବିସର୍ଜନ କରିଛନ୍ତି ।

କବି ବିଭୁଦତ୍ତଙ୍କ ପାଇଁ ତାଙ୍କ କବିତାର କେନ୍ଦ୍ର ହେଉଛି 'ନାରୀ' । 'ପ୍ରେମ'କୁ ନେଇ ସମାଜ ତାଙ୍କୁ ଅପବାଦ ଦିଏ, କୁଳଟା, ନିନ୍ଦା, ଅସତୀ, ମାୟାବିନୀ ଶବ୍ଦରେ ସମ୍ବୋଧିତ କରାଯାଏ । କବି କିନ୍ତୁ କହି ଉଠିଛନ୍ତି-

"ଭଲ ଅବା ମନ୍ଦ ହୁଅ, ତୁମେ ମୋର ଅତି ଆପଣାର" ।

ନାରୀର ସ୍ନେହ, ପ୍ରୀତି, ମମତା, କୋମଳତା, ଆଶ୍ୱାସନା ଓ ପାପମୟ ପୃଥିବୀରେ 'ପଦ୍ମ' ତୁଲ୍ୟ । ତେଣୁ, କବି ତା'ର ସାନ୍ନିଧ ଚାହେଁ । କବି ଲେଖିବସେ- "ତୁମେ ଗୋ ପ୍ରିୟେ ମୋ ପାଶେ ଥିଲେ; ବେଦନାଭରା ଧୂଳିମାଟିର ଧରଣୀ ହେବ ସ୍ୱର୍ଣ୍ଣକାରା ।"

କବି ଅତୀତକୁ ନେଇ ମୋହାବିଷ୍ଟ । କବିଙ୍କ ପାଇଁ ତାଙ୍କ ପ୍ରେମିକା 'ଅବିସ୍ମୃତ ।' ଏବଂ 'ନିତ୍ୟ-ନୂତନ' । ଦୁଃଖ-ସନ୍ତାପପୂର୍ଣ୍ଣ ଜଗତରେ ସନ୍ତପ୍ତ କବି ଚେତନା ତାଙ୍କ ପ୍ରଣୟିନୀ ପ୍ରତି ସମର୍ପିତ । ତାଙ୍କ ଶବ୍ଦରେ -

"ବ୍ୟଥା-ବେଦନାର ଏଇ ପୃଥିବୀର ବହୁ ଉର୍ଦ୍ଧ୍ୱେ ଉଠି
ଦେଖେ ନିତ୍ୟ-ଶାନ୍ତି-ସରେ ପ୍ରଣୟର ପଦ୍ମ ଅଛି-ଫୁଟି ।"

ତ୍ୟାଗରେ ହିଁ ପ୍ରଣୟର ପରିଚୟ; କବିର ଅପେକ୍ଷା ନାହିଁ ତା'ର ପ୍ରେମ ଅଭିଷିକ୍ତ ହୋଇଛି ନା ନାହିଁ ବୁଝିବାକୁ । ତଥାପି କବିର ମନ ବୁଝୁନି -

"କେବଳ ଶୁଣିବ ଯେବେ ପ୍ରିୟତମେ! ବହୁ ଦୂରେ ଥାଇ / ଅତୀତର କବି ତୁମ, ଆଉ ଏଇ ଜଗତରେ ନାହିଁ / ସ୍ମରି ସଜଳ ନେତ୍ରେ ଅତୀତର କେତୋଟି ମୁହୂର୍ତ୍ତ / ଗାଇବ କବିତା ତା'ର ଲେଖିଥିଲା ଯାହା ତୁମ ପାଇଁ ।"

ପୁଣି କବି ଗାଇ ଉଠିଛି - "ଅସହାୟ ଶିଶୁପରି, ମନ ହୁଏ କାନ୍ଦିବାକୁ ମୋର ।" ଯନ୍ତ୍ରଣାକୁ ନବୁଝି କ'ଣ ଅଶ୍ରୁ ତର୍ପଣ କରିହୁଏ, ଶିଶୁର ମନକୁ ନବୁଝିଥିବା ମଣିଷ କ'ଣ ଶିଶୁ ହୋଇପାରେ, ପ୍ରେମକୁ ନ ବୁଝି କ'ଣ ପ୍ରେମ କବିତା ଲେଖିହୁଏ ?

"ବସିଥିବି ଚାହିଁ ଉଜାଗର ହୋଇ ସବୁ ଖାଲି ସହି,
ଏଇ ଜୀବନର ଦାଉ ।"
ପୁଣି, "ବୟସ ମରିଗଲେ କ'ଣ ମରିଯାଏ ମମତାର ଧାର
ରୂପ ସିନା ଲିଭିଯାଏ, ଲିଭେ କ'ଣ ପ୍ରଣୟର ଗାର ।"

ଜୀବନଯାତ୍ରାର ଆଶା-ନିରାଶା, ଝଡ଼-ଝଂଜା, ଅଶ୍ରୁ-ବେଦନାର ରୂପକାର ସାଜିଛନ୍ତି କବି । ଅସହ୍ୟ ଦୁଃଖ, କ୍ଳାନ୍ତି, ଆଘାତ, ଅବସାଦ, ଶତ ଶତ ନିନ୍ଦା-ଅପବାଦ ହେତୁ ଜୀବନର ଆବେଗ ସତଃ ମରିଯାଏ ସତ କିନ୍ତୁ ପ୍ରେମର ସେ ଚିହ୍ନଟି ଅଲିଭା-ଅକ୍ଷୁଣ୍ଣ ।

'ଶେଷ ମୁହୂର୍ତ୍ତର ଆତ୍ମକଥା' କବିତାରେ ଜୀବନକୁ 'ଭଡ଼ାଘର' ବୋଲି ସେ ମାନିନେଇଛନ୍ତି । ଭଡ଼ାଘରୁ ବିଦାୟ ନେଲାବେଳେ ମୋହମାୟାର ବନ୍ଧନ କାଟି ଯିବାକୁ ହୁଏ । ସୁଖ, ଦୁଃଖ, ଇତିହାସ, ବେଦନା, ବ୍ୟଥା, ଦୀର୍ଘଶ୍ୱାସ, ବିଶ୍ୱାସ-ଅବିଶ୍ୱାସ, ପ୍ରେମ-ପ୍ରତାରଣାର ବଳୟ ଭିତରେ ସନ୍ତୁଳି ହେବାକୁ ହୁଏ । କବିଙ୍କ ମତରେ ପ୍ରେମରେ 'ପାପ' ବୋଲି କିଛିନାହିଁ । ତେଣୁ ସେ କହନ୍ତି- "ପାପ ଯଦି କିଏ କହେ, ସେ ବିଷୟ ଭାବି ବସିବନି, ପ୍ରେମର ଜଗତେ ପାପ ନ ଥିଲା କି କେବେହେଲେ ନାଇଁ ।" କବିଙ୍କ ସ୍ମୃତି ବିଜଡ଼ିତ ଅତୀତର ସବୁକଥା, ସବୁ ଘଟଣା ସଦା ଭାସ୍ୱର । କାହିଁକିନା- "ଯାହାକୁ ଭୁଲିବା ପାଇଁ ଯେତିକି ଗୋ କରିବ ସାଧନା, ସେ ସେ ପଡ଼ିବ ମନେ ଏତିକି ତ ପ୍ରେମର ବେଦନା" । ମନେପଡୁଥିବା ଅତୀତର ସ୍ମୃତିର ମୃତ୍ୟୁ ନାହିଁ । "ସ୍ମୃତି ତେବେ ! ସ୍ମୃତି କ'ଣ ଭୁଲିବାର ନୁହେଁ, ତା'ହେଲେ ତା' ମନେ ପ୍ରାଣେ ଏତେ କଷ୍ଟ, ବ୍ୟଥା କିଆଁ ଦିଏ ?" ବୋଲି କବି ବ୍ୟଥାତୁର ହୋଇଉଠିଛନ୍ତି ।

ବୋହିଗଲା ନଈ ସୁଅ କେବେବି ପଛକୁ ନଲେଉଟିବା ପରି ଅତୀତ ମଧ ଅଣଲେଉଟା । ଯେଉଁଠି କବି ଜୀବନର ଅବଶିଷ୍ଟାଂଶକୁ ମୃତ୍ୟୁପରେ ପାଇବାର ଇଚ୍ଛା ରଖୁଛି ପୁଣି ସେଇଠି ତାକୁ ଏ ସଂସାର ବିଷାକ୍ତ ମନେ ହୋଇଛି, "ମନର ଏଇ ଅବସ୍ଥାଗତ ବିରୋଧାଭାସ ହିଁ ପ୍ରେମ ଓ ପ୍ରେମର ଆଧାର ପ୍ରତି କବିପ୍ରାଣର ଅନୁରକ୍ତି ଓ ଆନୁଗତ୍ୟ ପ୍ରକାଶର ସର୍ବଶ୍ରେଷ୍ଠ ଉପାୟ, ଯେଉଁଠି କାବ୍ୟିକ ଚେତନା ମୂର୍ତ୍ତିମନ୍ତ ହୋଇଉଠେ ।"(୮) ସଂସାରରେ ସମସ୍ତ ମିଥ୍ୟାଡ଼ମ୍ବରକୁ କବି ସ୍ୱଚକ୍ଷୁରେ ଅବଲୋକନ କରି ବିକଳ ହୋଇଉଠିଛି । ଏଠି ଦେବାଳୟ ଅଛି ଧର୍ମ ନାହିଁ, ଧର୍ମର ସ୍ଥିତି ଅଛି କିନ୍ତୁ ଛଦ୍ମବେଶୀ ଧାର୍ମିକଙ୍କ ହାତମୁଠାରେ । କବିଙ୍କୁ ଏ ପୃଥିବୀ ପାପ ଓ

ପ୍ରମାଦରେ ଅତି ଭୟଙ୍କର ମନେ ହୋଇଛି । ତେଣୁ ବାରମ୍ବାର ସେ କହିଉଠିଛି "ଫେରିବାକୁ ଇଚ୍ଛା ନାହିଁ, ଏ ଜୀବନ ଅତି ଭୟଙ୍କର, ଏ ପୃଥିବୀ, ଏ ମୌସୁମୀ, ଏ ଆକାଶ ଭଲ ଲାଗେନାହିଁ ।" ପୁଣି ଲେଖିଛନ୍ତି- "ଯେ ଆଶା ରହିଲା ବାକି ରହୁ ପଛେ ଯୁଗ ଯୁଗ ପାଇଁ, ମାଟିର ଏ ମରଣକୁ ଫେରିବାକୁ ଇଚ୍ଛା ଆଉ ନାହିଁ ।" କବିତା "ଉର୍ବଶୀ ତ୍ରିପାଠୀ କବିଙ୍କର କାବ୍ୟ ମାନସୀ, ନାୟିକା, ପ୍ରେମିକା ଓ ଚିର ଇପ୍‌ସିତ । କବିତାରେ ପ୍ରେମକୁ ନେଇ ଅପବାଦ ଲାଞ୍ଛନା, ମାନସିକ ଯନ୍ତ୍ରଣା ଭୋଗିଥିବା ନାୟିକାର ପୁରୁଷ ସମାଜପ୍ରତି ବ୍ୟଙ୍ଗ ଓ ବିଦ୍ରୁପର ସ୍ୱର ଉଚ୍ଚାରିତ ହୋଇଛି -

"ମୋତେ ଛାଡ଼ି ସହରର ସବୁ ନାରୀ ସତୀ ସିମନ୍ତିନୀ / ପର ପୁରୁଷର ଛାଇ, ଛୁଇଁନାହିଁ ତାଙ୍କ ଶୁଦ୍ଧ ଦେହ ( ? ) / ପୁରୁଷ ସମସ୍ତେ ଏଠି ଜିତେନ୍ଦ୍ରିୟ, ନାରୀ ଲାଗି ଲାଳସା ବିହୀନ / ତେଣୁ ମୋର ସ୍ଥିତି - ଏଥେ ସମସ୍ତଙ୍କୁ ଲାଗେ ଦୁର୍ବିସହ ।"

କବି ସମସ୍ତ ପ୍ରେମିକାଙ୍କ ପ୍ରତି ସହୃଦୟତା ପ୍ରଦର୍ଶନ କରିଛନ୍ତି । ପ୍ରେମିକା ଅପବାଦ, ଲାଞ୍ଛନାରୁ ବଞ୍ଚିବା ପାଇଁ ପ୍ରେମିକଠାରୁ ଦୂରାଏ, ଯାହା ପାଇଁ ନାରୀଟିଏ ଶତ ଶତ ଅସତୀର ଅପବାଦ ସହିଯାଏ, ତା'ର ସମସ୍ତ ପ୍ରତିଦାନରେ ପ୍ରେମିକର ଚିଠିଖଣ୍ଡେ ମଧ ସେ ପାଏନି । ନାରୀର ମନସ୍ତତ୍ତ୍ୱକୁ ସ୍ପଷ୍ଟ ଭାବରେ ବୁଝି-ବୁଝାଇବା ନିମନ୍ତେ କବିର ଶବ୍ଦଖେଳ ଅତି ଚମତ୍କାର ମନେ ହୁଏ ।

"ତୁମ ଲାଗି ବରିନେଲା ଯିଏ ଶତ ଅପବାଦ ଲାଞ୍ଛନା ଓ ଅସତୀ ଉପାଧି ତା'ର କଥା ଥରେହେଲେ, ଆଉ କ'ଣ ମନରେ ପଡ଼େନି ?"

କବି ବୁଝିଛି ତା' ପ୍ରଣୟିନୀର ନିଗିଡ଼ା ସୋହାଗକୁ । ତା'ର ଅକପଟ ସମର୍ପଣକୁ । ପ୍ରେମିକାର ମୂଲବାନ ପ୍ରେମ ଉଦ୍ଦେଶ୍ୟରେ କବିର ସମ୍ମାନବୋଧ କି ଅନନ୍ୟ ସତେ !

- "ଉର୍ବଶୀ ଯଦି ସତୀ ସମ ସହ ଗୋ ଲାଞ୍ଛନା,
ଶିବ ସମ ପ୍ରିୟ ତବ ଶବ ବହି ପୃଥ୍ୱୀ ଘୂରିପାରେ ।"

ପ୍ରେମର ନିଜସ୍ୱ ଔଜଲ୍ୟ ଅଛି, ଏକ ବିଜନ ମୁଲକରେ ଦୁଇଟି ଆତ୍ମାର ମିଳନ ଛଡ଼ା ଯେଉଁଠି କେହି ଦିଶନ୍ତିନି, କିନ୍ତୁ ଉର୍ବଶୀ ପାଇଁ ପ୍ରେମିକର ହୃଦୟ କଠୋର-ପାଷାଣ । ସେ ଆକାଶ ଭଳି ନିର୍ବିକାର, ଅଟଳ, ଅଚଳ, ରୁକ୍ଷ, ନିଷ୍ଠୁର ଏବଂ ପ୍ରତିକ୍ରିୟାହୀନ । ତେବେବି, ଯୁଗେ ଯୁଗେ ନିଷ୍ଠୁର ଶିବଙ୍କ ପାଇଁ ପାର୍ବତୀଙ୍କ କଠୋର ପ୍ରଣୟ ସାଧନା ସ୍ମରଣୀୟ ରହିଛି ।

କବି ଯେହେତୁ ସମଦର୍ଶୀ ତେଣୁ ତାଙ୍କ ମତରେ "ଦୁଃଖ ଦେବା ଲୋକ ହିଁ ବେଶି ପ୍ରିୟ ।" ବେଦନାରେ ଦଗ୍ଧ ହୋଇ ଦୁଃଖ-ସୁଖ, ଶୋକ-ଶାନ୍ତି ଭିତର ଦେଇ ପ୍ରୀତିର ତାତ୍ତ୍ୱିକ ରୂପକୁ ସେ ବୁଝିପାରେ । ତା' ପାଇଁ ସବୁ ସ୍ଥିତି ସମାନ ଥାଏ କାରଣ ସେ ପ୍ରେମରୂପୀ କଣ୍ଟାର କିରୀଟ ଗଦ ନିଜ ମସ୍ତକରେ ପିନ୍ଧି ସାରିଥାଏ । ଧୂପ ପରି ସୌରଭ ବିଛୁରିତ କରି ଜଳି ଯିବାକୁ ଚାହେଁ । ଜୀବନରେ ଏକାକୀ ମଶାଣିପଦାର ବରଗଛ' ଭଳି ନିରବି ଯିବାକୁ ଚାହେଁ । "ଅନ୍ୟ ଆଖିରେ ଯାହା ପାପ, କବିଙ୍କ ପାଇଁ ତାହା ପୁଣ୍ୟ, ଅନ୍ୟ ପାଇଁ ଲୁହ-ଲୁହଧୁଆ ପୀରତି, ଶତ ଅପବାଦ ହିଁ ଜୀବନର ଗୌରବ ଏବଂ ପୁଣ୍ୟ ବୈଭବ ।" କବିଙ୍କ ଭାଷାରେ -

"ପାପ-ଅପବାଦ ଲାଗି ସିନା ପ୍ରୀତି ମଧୁର
ଯୁଗେ ଯୁଗେ ଯାହା କବିରେ କରିଛି ଅଧୀର ।"

ବେଦନାବୋଧ ଭିତରେ କବି ସୁଖର ସନ୍ଧାନ କରିଛି । ବିରହ-ମିଳନର ମୋହକୁ ଉଜ୍ଜୀବିତ କରିବା ପାଇଁ କବିକୁ ଝୁରିବା ଭଲ ଲାଗିଛି । "ବ୍ୟଥା-ବେଦନାର ଦୀର୍ଘତର ହେଉ" ବୋଲି ତା'ର ଆନ୍ତରୀଣ ଇଚ୍ଛା । ବେଳ ଅବେଳରେ ହୃଦୟର ସ୍ମୃତି ସବୁ ଜୀବନ୍ତ ହୋଇଉଠେ । କି ସୁନ୍ଦର ଅନୁଭବ କବିର !

"ବେଳେବେଳେ ତୁମେ ଆସ ମାନନାଇଁ ସମୟ ଓ ସ୍ଥାନ
ମୋ ଅତୀତ ଗୀତ ଗାଏ, କଣ୍ଠେ ତୋଳି ଅପୂର୍ବ କମ୍ପନ ।"

କବି ପାଇଁ ଅତୀତର ସ୍ମୃତି ସବୁ ସୁବର୍ଣ୍ଣତୁଲ୍ୟ, ପ୍ରେମ-ଶାଶ୍ୱତ, ପ୍ରୀତିରେ ଭଙ୍ଗା ନାହିଁ କି ପୂର୍ଣ୍ଣଚ୍ଛେଦ ନାହିଁ । କୌଣସି ଶକ୍ତିଶାଳୀ ପ୍ରଲୋଭନ- ଆଖିରେ ମାୟାଞ୍ଜନ ବୋଳି କବିଙ୍କୁ ଉଦ୍‌ବେଳିତ ଅବା ପରିବର୍ତ୍ତିତ କରିନପାରେ । ପ୍ରିୟତମାରେ ପ୍ରେମସୁଧା ପାନ କରି, ତାର ସ୍ପର୍ଶଲାଭ ପରେ ଅନ୍ୟ କୌଣସି ରୂପ-ଭୋଗର ତୃଷ୍ଣା ନାହିଁ, ଅବା ଚିତ୍ତ ଚାଞ୍ଚଲ୍ୟ ନାହିଁ । ପୁଣି ପ୍ରେମିକାକୁ ବାନ୍ଧି ରଖି ଜୋର ଜବରଦସ୍ତ ନିଜର କରିବାର ଉନ୍ମାଦନା ମଧ ନାହିଁ । କାରଣ ପ୍ରେମ-ଅବାଧ-ମୁକ୍ତ । ଅପ୍ରାପ୍ତିରେ ତା'ର ପ୍ରାପ୍ତି ।

"ଏକ ଅଲିଖିତ ଯନ୍ତ୍ରଣା କବିର ସାମଗ୍ରିକ ସତ୍ତାକୁ ଅହରହ କେନ୍ଦ୍ର କରି ବୁଲେ ଏବଂ ଏହାର ଝଲକ କବିର ଚିନ୍ତାଶକ୍ତିକୁ ଉଜ୍ଜ୍ୱଳ କରେ, କରେ ରସାଣିତ । ଦୈହିକ ଯନ୍ତ୍ରଣାର ଅବବୋଧ ଅପେକ୍ଷା ମନର ବା ବେଳେବେଳେ ଆତ୍ମାର ଯନ୍ତ୍ରଣା କବିତାକୁ ବହୁ ଉଚ୍ଚସ୍ତରକୁ ଉନ୍ନୀତ କରାଏ ।"(୯) କବି ବିଭୁଦତ୍ତଙ୍କ ଆତ୍ମକୈନ୍ଦ୍ରିକତା

(subjectiveness) ତାଙ୍କୁ ଜଣେ ଯଶସ୍ୱୀ ରୋମାଣ୍ଟିକ୍ କବିର ସ୍ୱତନ୍ତ୍ର ପରିଚୟ ପ୍ରଦାନ କରିଛି । ବାସ୍ତବତାର ଯନ୍ତ୍ରଣା ଭିତରେ ମାନସିକ-କଳ୍ପନାଲୋକର ନିବିଡ଼ ଅନୁଭବ ତାଙ୍କ କବିତାରେ ବେଶ୍ ହୃଦ୍ୟ । ରୋମାଣ୍ଟିକ୍ ଭାବଧର୍ମ, ରୂପଜମୋହ ପ୍ରେମ-ସୌନ୍ଦର୍ଯ୍ୟର ମାୟାଜାଲ, ଭାଷା-ଛନ୍ଦର ଲାଳିତ୍ୟପୂର୍ଣ୍ଣ ଗୀତିଧର୍ମିତା ତାଙ୍କୁ ଦେଇଛି ସ୍ୱତନ୍ତ୍ର ପରିଚିତି । ଜଣେ ସଫଳ 'ସନେଟ୍' ରଚୟିତା ଭାବରେ ଆବେଗକୁ ନେଇ ଅତି ଶୃଙ୍ଖଳିତ ଶୈଳୀରେ ଚଉଦଟି ପଦରେ ଅଭିବ୍ୟକ୍ତ କରିବାରେ ସେ ଯେଉଁ ଅଦ୍ଭୁତ ସ୍ଫୂର୍ତ୍ତି ପ୍ରଦର୍ଶନ କରିଛନ୍ତି ତାହା ବାସ୍ତବିକ୍ ଓଡ଼ିଆ ସାହିତ୍ୟରେ ବ୍ୟତିକ୍ରମ ।

ଜୀବନର ମୌଳିକ ଉଚ୍ଚାରଣକୁ ନେଇ ବିଭୁଦତ୍ତଙ୍କ କବିତା ବେଶ୍ ପ୍ରତିଶ୍ରୁତିବଦ୍ଧ । 'ଉର୍ବଶୀର ଚିଠି' ଅନ୍ତର୍ଗତ 'ତିନୋଟି ସନେଟ୍' ବିଭୁଦତ୍ତଙ୍କ କାବ୍ୟସୌକୁମାର୍ଯ୍ୟର ପରିଚାୟକ ହୋଇଛି । 'ସନ୍ଧ୍ୟା', ଅର୍ଦ୍ଧରାତ୍ରି, ପ୍ରଭାତକୁ ନେଇ କବିଙ୍କ ରୋମାଣ୍ଟିକ୍ ଏଗୋନି ରାଗ ମହ୍ଲାର ତୋଳିଛି । ଧରାବନ୍ଧା ଶବ୍ଦ ସଂଯୋଜନା ଦ୍ୱାରା ବିମ୍ବଧର୍ମୀ ରୂପସୃଷ୍ଟିର ସଫଳ ପ୍ରୟାସ କରିଛନ୍ତି । ଶ୍ରାବଣ ସନ୍ଧ୍ୟାରେ ଚମ୍ପା, ମାଳତୀ, ଗେଣ୍ଡୁଫୁଲ, ମଲ୍ଲୀ, ହେନା ଆଉ କାମିନୀର ପୁଣି ବିଲ, ବନ, ପର୍ବତର ବର୍ଷାଭିଜା ରୂପ, ନୀଳ-ନୀଳ କଷ୍ଟାଘାସର ଢେଉ, ଚମ୍ପାଫୁଲ, କେତକୀ, କିଆବଣ, ଆକାଶର ଭେଳାଭେଳା ମେଘର ଫଟୋଗ୍ରାଫିକ୍ ଚିତ୍ର ଉତ୍ତୋଳନ କରିଛନ୍ତି । ହିନ୍ଦୀ-ରହସ୍ୟବାଦୀ-ଛାୟାବାଦୀ କବୟିତ୍ରୀ ମହାଦେବୀ ବର୍ମାଙ୍କ 'ପ୍ରେମ'ରେ ପ୍ରିୟତମ ପାଇଁ ପ୍ରତୀକ୍ଷା ତ ଥାଏ ନିଶ୍ଚୟ କିନ୍ତୁ ପ୍ରିୟତମର ଅନୁପସ୍ଥିତିର କାମନା ଥାଏ । ଅର୍ଥାତ୍ ଦୀର୍ଘ ପ୍ରତୀକ୍ଷାର ପ୍ରହର ଆଗକୁ ବଢୁଥିଲେ ହେଁ ପ୍ରେମିକର ଉପସ୍ଥିତି ପ୍ରେମିକା ପାଇଁ ଅଲୋଡ଼ା । ଅନୁରୂପ ଭାବରେ ବିଭୁଦତ୍ତଙ୍କ ଶବ୍ଦ ମଧ୍ୟ ବିଳପି ଉଠିଛି ।

"ତୁମେ କି ଆସୁଛ ସତେ ! ଏ ରାତିକୁ ପହଁରି ପହଁରି
ମୋ ରାଣ ! ଆସ ନାଇଁ, ଆସ ନାଇଁ, ଆଜି ରାତି ଅନେକ ଗଭୀର ।"

'ପ୍ରେମ' ଯୌବନକୁ ତାତି ଦିଏ, କାମନାମୟ ପ୍ରହରକୁ ଆବେଗସିକ୍ତ କରେ । କବି ଶବ୍ଦରେ-

"ଏ କାମନା ବୁଢ଼ା ହେବ, ଆସ୍ତେ ଆସ୍ତେ ରଙ୍ଗ ଛାଡ଼ିଯିବ
ଦୁଇ କୂଳଭରା ନଈ, ଚୁପ୍‌ଚାପ୍ ଶୁଖିଲା ପଡ଼ିବ ।"

ପ୍ରେମର ନିୟତିରେ ସର୍ବଦା 'ବିଚ୍ଛେଦ'ର ଋତୁ ହିଁ ଚିରନ୍ତନ । ବେଳେବେଳେ

ଉଭୟଙ୍କ ଭାଗରେ କଠୋରତା ପ୍ରଦର୍ଶନ କରେ -

"ସବୁ କ'ଣ ଭୁଲିଗଲ, ଏତେ ଟାଣ ହୃଦୟ ତୁମର / ଏତେ ଅଭିମାନ ନେଇ, କେବେ କ'ଣ ପ୍ରେମ କରିହୁଏ, / ହୃଦୟର ସବୁକିଛି ଦିଆନିଆ ସରିଗଲା ପରେ / ଅଚାନକ ଭାବେ କ'ଣ ଏଇପରି କିଏ ଭୁଲିଯାଏ ।"

'ସନେଟ୍'ର ପ୍ରମୁଖ ଉପାଦନ 'ପ୍ରେମ', ବିଚ୍ଛେଦ, ପୁରୁଣା ଚିଠି, ଦୀର୍ଘ ପ୍ରତୀକ୍ଷା । 'ଚିଠି' ଗୋଟେ ପ୍ରତୀକ୍ଷିତ ହୃଦୟ ପାଇଁ ମହୌଷଧି ଭଳି । ତା'ର ସମସ୍ତ ଆଶଙ୍କା ସଂଶୟ, ଆତୁରତାରେ ପୂର୍ଣ୍ଣଚ୍ଛେଦ ଟାଣିପାରେ । କିନ୍ତୁ; ଜଣେ ପ୍ରତୀକ୍ଷିତ ପ୍ରେମିକ ତା'ର ପ୍ରେମିକଠାରୁ ପତ୍ରଟିଏ ନପାଇ କିପରି ବ୍ୟାକୁଳ ହୋଇଉଠେ -

"ଯାହା ସହ ପରିଚୟ କେବଳ ଏ ଜୀବନର ନୁହେଁ, / ଏ ପ୍ରାଣର ଅଣୁ ଭେଦି ସ୍ମୃତି ଯା'ର ରହିଛି ଜୀବିତ, / ଯାହା କଥା ଜାଣିବାକୁ ନିତିଦିନ ଚାହିଁ ବସିଥାଏ, / ସମସ୍ତେ ଲେଖନ୍ତି ଚିଠି, ଏକମାତ୍ର ତାହାରି ବ୍ୟତୀତ ।"

ଅତିକ୍ରାନ୍ତ ବୟସରେ ପ୍ରେମିକାର ମ୍ଲାନ ସୌନ୍ଦର୍ଯ୍ୟ, ସପ୍ନଲିଭା ଆଖି, କ୍ଷୁଣ୍ଣ ଶରୀରକୁ ଦେଖି ବନ୍ଧୁ, ଶିଳ୍ପୀ, ଭକ୍ତ, ଉପାସକ ଅବା ଆଜି-କାଲିକା ପ୍ରେମିକ ହୁଏତ ଭୁଲିଯିବ ପ୍ରେମିକାର ଯୌବନକାଳୀନ ରୂପ, ଦେହକୁ ଏବଂ ଅନ୍ୟ କେଉଁ ସୌନ୍ଦର୍ଯ୍ୟ ଆଡ଼କୁ ମୁହାଁଇବ । ପ୍ରେମ କିନ୍ତୁ ଅଣଲେଉଟା । ତାଙ୍କ ଶବ୍ଦରେ -

"ବୟସର କଳା ଛାଇ ଘେରିଗଲେ ତୁମ ଦେହସାରା / x x x x x / ଜୀବନର ବେଳାଭୂମିରେ ତୁମେ ଥିବ ନିହାତି ଏକାକୀ, / ଫେରିବି ମୁଁ ଯେତେବେଳେ, ତୁମ ପାଶେ ତଥାପି ତଥାପି ।"

ପ୍ରେମ କବିଙ୍କୁ ହସେଇଛି-କନ୍ଦେଇଛି । 'ନାଗସାପ'ର ଇମେଜ୍ ଭିତରେ ସ୍ମୃତିସାଉଁଟା ଚିଠିର ବିଷାକ୍ତ ଦଂଶନକୁ କବି ଅତି ଚମତ୍କାର ଢଙ୍ଗରେ ଲେଖିଛନ୍ତି -

"ପୁରୁଣା ଚିଠିର ଲଡ଼ା, ଆଜି ଆଉ ହେଉ ନାହିଁ ଖୋଲି,
ସତେ ଅବା ନାଗସାପ, ଚେକି ବାନ୍ଧି ପଡ଼ିଛି ଘୁମାଇ ।"
ଶୋଇଥାଉ ନାଗସାପ ଶୋଇଥାଉ ଅତୀତର ସ୍ମୃତି
ଉଠିଲେ ଢାଳିବ ବିଷ, ବେଦନାର ହେବନାହିଁ ଇତି ।"

ମଣିଷ ଜୀବନରେ ସୁଖ-କ୍ଷଣିକ ସମୟ ପାଇଁ ଆସେ ଓ ଯାଏ । କାରଣ, 'ବିରହ-ବେଦନା ସତ୍ୟ, ନିତ୍ୟ ସନାତନ' । କିନ୍ତୁ ମନ ପାଇଁ ମନର ଆଦେହ ମିଳନ ବିରହିତ ଦୂରତାକୁ ପ୍ରଭାବିତ କରିପାରେନି । "ଦେହର ସୀମିତତାକୁ ଏଡ଼େଇ

ଯେଉଁମାନେ ସ୍ରଷ୍ଟାର ବିଦେହୀସତ୍ତାର ଅନୁଭୂତି ସହିତ ଏକାତ୍ମ ହୋଇପାରିବେ, ସେମାନେ ହିଁ କେବଳ କବିତାର ରହସ୍ୟ ଉଦ୍‌ଘାଟନରେ ସମର୍ଥ, ନଚେତ୍ ସମସ୍ତ ପରିଶ୍ରମ ଏକ ବିଡ଼ମ୍ବନା" ।(୧୦) କବି ବିଭୁଦତ୍ତ ଦେହ ଅପେକ୍ଷା ବିଦେହୀ ସତ୍ତାରେ ବିଶ୍ୱାସୀ । ସେ ପରଜନ୍ମରେ ବିଶ୍ୱାସୀ । ଏ ଜନ୍ମର ସମସ୍ତ ସ୍ୱର୍ଣକାତରତା ନିଶ୍ଚିତ ପରଜନ୍ମରେ ଚରିତାର୍ଥ ହେବ ବୋଲି ବିଶ୍ୱାସୀ ।

ଯାହାକୁ କବି ଜୀବନଠୁ ବଳି ଭଲପାଇଛି, ତାକୁ ପୁଣି ଭୁଲିଯିବାର ପ୍ରୟାସ ମଧ କରୁଛି । ଏହି ଭୁଲିବାର ଚେଷ୍ଟା ଭିତରେ ଅଜସ୍ର ଯନ୍ତ୍ରଣାକୁ ଆଦରି ନେଉଛି ।

"ଭଲପାଇ ଯା'କୁ ଭୁଲିଲି ବେଦନା ଶତ
ତାକୁ ଭୁଲିବାକୁ ଖୋଜୁଛି ଆଜି ମୁଁ ପଥ ।"

ପୁଣି ଅମାନିଆ ମନର ଅନୁନୟପୂର୍ଣ୍ଣ ଅନୁରୋଧ - "ଆଜି ଚାଲ ଫେରିଯିବା ଅତୀତକୁ ବହୁ ଦୂରେ ଅନେକ ପଛକୁ, ଯେଉଁଠାରେ ପ୍ରଜାପତି ଉଡ଼ିବୁଲେ, ଇନ୍ଦ୍ରଧନୁ ବିଂଚିଦିଏ ରଙ୍ଗ, ଅତୀତ ଅଭୁଲନୀୟ । ବେଳେବେଳେ କବିପ୍ରାଣ ଅତୀତକୁ ହାତପାଆନ୍ତାରେ ଆଉଥରେ ପାଇବାକୁ ଚେଷ୍ଟା କରିଛି । କିନ୍ତୁ; ଅତୀତକୁ କେହି କ'ଣ ଫେରିପାରେ ? "ଇଚ୍ଛା ସିନା ଜାଗେ ମନେ, ସତେ କ'ଣ ଫେରି ଆଉ ହେବ ? ଆଗକୁ ଚାଲିବା ସିନା, ପଛ କଥା ମନେପଡୁଥିବ ।"

ରୋମାଣ୍ଟିକ କବିମାନସ ନିର୍ବାଣ ଆଶାୟୀ ନୁହେଁ । ସେ ରୂପ ପିପାସୁ । ନିର୍ବାଣ ମୋକ୍ଷ-ଅମରତ୍ୱ ଅପେକ୍ଷା ସଂସାର କାରାରେ ଲକ୍ଷେବାର ଜନ୍ମ ହୋଇ ନର୍କଦଣ୍ଡ ଭୋଗିବାପାଇଁ ପ୍ରସ୍ତୁତ । ପ୍ରେମିକାର ରୂପ, ଶୋଭା, ଶିରୀ, ଯଶ, ଗୌରବ ଗାନ ସହିତ କୋଟି-କୋଟି କାବ୍ୟ ରଚନାର ଇଚ୍ଛା । ଧରିତ୍ରୀର ମାୟା-ମୋହକୁ ଏଡ଼େଇ ନିରବ ଏବଂ ନିଭୃତରେ ଯୋଗୀସମ ପ୍ରେମିକାର ପ୍ରେମକୁ ପାଇବା ନିମନ୍ତେ ସାଧନା କରିବାର ଇଚ୍ଛା । କବିଙ୍କ ମର୍ତ୍ତ୍ୟର ମାନବୀ-ପ୍ରେମିକା ସ୍ୱର୍ଗର-ସୁଷମା ବିମଣ୍ଡିତା । ଯଦିଚ ସେ ସାଧାରଣ ତଥାପି ଯେହେତୁ କବିଙ୍କର ସେ ପ୍ରିୟତମ, ସେଥିହେତୁ ସେ ମହାନ୍ ଓ ଅସାଧାରଣା । ସମସ୍ତ ନୀତି-ଶାସ୍ତ୍ର, ସ୍ୱର୍ଗ-ସୁଖ, ନର୍କର ଦାହର ଉର୍ଦ୍ଧ୍ୱରେ କବି ତାଙ୍କ ପ୍ରେମିକା ପାଇଁ ପୂର୍ଣ୍ଣ-ସମର୍ପିତ । ପ୍ରତି ଅବସାଦ, ଅପମାନ, ଝଞ୍ଜା, ବତାସ, ଲାଞ୍ଛନା, ଆଘାତ, ଯନ୍ତ୍ରଣା, ଜ୍ୱାଳା, ଗ୍ଲାନି, ପରାଜୟ, ଅଭାବ ଏବଂ ଆପଦର ବହୁ ଉର୍ଦ୍ଧ୍ୱରେ କବିଙ୍କ ଐଶୀ ଲେଖନୀ ସାଧାରଣକୁ ଅସାଧାରଣ ଏବଂ ଆପଣାର ରୂପକୁ ହରାଇଥିଲେ ହେଁ ସେ ନିଜେ ଜଳୁଛି କିନ୍ତୁ ପ୍ରେମାଗ୍ନିର ପ୍ରଶସ୍ତିଗାନ କରିଛି । ସେ

ଯନ୍ତ୍ରଣାରେ ଯେତିକି ଦଗ୍ଧ ହୋଇଛି, ତାଙ୍କ ସୃଷ୍ଟିରେ ସେତିକି ମଧୁର ଝଙ୍କାର ଝଙ୍କୃତ ହୋଇଚାଲିଛି ।

ପ୍ରେମିକାର ଅଧର ମଧୁ, କୋଇଲିର ପୁଲକଭରା କୁହୁ, ରାଶି ରାଶି ପୁଷ୍ପମାନଙ୍କର ରୂପ, ରଙ୍ଗ, ମଧୁ ଓ ସୌରଭ, ନବୋଦିତ ଉଷାର ଗରିମାକୁ କବି ଅନୁଭବ କରିଛନ୍ତି । କବିଙ୍କ ପ୍ରେମିକା-ରୂପସୀ । ତାଙ୍କ ଭିତରେ ଜଗତର ସକଳ ଶୋଭା ଠୁଳ । ତା'ର ଅଧର ସୂର୍ଯ୍ୟ, ନୀଳକଇଁର ନୟନ, ପଦ୍ମକଳି ପରି ବକ୍ଷ, କଜଳ-କଳା କବରୀ, ମୁକ୍ତା ହସ, ସୁଧାତୁଲ୍ୟ ବଚନ, ଶିରୀଷ କୋମଳ ଶରୀର, ମଦିରାତୁଲ୍ୟ ସୌନ୍ଦର୍ଯ୍ୟ କବିଙ୍କୁ ବିମୁଗ୍ଧ କରିଛି । କବି ବିଭୁଦତ୍ତଙ୍କ ଏତାଦୃଶ ନାୟିକା ବର୍ଣ୍ଣନା ମଧ୍ୟଯୁଗୀୟ କବିର ନାୟିକାର ରୂପଚର୍ଯ୍ୟା ବର୍ଣ୍ଣନା କ୍ଷେତ୍ରରେ କିଛି କମ୍ ନୁହେଁ । ଆଧୁନିକ ଯୁଗର ରୋମାଣ୍ଟିକ୍ କବିମାନଙ୍କ ମଧରେ ବିଭୁଦତ୍ତଙ୍କ ସୌନ୍ଦର୍ଯ୍ୟବାଦୀ ଦୃଷ୍ଟିକୋଣ ବୋଧହୁଏ ଅନ୍ୟାନ୍ୟ କବିମାନଙ୍କ ତୁଳନାରେ ଯଥେଷ୍ଟ ସମୁଚ୍ଚ ଓ ବଳିଷ୍ଠ ମନେହୁଏ ।

କବିଙ୍କ ପ୍ରେମିକା ତଥାକଥିତ ଛଳନାପୂର୍ଣ୍ଣ ଜଗତରେ ଏକମାତ୍ର ବିଶ୍ୱସ୍ତ । ତାଙ୍କ ଜୀବନ ପଥରେ ବହୁ ନିରାଶା ତିମିର ମଧ୍ୟରେ ସେ ଆଲୋକର ବର୍ତ୍ତିକା । ପ୍ରେମିକାର ଉପସ୍ଥିତିରେ କବି ନିଜକୁ ମହାରାଜାଧିରାଜ ମନେ କରିଛନ୍ତି । ଦୀନ-ଦରିଦ୍ର କବିଟିଏ ପ୍ରେମିକାର ସଂସ୍ପର୍ଶରେ ଆସି ନିଜକୁ ତୁଙ୍ଗ ଶିଖରରେ ବସିଥିବାର ଅନୁଭବ କରିଛି । ନିମିଷକ ବିଚ୍ଛେଦରେ କବି ପ୍ରାଣ କିପରି ଆତୁର ହୋଇ ଉଠିଛି -

"ପାଖେ ଥାଇ ତୁମେ ଏବେ ଭାବ ସିନା ପର,
ଦୂରେ ଗଲେ ଜାଣିବ ମୁଁ କେତେ ଆପଣାର ।"

ପ୍ରେମର ସଫଳତା ଅପ୍ରାପ୍ତିରେ; ପାଇ-ହରେଇ ଦେବାରେ । ତେଣୁ କବିଙ୍କ ନାୟିକା ହୁଏତ ଖାଲି ମଥାରେ ଓଢ଼ଣା ଦେଇ ସୀମନ୍ତରେ ସିନ୍ଦୁର ଲଗାଇପାରେ, କାହାର କୁଳବଧୂ, ମାତା, ଗୃହିଣୀ ସାଜି ଜୀବନ ଜଞ୍ଜାଳ ଭିତରେ ସଂସାରର କ୍ଷୟ କ୍ଷତି, ହାନି ଲାଭ ବୁଝିପାରେ କିନ୍ତୁ ଭାଗ୍ୟହୀନ କବି ତା'ର ପ୍ରେମିକା ନିକଟରେ କୌଣସି ଦାବୀ କରିବନି । କବି ବିଭୁଦତ୍ତଙ୍କ କବିତାରେ ମାନସିଂହଙ୍କ ପ୍ରେମର ସ୍ପର୍ଶ ବେଶ୍ ହୃଦ୍ୟ । 'ଧୂପ'ର ଶେଷକବିତା 'ପ୍ରେମ ଓ ମୃତ୍ୟୁ'ରେ ମାନସିଂହଙ୍କ ଭାବବିହ୍ୱଳ ଶବ୍ଦ -

"ଶୁଣିବ ଯେବେ ପ୍ରିୟା ଗୋ ମୋର / ପ୍ରଣୟୀ ତବ ଜଗତେ ନାହିଁ, / ଆସିବ

ମୋର ଭସ୍ମ ପାଶେ, / ଦେବ ହେ ତାରେ ଦେହର ଛାଇ ।"

କବି ବିଭୁଦତ୍ତ ମଧ୍ୟ ଅନୁରୂପ ଭାବରେ ଲେଖିଛନ୍ତି -

"ଶୁଣିବ ଯେବେ ଆଉ ଏ କବି ନାହିଁ / ଆଜିର ସ୍ମୃତି ସ୍ମରିବ କ୍ଷଣପାଇଁ ।"

କବିଙ୍କ ଭଲପାଇବା ଅତି ନିଆରା । ଏ ରୁକ୍ଷମାଟିର ମୋହ କେବଳ ତାଙ୍କ ପ୍ରେମିକାକୁ ନେଇ । ଏ ରୁକ୍ଷଧରା ମଧୁରତର ହୋଇଛି, ଏ ଆକାଶ-ମାଟିର ସକଳ ଶୋଭାକୁ ପ୍ରେମିକାର କାଉଁରୀ ଛୁଆଁ ସ୍ୱପ୍ନରେ ଭରିଛି । କବିଙ୍କର ଆହୁରି କହିବାର ଇଚ୍ଛା, ଏ ସଂସାରରୁ ବିଦାୟ ନେବାକୁ ଆଦୌ ଇଚ୍ଛା ନାହିଁ । କାରଣ ପଛରେ ପ୍ରେମିକାର କଜଳ କଳା ଦୁଇ ଆଖିର ମାୟା, ଓଠର ବନ୍ଧନ, ତା'ର ସ୍ନେହ, ଅନୁରାଗ, ମମତା, ମଧୁ ଆକର୍ଷଣ ହୋଇ ପାଦ ଛନ୍ଦୁଛି, ଦୂରକୁ ଯିବାକୁ ଦେଉନି ।

'ଶହେଟି ସନେଟ୍' ସଂକଳନରେ ବିରୋଧାଭାସର ପରିଧି ଭିତରେ କବିଙ୍କ ପ୍ରେମ କେବେ ପ୍ରେମିକାକୁ ଝୁରି ମରୁଛି ତ କେବେ ନିରବରେ ପଳାୟନପନ୍ଥୀ ହୋଇଯିବାକୁ ଚାହୁଁଛି । ପ୍ରେମିକାକୁ ଅପଦସ୍ତ ନକରିବାକୁ କବିର ଏ ପଦକ୍ଷେପ । ତେଣୁ ସେ ନିରବିତ ରାତିରେ ଯେବେ ଭସା ବଉଦର ପଣତ ଭିତରେ ଜହ୍ନ ଆଲୁଅ ବିଚ୍ଛୁରିତ ହୋଇଥିବ, ତାରାସବୁ ମିଞ୍ଜିମିଞ୍ଜି ହେଉଥିବେ, ସେତିକିବେଳେ ଚିହ୍ନା ଆମ୍ବଗଛ, କୋଠାବାଡ଼ି, ଅଧାତୋଳା ଇଟା କାନ୍ଥ, ଶୁଖିଲା ପୋଖରୀ, ଛୋଟିଆ ଦେଉଳ ଆଦି ଅଧାଗଢ଼ା ସ୍ମୃତିର ଇଲାକା ଛାଡ଼ି କବି ବାହାରୁଛନ୍ତି ନିରୁଦ୍ଦିଷ୍ଟ ହୋଇଯିବାପାଇଁ କାରଣ, ପ୍ରେମ ସାକାର ହେବା ପୂର୍ବରୁ ଏବଂ ଫୁଲ ଫୁଟିବା ପୂର୍ବରୁ ଝରିପଡ଼ିଛି । ନିରବ ସଂଧ୍ୟା, ନିଛାଟିଆ ମୁହୂର୍ତ୍ତ, ଶରତ ସକାଳ, ଫଗୁଣ ସଂଜ, ଚଇତାଳି ରାତି, ବର୍ଷାର ମଧୁ-ଅଭିସାରର ଇମେଜ ତୋଳିବା ଭିତରେ କବିଙ୍କ ନିଃସଙ୍ଗତା ମୁଣ୍ଡ ପିଟିଛି । କବିଙ୍କ ଶବ୍ଦରେ....

"ମୋ ଦୁଃଖର ମୋ କର୍ମର ଗୁରୁଭାର ବହି
ମୁଁ ଏକ ସୁଦୂର ଯାତ୍ରୀ, ନୀରବରେ ଯିବି ବହୁ ଦୂର ।"

ଭଲପାଇଲେ ଜଳିବାକୁ ହୁଏ, ଆଘାତ ସହି, ଆଖିପତାକୁ ଲୋତକରେ ଧୋଇ, ଯନ୍ତ୍ରଣାରେ ଜଳି-ପୋଡ଼ି, ମନକୁ ଛାରଖାର କରି ବଞ୍ଚିବାକୁ ହୁଏ । ପ୍ରେମର ଜ୍ୱାଳା ଭିତରେ କବି ମୃତ୍ୟୁକୁ ଆହ୍ୱାନ କରିଛି । ଜୀବନ ସଉଦା ସରିଲା ପରେ ସବୁଦିନ ପାଇଁ ମେଲାଣି ମାଗିଛି ।" ମରଣ ହେ ତବ ପଦତଳେ ଦିଅ ଶରଣ" ବୋଲି ନିବେଦନ କରୁଛି । ପ୍ରେମ, ମୃତ୍ୟୁ, ସ୍ମୃତିର ବଳୟ ଭିତରେ କବି ଭିନ୍ନ ଭିନ୍ନ ଅବସ୍ଥାକୁ

ଅନୁଭବିଛି ।

"ଶ୍ରବଣେ ନୟନେ ପ୍ରାଣେ ଜୀବନ ପ୍ରବାହେ
ସ୍ମୃତି ତବ ଭାସିଉଠେ, ସ୍ୱର୍ଣ୍ଣ-ସମାରୋହେ ।"

କବିଙ୍କ ଶବ୍ଦରେ- "ପ୍ରଣୟ ତୁଟିଲେ କବିତାର ଧାରା ଛୁଟେନା", ପୁଣି "ତୁମେ ଗଲା ଦିନୁଁ ନୀରବ ରହିଛି ବୀଣା", ଆଦିରେ କବିଙ୍କ ଯନ୍ତ୍ରଣାର ସ୍ୱର ସ୍ପଷ୍ଟ । ମୋହାଚ୍ଛନ୍ନ କବିପ୍ରାଣର ଉଚ୍ଛ୍ୱାସ-ରୋମାଣ୍ଟିକ୍ ଏଗୋଟି କି ସୁନ୍ଦର!

"ହୃଦୟର କେଉଁ କୋଣେ
ତୁମ ଲାଗି ଜାଗେ ପୁରୁଣା ମୋହ ।"

କବିଙ୍କ ପାଇଁ "ଅତୀତ ମୋ ଚିର-ସୁନ୍ଦର-ଚିର-ମଧୁର" । କବିଙ୍କ ପାଇଁ ପ୍ରେମିକା ଶ୍ରୀରାଧା ଭଳି ସହନଶୀଳା କିନ୍ତୁ ନିନ୍ଦିତା-

"ଆପଦେ-ବିପଦେ, ଅଭାବ-ଓପାସେ ସଦା / ପାଶେ ମୋର ଠିଆ ଲୋକ-ନିନ୍ଦିତାରାଧା! / ରହିବ ମନେ ଆଜିର ସ୍ମୃତି, ଅଶ୍ରୁମଖା!"

ଅଶ୍ରୁମଖା ସ୍ମୃତିକୁ ନେଇ ଛଟପଟ କବିଙ୍କ ବିରହ-ବିଧୁର ଆତ୍ମା ଅହରହ ଭାବପ୍ରବଣ ହୋଇ କହିଉଠିଛି -

"ତୋ ଦେହ ସବୁଜ କ୍ଷେତେ ମୋ ମନର ସ୍ୱର୍ଣ୍ଣ କୃଷ୍ଣସାର
ଭୁଲିଲା ଜୀବନ ସ୍ମୃତି ପଥଭ୍ରଷ୍ଟ ହେଲା ବାରବାର ।"

ବିଭୁଦତ୍ତଙ୍କ ଉପରେ ପୂର୍ବ ସବୁଜବାଦୀ କବିମାନଙ୍କର ପ୍ରଭାବ ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଅନୁଭବ ହୁଏ । ସବୁଜ ଚେତନାର ବଳୟ ଭିତରେ ପ୍ରେମିକାର ଦେହ କବି ପାଇଁ ସବୁଜ କ୍ଷେତ ଭଳି ସତେଜ । ଯୁବାବସ୍ଥାରେ ଆକର୍ଷଣୀୟ ଏବଂ ସେ ନିଜେ ସ୍ୱର୍ଣ୍ଣକୃଷ୍ଣସାର ବୋଲି ଅତି ସୁନ୍ଦର ଇମେଜ୍ ତୋଳିଛି । ଜୀବନର ସ୍ମୃତି କବିଙ୍କୁ ଗତିଶୀଳ ହେବାକୁ ପ୍ରେରଣା ଦେଉଛି । ମଧୁସ୍ମୃତି ଭିତରେ ମୁକ୍ତାଭଳି ଝଟକିଛି ଉଭୟଙ୍କ ପ୍ରେମ । ପ୍ରେମିକାର ଅସଂଖ୍ୟ ପ୍ରୀତିପୂର୍ଣ୍ଣ-ସ୍ନେହ-ମଧୁଭରା ପତ୍ର ଭିତରେ କବି ହୃଦୟ ଆବେଗାପ୍ଲୁତ । "ଏଇ ଦେହ ଶେଷେ, ଅଦେହରେ ଆମେ ମିଶିବା ବୋଲି କେବେ ପ୍ରତିଶ୍ରୁତିବଦ୍ଧ ତ ପୁଣି କେବେ -

"ପୁନର୍ଜନ୍ମ ସତ ଯଦି, ତାହା ହେଲେ ଆର ଜନମରେ
ପୁଣି ଆମ ଭେଟ ହେବ, ଅନାଗତ ଫାଲ୍‌ଗୁନ ସକାଳେ ।"

କବିଙ୍କ ଜୀବନରେ ବେସୁରା ରାଗିଣୀର ଛନ୍ଦ, ବିଦାୟକାଳୀନ ଦେହାନ୍ତ

ସମୟର ଅନୁଭବକୁ ନେଇ କବିଙ୍କର କି ସୁନ୍ଦର ଶବ୍ଦବିମ୍ବ -

"ତୁମେ ଦିନେ ଲିଭିଯିବ କାଠଖୁଣ୍ଟ ଭୁଶୁଡ଼ି ପଡ଼ିବ / ଏ ଦେହର ଉତ୍ତେଜନା, ଉନ୍ମାଦନା ସବୁ ଯିବ ସରି, / ତୁମେ ଅନ୍ଧକାରେ ଜୀର୍ଣ୍ଣ ହେବ, ମହାକାଳ ଚାଟିଦେବ ମୋତେ / ତଥାପି ମୁହୂର୍ତ୍ତେ ହେଲେ କିଏ ଏଠି ଠିଆ ହେବ ଫେରି ।"

'ବିସ୍ମୃତିର ସ୍ମୃତି' - କବିତା ସଂକଳନ କବିଙ୍କ ଅପାସୋରା ସ୍ମୃତିର ଆଳୟ । ଜୀବନକୁ ଏକ ବତୀଖୁଣ୍ଟ ମନେ କରିଛନ୍ତି ସେ, ଯେଉଁଠି ଦିନେ ସର୍ବଗ୍ରାସୀ ମହାକାଳ ନିଃଶେଷ କରିନେବ ସବୁକିଛି । 'ବିସ୍ମୃତିର ଚିତ୍ର' ସଂକଳନସ୍ଥ 'ବସନ୍ତ' କବିତାରେ କବି ବିଭୁଦତ୍ତ ଅତି ଚମତ୍କାର ଢଙ୍ଗରେ ନୂତନ ଇମେଜ୍ ପ୍ରୟୋଗ ପୂର୍ବକ ଅଭିନବ ଢଙ୍ଗରେ କହିଛନ୍ତି -

"ବସନ୍ତ ଆସୁଛି କେବେ ? / ଦ୍ୱାରେ ଦ୍ୱାରେ କୁଟୀରୁ କୁଟୀରେ / କଳ, କାରଖାନା କୋଠା ନୂଆଁଣିଆ ଭଙ୍ଗା ମାଟିଘରେ / ପାଗଳ-ଗାରଦ ଆଉ ଜେଲ୍‌ଖାନା ନୂଆ-ରାଜଧାନୀ / ସବୁତ ପ୍ରଚୁର ସ୍ୱପ୍ନ, ଜୋସ୍ନା-ସ୍ନାତ-ମଧୁର-ଯାମିନୀ" ।

ଭାବପ୍ରବଣତାର ସବୁଜ ବେଷ୍ଟନୀରୁ କ୍ରମେ ବାସ୍ତବବାଦୀ-ପ୍ରଗତିଶୀଳ ଆଭିମୁଖ୍ୟକୁ ନିଜ ମାନସିକତାରେ ସାମିଲ୍ କରି କବି କ୍ରମେ  ବାସ୍ତବତାକୁ କରିନେଇଥିଲେହେଁ, ସେଇ ସ୍ୱପ୍ନବିଭୋର ଆବେଗ ପ୍ରତି ମୁହୂର୍ତ୍ତରେ ତାଙ୍କୁ ଆବୋରି ବସିଛି । କବିଙ୍କ ପାଇଁ କୃଷ୍ଣଚୂଡ଼ାର ବର୍ଣ୍ଣିଳ ଶାଢ଼ୀ ପିନ୍ଧି ଆସିଛି ବସନ୍ତ । କବି ବିଭୁଦତ୍ତଙ୍କ କବିତାରେ Yeats ଙ୍କ ପରି "Emotional Symbole" ର ବ୍ୟବହାର କରିଛନ୍ତି । କବିଙ୍କ ପାଇଁ ପ୍ରେମିକା, ଶୀତଳ ଝରଣା, ଗୋଲାପର ସୁରଭି, ଶରତର ନୀଳକଇଁ, ଫଗୁଣର କମଳ, ଢଳଢଳ ମଦିରା, ଆଦ୍ୟ ଅଭିମାନ, ଶେଷ କବିତା ଭଳି ଅର୍ଥପୂର୍ଣ୍ଣ ଶବ୍ଦ ବ୍ୟବହାର କରିଛନ୍ତି ।

କବିତାର ଶବ୍ଦ ଭିତରେ ନିଗିଡ଼ା ପ୍ରେମର ଅକପଟ ସମର୍ପଣ ପ୍ରତ୍ୟେକ ପାଠକ ଯେଉଁମାନେ 'ପ୍ରେମ'ର ସଂଜ୍ଞାକୁ ଅନୁଭବି ଥିବେ ବିଭୁଦତ୍ତଙ୍କ କବିତାର ଅନାମୟ ପରିଧି ଭିତରେ ଯେ ନିମଜ୍ଜିତ ହୋଇଯିବେ ଏଥିରେ ସନ୍ଦେହ ନାହିଁ । ନିଷ୍କପଟ ଶବ୍ଦ ସଂଯୋଜନା, ଦେଇ ଶବ୍ଦ ସବୁ ଭାବଭିଜା, ପ୍ରେମାପ୍ଲୁତ, ମାନ-ଅଭିମାନ, ପ୍ରତୀକ୍ଷା ନିଃସଙ୍ଗତା ବ୍ୟାକୁଳତାର ଦୁର୍ବାର ହାସ୍ୟ ଭିତରେ ବ୍ୟଥାତୁର ! ମୂର୍ତ୍ତିରୂପୀ ବୈଶାଖି କବିଙ୍କୁ ଜାଳିଛି । ବସନ୍ତର ଆଗମନରେ ତାଙ୍କର କିଛି ଯାଏ ଆସେ ନାହିଁ, କାରଣ ସେତେବେଳକୁ- "ମୁଁ ତ ପାଲଟିଛି ଯୋଗୀ, ସେଥିରେ ମୋ'କି ବା ଯାଏ ଆସେ"ର

ଅଭିମାନ ଉତ୍କୀର୍ଣ୍ଣ ।

ପ୍ରତୀକ୍ଷାର ପ୍ରହର ସବୁ କବି ପାଇଁ ମର୍ମନ୍ତୁଦ । କବିପ୍ରାଣ ସନ୍ତପ୍ତ । ଅତି ଚମତ୍କାର ଶବ୍ଦବିନ୍ୟାସ ମାଧ୍ୟମରେ ନିଜ ନିଃସଙ୍ଗ-ଅବସାଦବୋଧକୁ ବର୍ଣ୍ଣନା କରିଛନ୍ତି ।

"ମୁଁ ବି ଫେରିଯାଏ / ଯେତେବେଳେ ପ୍ରଜାପତି / ଫୁଲଠୁଁ ବିଦାୟ ନିଏ / ଦିବସର ଅଭିସାର ଶେଷେ / ଧରିତ୍ରୀ ଆକୁଳେ ଚାହେଁ ଉପରର ଚିତ୍ରିତ ଆକାଶେ ।"

କବିଙ୍କ ପାଇଁ 'ଅତୀତ' - ଛାୟାଘେରା ଶୀତଳ ସାୟାହ୍ନ ଭଳି, ତାଙ୍କର ବ୍ୟଥାଟି କପୋତ ପରି, ବ୍ୟଥା-ବେଦନା ପ୍ରେମ ନିବେଦନ ସ୍ମୃତି ସମାଧି ପାଖର ପ୍ରଦୀପ ଭଳି, ପ୍ରେମିକାର ଦେଖା ନପାଇ ବାରମ୍ବାର ଫେରିଆସିବା ଶରାହତ ପକ୍ଷୀପରି । କବିଙ୍କୁ ଏ ପୃଥିବୀ ଈର୍ଷା, ଅସୂୟା, ସ୍ୱାର୍ଥପରତା, ଅକୃତଜ୍ଞତା, ପ୍ରତାରଣା, ଯନ୍ତ୍ରଣାଦଗ୍ଧ ଛଳନା, ଶଠତା, କୃତଘ୍ନତାରେ ଚିତ୍ରିତ ମନେହୁଏ । ତାଙ୍କ ମତରେ 'ଶତ ସ୍ମୃତି ଅତୀତର ଶେଷନାହିଁ ଯା'ର ମୃତ୍ୟୁ ନାହିଁ । କବି ନିଜ ସ୍ମୃତିଠାରୁ ନିଜକୁ ଯେତେ ଦୂରେଇଲେ ମଧ୍ୟ ପୁଣି ଫେରିବାର ନିଶାରେ ବିଭୋର । ତେଣୁ ସେ କହିଉଠିଛନ୍ତି- "ମୁଁ ପୁଣି ଫେରିବି ଉତ୍ତାଳ ଚୈତାଳି ଯେବେ ତୋଳୁଥିବ ଅକୁହାପୂରବୀ, ବସନ୍ତର ବକୁଳ ବିଥିରେ ଫାଲ୍‌ଗୁନର ଅଭିଯାନ ପାଇଁ ଆୟୋଜନ ଚାଲିଥିବ କୁସମ ରଥର ।"

ଅତଧିକ ଭଲପାଇବାରେ ଅଭିମାନ-ଅବିଶ୍ୱାସ, କ୍ଷୋଭ, ଅସୁରକ୍ଷିତ ମନୋଭାବ ସୃଷ୍ଟିହେବା ସ୍ୱାଭାବିକ । କବି ବିଭୁଦତ୍ତଙ୍କ ଆସକ୍ତି ରୂପଜ, ଦେହଜ । ତେଣୁ ବେଳ ଅବେଳରେ ପ୍ରେମିକାକୁ ନେଇ ତାଙ୍କ ମନରେ କ୍ଷୋଭ ଜନ୍ମିଛି ।

"ତୁମେ କେବେ ପତ୍ନୀ ହୁଅ, କେବେ ପ୍ରିୟା, ପ୍ରତାରିକା କେବେ
ତୁମରି ଛାତିରେ ଦୁଇ ବିଷ ଆଉ ବ୍ୟଥାର ପାହାଡ଼ ।"

ଏଇଠି ବୋଦଲେୟାରଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ- Everything cracks both love and beauty. ସମୟ ପ୍ରଭାବରେ ପ୍ରେମ ଓ ସୌନ୍ଦର୍ଯ୍ୟ କ୍ଷୟମାଣ । ତଥାପି ପ୍ରେମ ପାଇଁ କବି ଅପବାଦ ସହ୍ୟକରିବାକୁ, ନର୍କ ଭୋଗିବାକୁ ମଧ୍ୟ ପ୍ରସ୍ତୁତ । "ସ୍ୱର୍ଗେ ମୋର ଲୋଭ ନାହିଁ, ନର୍କ ଲୋକେ ଥାନ ଟିକେ ଥାଉ ।" ସମାଜର ମିଥ୍ୟା ଆଡ଼ମ୍ବରିତାକୁ ନେଇ କବି କ୍ଷୁବ୍ଧ । ପୁରାଣ, ଶାସ୍ତ୍ର, ଆଇନ୍-କାନୁନ୍, ନୀତି-ନିୟମ, ସବୁ ତୁଚ୍ଛ । ସବୁରି ଉର୍ଦ୍ଧ୍ୱରେ ମାନବ ସତ୍ୟ । ସମାଜର ଅନ୍ୟାୟ-ଅନୀତି ପ୍ରତି କବିଙ୍କ ବିଦ୍ରୂପର ସ୍ୱର ଅନୁରଣିତ ହେଉଛି-

"ଜୀବନକୁ ଯିଏ ହତ୍ୟା କଲେ ରେ ଧର୍ମର ନାମେ ନୀତିର ନାମେ,
ସେମାନଙ୍କ ପାଇଁ ସ୍ୱର୍ଗ-ଦୁଆର ରହୁଛି ଖୋଲାରେ ରହିଛି ଖୋଲା ।"

ଦିନ-ତାରିଖ, ତିଥି-ବାର, ବେଳା-ପରୱାନା ନଦେଇ ହଠାତ୍ ଆବୋଡ଼ିବାକୁ ଆସୁଥିବା ଅପରାଜିତ 'ମୃତ୍ୟୁ'କୁ ସୁନ୍ଦର, ଅଭିରାମ, ମଙ୍ଗଳମୟ, ମଧୁମୟ, ପ୍ରିୟତମ, ମୋହନ, ମହାଅଭିସାର ଭାବରେ କବି ବରଣ କରିନେବାକୁ ପ୍ରସ୍ତୁତ ଥାଇ ଆହ୍ୱାନ କରିଛନ୍ତି-

କ୍ଲାନ୍ତ ଜୀବନ ଶେଷେ ମୋ ଶୟନ କେବଳ ତୁମରି କୋଳେ,
ତଥାପି ମରଣ ତୁମରେ ବରଣ କରିବି ପୁଲକ ଭରେ ।"

ଏଥିରେ କବିଙ୍କର କାବ୍ୟିକ କଳ୍ପନା ସହିତ ବାହ୍ୟ ସମସ୍ତ ବିଶୃଙ୍ଖଳା ଓ ଅର୍ଥହୀନତା ଅତ୍ୟନ୍ତ ଅର୍ଥପୂର୍ଣ୍ଣ ହୋଇଉଠିଛି । ୱର୍ଡ଼ସ୍‌ୱର୍ଥଙ୍କ egoistical sublime ପରି କବିଙ୍କ ପାଇଁ 'ମୃତ୍ୟୁ' - ତପସ୍ୟାର ଶିଖା, ଏବଂ କବିର କବିତା ମଧ ।

'ସୁପର୍ଣ୍ଣର ସଂଗୀତ' କବିତା କବିଙ୍କ ସମୁଚ୍ଚ କଳ୍ପନା, ସ୍ୱପ୍ନ ପ୍ରବଣତା ତଥା ସୌନ୍ଦର୍ଯ୍ୟବାଦୀ ଦୃଷ୍ଟିକୋଣର ପରିଚାୟକ ହୋଇଛି । ସୌନ୍ଦର୍ଯ୍ୟବୋଧକୁ ନେଇ କବି ବୋଦ୍‌ଲେୟାରଙ୍କ ଉକ୍ତି- "All forms of beauty contain, like all possible phenomena, something eternal and something transitory-absolute and particular" । 'ସୁପର୍ଣ୍ଣର ସଂଗୀତ'ରେ ଚିରନ୍ତନ ପ୍ରେମ ସହ ସୌନ୍ଦର୍ଯ୍ୟାନୁରାଗର ମିଶ୍ରିତ ସ୍ୱର ଅତ୍ୟନ୍ତ ଭାବପୂର୍ଣ୍ଣ-ଅର୍ଥଦ୍ୟୋତନା ନେଇ ଉଦ୍‌ଭାସିତ ହୋଇଛି । ଏଥିରେ ଅନୁଭବ-ଅନୁଭୂତି, ଆବେଗ, ପ୍ରତିକ୍ରିୟା, ଉଦ୍ଦୀପନାର ସ୍ୱର ମର୍ମରିତ ହୋଇଛି । ଗଦ୍ୟସୁଲଭ କାବ୍ୟଭାଷାର ସ୍ୱଚ୍ଛତା ଭିତରେ ବିଭୁଦତ୍ତଙ୍କ ଶବ୍ଦ ବସାଣ ଶକ୍ତିର ଅନନ୍ୟତା ପାଠକ ଉପଲବ୍ଧ କରିଥାଏ । ବିଶେଷତଃ 'ବିଦାୟ:ବୈଦେହୀ', 'ଦୁଇଟି ଡେଣାର ପକ୍ଷୀ', ନୂତନ ଅଭିସାର କବିତା ଇତ୍ୟାଦି ଗୋଟିଏ ଗୋଟିଏ ଅନନ୍ୟ ସୃଷ୍ଟି । 'ଶୋଚନା ନାହିଁ, ହେ ବନ୍ଧୁ ମିଳାଅ ହାତ' କବିତାରେ କବି ଜୀବନର ବ୍ୟାପକ ଶୂନ୍ୟତାକୁ ଭେଟିଛନ୍ତି । କବି ନିଦାଘର ଜ୍ୱାଳା ଆଉ ନିଷ୍କରୁଣ ନିର୍ମମ-ରୁକ୍ଷତା ସହିତ ରଙ୍ଗହୀନ 'ନିଃସଙ୍ଗ ମଧ୍ୟାହ୍ନ'ର ଚିତ୍ର ଅଙ୍କନ କରିଛନ୍ତି । କ୍ଷତମୟ, କ୍ଷତିମୟ, ସ୍ମୃତିମୟ ଜୀବନାନୁଭୂତି ହିଁ ବିଭୁଦତ୍ତଙ୍କ କାବ୍ୟସାମଗ୍ରୀ । ତା'ରି ଭିତରେ ସୁପର୍ଣ୍ଣର ସଂଗୀତର ବ୍ୟାପ୍ତି ଓ ଦ୍ୟୁତି ଜାଜ୍ୱଲ୍ୟମାନ ହୋଇଛି ଜୀବନବ୍ୟାପୀ ମିଥ୍ୟାରୁ ସତ୍ୟ, ଅନ୍ୟାୟରୁ ନ୍ୟାୟ, ବନ୍ଧନରୁ ମୁକ୍ତି, ଅନ୍ଧାରରୁ ଆଲୋକ, ଭୂମିରୁ

ଭୂମା, ବିଷରୁ ଅମୃତ ଆଡ଼କୁ । ସୁପର୍ଣ୍ଣରୂପୀ ପ୍ରଗଲ୍‌ଭ-ମୁଗ୍ଧ-ଦଗ୍ଧ ଜୀବନବାଦୀ କବି ସୁପର୍ଣ୍ଣର ସଂଗୀତରେ ପ୍ରତି ମଣିଷର ଜୀବନଜିଜ୍ଞାସାର ସ୍ୱରକୁ ଉଚ୍ଚକିତ କରିଛନ୍ତି ।

ସବୁଜଯୁଗୀୟ ପଳାୟନପନ୍ଥୀ ଆବେଗ ଭିତରେ ଏ ଯନ୍ତ୍ରଣା ଜର୍ଜରିତ ବନ୍ଦୀଶାଳା ଏ ପୃଥିବୀଲୋକରୁ ମୁକ୍ତହୋଇ ଦିବ୍ୟଲୋକକୁ ଚାଲିଯିବାର ଉଚ୍ଛ୍ୱାସ ଟିକକ କବିଙ୍କୁ ଘାରିଛି । "ଆଜିକି ସତେ ଅମୀୟପାୟୀ ସୁଦୂର ପଥେ ଯିବରେ ଉଡ଼ି, ଜୀର୍ଣ୍ଣ ଜରାବଦ୍ଧ କାରା ପଛରେ ଯିବଟି ସଢ଼ି ।"

'ନିର୍ବାଣ' କବିତାରେ କବିଙ୍କ ସମସ୍ତ ଇଚ୍ଛା, ଆଶା, ସ୍ୱପ୍ନ, ପ୍ରାପ୍ତ୍ୟାଶା, ଅଭିଯୋଗରେ ପୂର୍ଣ୍ଣଚ୍ଛେଦ ପଡ଼ିଛି । 'ସ୍ୱାଗତ ବିପ୍ଳବ' କବିତାରେ ପ୍ରଗତି ଓ କ୍ରାନ୍ତିର ସ୍ୱର ଝଙ୍କୃତ ହୋଇଛି । ଆଗତ ଭବିତବ୍ୟର ପ୍ରତିଷ୍ଠାକୁ ନେଇ କବି ଆଶା ବାନ୍ଧିଛନ୍ତି । ପୃଥିବୀର ରୋଗ, ଶୋକ, ଅଶ୍ରୁ, ଆଘାତରୁ ମୁକ୍ତ ହୋଇ ସ୍ୱର୍ଗଲୋକକୁ ଏ ଧରାପୃଷ୍ଠକୁ ଓହ୍ଲାଇ ଆଣିବାକୁ ଆହ୍ୱାନ ଦେଇଛନ୍ତି । ଆଗାମୀ ଯୁଗର କଲ୍ୟାଣ କାମନା କରି କବିତାରେ ମଣିଷର ଆଶା-ସମ୍ଭାବନା ଏବଂ ପ୍ରଗତି ଦିଗରେ ନୂତନ କାବ୍ୟ-ପରିଭାଷା ସୃଷ୍ଟି କରିବା ନିମନ୍ତେ ନୂତନ କବିମାନଙ୍କୁ ଆହ୍ୱାନ କରିଛନ୍ତି ।

'ପୁରାଣ' ପ୍ରତିଯୁଗର ମଣିଷକୁ କୌତୂହଳୀ କରେ, ଆକୃଷ୍ଟ କରେ ମଧ୍ୟ । "ଅତୀତ ଓ ଇତିହାସର ମୂଲ୍ୟବୋଧକୁ ଆଦର୍ଶ କରି, ଆଧୁନିକ ଯୁଗ ଯନ୍ତ୍ରଣାର ଅର୍ଥାନ୍ୱେଷଣକୁ ପ୍ରକାଶ କରିବାରେ ପୁରାଣ ବିଶେଷ ଭାବରେ ସହାୟକ ।" (୧୧) W.B. Yeateesଙ୍କ ଦ୍ୱାରା କବିତାରେ ମିଥ୍ ପ୍ରୟୋଗର କୌଶଳ ଆଧୁନିକ ପ୍ରତ୍ୟେକ କବିଙ୍କୁ ପ୍ରଭାବିତ କରିଛି । କବି ବିଭୁଦତ୍ତଙ୍କ 'ହେ ସାରଥି ! ରଥ ରଖ' କବିତାରେ ଏହି 'ପୁରାଣକଳ୍ପଧର୍ମୀ ଚେତନା' ଆଧୁନିକ ଯୁଗର ଅସଂଖ୍ୟ ମୂଲ୍ୟବୋଧ ଉପସ୍ଥାପନର ମାଧମ ସାଜିଛି ।

'ହେ ସାରଥି ରଥ ରଖ'ରେ ବାସ୍ତବତାର ଆହ୍ୱାନ କରି ବୃନ୍ଦାବନ ନୁହେଁ ଜୀବନର କୁରୁକ୍ଷେତ୍ରକୁ ରଥାରୂଢ଼ ସାରଥୀଙ୍କୁ ନେଇଯିବାକୁ କବି ଅନୁନୟ କରିଛନ୍ତି । ବୀଭତ୍ସ ଜୀବନ, ଜୀବନର ଭୟଭୀତ ବଡ଼ଦାଣ୍ଡରେ 'ମନ୍ଦାକିନୀ ଦାସ' ଭଳି ଅସଂଖ୍ୟ ନାରୀ ମିଛ ସ୍ୱପ୍ନ ଦେଖନ୍ତି, ମିଥ୍ୟା ପ୍ରତିଶ୍ରୁତି ଏବଂ ଜୀବନର ନକଲି ସଂଗୀତକୁ ହଜମ କରନ୍ତି । ଜୀବନ ଯୁଦ୍ଧରେ ହାରିଥିବା ଏଲ୍.ଡି.କ୍ଲର୍କ ବିନୋଦ ମହାନ୍ତି, ଯିଏ ସେକ୍ରେଟାରୀଏଟ୍ କୋଠାର କାଗଜ ଓ ଫାଇଲ୍ ଭିତରେ ନିଜ ତେଲ-ଲୁଣ, ଘରଭଡ଼ା, ଲୁଗାପଟା, ଡାଲି-ଚାଉଳର ହିସାବ କରି ହାରିଯାଇଛନ୍ତି ।

ଆଧୁନିକୀ ଆଭିଜାତ୍ୟର ବହୁତାରକା ହୋଟେଲ୍ ଖାଦ୍ୟ, ଅରଣ୍ୟ-ଆଦିମ-ଅଶ୍ଳୀଳ ସଂଗୀତ, ନୃତ୍ୟ ବିଦେଶୀ ପୋଷାକ ପରିଧାନ, ଉଚ୍ଛୃଙ୍ଖଳ ଜୀବନଚର୍ଯ୍ୟା, ଉଲଗ୍ନ ଯୌବନ, ବୈଜ୍ଞାନିକ ଉଦ୍ଭାବନରେ ଭୋଗ-ବିଳାସ-ପ୍ରାଚୁର୍ଯ୍ୟର ବିଫଳତା ମାତ୍ର ।

ବେକାରୀ ସମସ୍ୟାର ସାମ୍ନା କରିଥିବା ରାମଦାସ "ନିତିଦିନ ଭୋକ ଉପାସରେ ଜଳି-ଜଳି ମରିବାଠୁ ଶତଗୁଣ ମୃତ୍ୟୁ ଭଲ ବୋଲି" ଯୁକ୍ତି ବାଢ଼ିଛି । ଯେ ନିଜ ହାତରେ ନିଜ କ୍ଷୁଧାତୁର ସନ୍ତାନଙ୍କୁ ପିଟିପିଟି ମାରିଛି । ଆଜିର ସଭ୍ୟତା ମଣିଷ ସମାଜ ଏବଂ ବିଜ୍ଞାନୀମାନଙ୍କୁ 'ରାମଦାସ' ଚରିତ୍ରଟି ଶାଣିତ ବ୍ୟଙ୍ଗ କରିଛି ।

ସମାଜର ନଗ୍ନ ଚିତ୍ର ତଥା ନୀତି ବିରୋଧୀ-ମାନସିକତାର ଚିତ୍ର ଉତ୍ତୋଳନ କରିବାରେ ବିଭୁଦତ୍ତଙ୍କ 'ହେ ସାରଥି ରଥ ରଖ' କବିତା ସଂକଳନ ଏକ ଯୁଗାନ୍ତକାରୀ ସୃଷ୍ଟି କହିଲେ ଭୁଲ୍ ହେବନାହିଁ । ଏ ସଂକଳନ ଆଧୁନିକୀ-ଶିକ୍ଷିତା ନାରୀକର୍ମୀଙ୍କ ଉଚ୍ଛୃଙ୍ଖଳ ଜୀବନଚର୍ଯ୍ୟା, ଜନ୍ମ-ନିୟନ୍ତ୍ରଣର ବିଜ୍ଞାପନ, ଅନାବଶ୍ୟକ ବିବାହ, ଭ୍ରୁଣହତ୍ୟା, ନାରୀତ୍ୱର ଶ୍ରାଦ୍ଧ, ପୌରୁଷହୀନ ପୁରୁଷ, ଦେହଜ କ୍ଷୁଧା, ଜନ୍ମରୋଧ ବିଲ୍; ସ୍ୱାଧୀନ-ଜୀବନ, ପାପଗର୍ଭ, ଭୟ-ଗ୍ଳାନିହୀନ ମଣିଷର ଅଜଗର ଭଳି ମନର କୁତ୍ସିତ-ପାପ-ବ୍ୟଭିଚାରର ଏକ ଦଲିଲ୍ ।" ଆଲୋଚ୍ୟ କବିତା ସଂକଳନରେ ସତ କହିବା ମନା, ତୋଷାମଦି, ପ୍ରମୋଶନ ପାଇଁ ପ୍ରଭୁଭକ୍ତି ସହିତ ଶ୍ୱାନପରି ଗୋଡ଼ାଣିଆ ମନୋଭାବ, 'ପ୍ରମୋଶନ' ପାଇଁ ସ୍ତ୍ରୀ-ଝିଅ-ଭଉଣୀକୁ ଅନ୍ୟ ହାତରେ ସମର୍ପି ଦେବାର ନୀତିଭ୍ରଷ୍ଟ ଚେତନା, କବିର ଅନାହାର ମୃତ୍ୟୁ, କବିର ଦୁଃଖ-ଦୈନ୍ୟ ଜୀବଦ୍ଦଶା, ପ୍ରକାଶକର ପ୍ରସାଦ ନିର୍ମାଣ, ଜାଲ୍-ଜୁଆଖୋରୀ, ହାତଗୁଞ୍ଜା ଭିତିର ବେଉସା, ଜରଦ୍‌ଗବମାନଙ୍କ ହାତରେ ଥିବା ଶିକ୍ଷା-ସଂସ୍କୃତିର ଦାୟିତ୍ୱହୀନ ପରିବେଶର ଚିତ୍ର ରହିଛି । ଯେଉଁମାନେ 'ଦିଅଁ ଖାଇ, ଖଟୁଲି ବି ଖାଇଦେଇ କରିହେବ ସ୍ୱାହା", "ସପତ ସମୁଦ୍ର ଯିବ ଥରକର ଚଳୁପରେ ଶୁଖି" ।

ଗଣତନ୍ତ୍ରର ଯୁଦ୍ଧ, ପ୍ରତିଶ୍ରୁତିବଦ୍ଧ ଭାଷାର ବର୍ଣ୍ଣାଳୀ, ରାମରାଜ୍ୟର ଦିବାସ୍ୱପ୍ନ, ବଜାର ଦର ନିୟନ୍ତ୍ରିତ ହେବା ସ୍ୱପ୍ନ, ସଭା-ଶୋଭାଯାତ୍ରା, ଭୋଜିଭାତ, ମଜା-ମହୋତ୍ସବ, କ୍ଷମତାର ରଙ୍ଗମଞ୍ଚ ଉପରେ ନେତାମାନଙ୍କର ମିଥ୍ୟା ଦମ୍ଭୋକ୍ତି, ହୁକୁମାତି, ପାଞ୍ଚବର୍ଷର ଶାସନ ଭିତରେ ଜାଲ୍-ଚୋରା କାରବାର ସହିତ ପୁଞ୍ଜିପତି, ଟାଉଟର୍, ଦଲାଲ୍ ଓ କଣ୍ଟ୍ରାକ୍ଟରମାନଙ୍କର ଶୋଷଣ, ବୃଥା ଆସ୍ଫାଳନ ଆଦି ଯେ ନିଶ୍ଚିତ

ଦିନେ ଧୂଳିସାତ୍ ହୋଇଯିବ ଏହା କବିର ଆଶା । କବିଙ୍କ ଶବ୍ଦରେ-

"ମହାକାଳ ଚୁରିଦେବ, ଦିନେ ଏଇ ଅସାର ବଡ଼େଇ"

କବିବର ରାଧାନାଥ ରାୟଙ୍କ 'ପାର୍ବତୀ କାବ୍ୟ'ର ସେହି ପଂକ୍ତି ଏଠାରେ ଉଲ୍ଲେଖଯୋଗ୍ୟ-

ଇଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ / ସମସ୍ତଙ୍କ ଭାଗ୍ୟଡୋରି / ନିଜ ଭାଗ୍ୟଡୋରି କାଳହସ୍ତେ ବନ୍ଧା, / ପକାନ୍ତି ହେଲେ ପାଶୋରି" ।

ହୁଏତ ରାଧାନାଥ ମଧ ଏହିଭଳି ସୀମାହୀନ ଆତ୍ମାଭିମାନରେ ପ୍ରମତ୍ତ ମଣିଷଙ୍କୁ ହେଜେଇବାକୁ ଉପର୍ଯ୍ୟୁକ୍ତ ଶବ୍ଦ ସାଉଁଟିଥିବେ । ଆଧୁନିକ ଯୁଗର ଏଇ ବିବର୍ତ୍ତିତ ପ୍ରହରମାନଙ୍କରେ କବିମାନଙ୍କର ଆନ୍ତରୀଣ ନୈତିକ ଭାବଧର୍ମ ସମଗ୍ର ମଣିଷ ସାମାଜକୁ ଶାବ୍ଦିକ ପ୍ରତିବଦ୍ଧତା ଭିତରେ ସଂସ୍କାରିତ କରିବାକୁ ପ୍ରୟାସ କରିଛି । ବିଫଳ ରାଜନୀତିକ ପଟ୍ଟଭୂମି ଉପରେ ଗଣତନ୍ତ୍ରର ମିଥ୍ୟା ଦମ୍ଭୋକ୍ତି କେତେଯେ ବିଡ଼ମ୍ବନାର ବିଷୟ, ତାହା କହିବା ସମ୍ଭବ ନୁହେଁ । ପ୍ରତିଦିନ କେତେ କେତେ ନୂଆ କମିଶନ୍, କମିଟୀ, ବିଚାର-ବିବୃତି, ଶିକ୍ଷକର ଅର୍ଦ୍ଧାହାର ମୃତ୍ୟୁ, ଅଭାବ, ଉପାସ, ପ୍ରତିଶ୍ରୁତିପୂର୍ଣ୍ଣ ମିଛ ସମ୍ଭାଷଣ, ପ୍ରାଚୁର୍ଯ୍ୟର ଅନାଗତ ଦିନର ସ୍ୱପ୍ନଙ୍କୁ ନେଇ ଯୋଜନା, ଘିଅ, ଦୁଧ, ମଦ-ମହୁର ସ୍ରୋତରେ ଦେଶ ଭାସିବ ବୋଲି ସମ୍ଭାବନାର ଚିତ୍ର ଅଙ୍କନ ଅଯଥା କେବଳ ଭ୍ରମାତ୍ମକ ।

ସମାଜର ନୈତିକ ମାନଦଣ୍ଡର ପ୍ରମୁଖ ଆଧାର ଶିକ୍ଷକର ଜୀବନ ସଂପ୍ରତି ଦୁର୍ବିସହ । ସମାଜର ପ୍ରମୁଖ ଦାୟିତ୍ୱଟିକୁ ଅତି ନିର୍ବିକାର ହୋଇ ତୁଲାଇଲେ ମଧ ତାକୁ ପ୍ରତିଦିନର ଗୁଜୁରାଣ ମେଣ୍ଟାଇବା ପାଇଁ ସଂଘର୍ଷ କରିବାକୁ ପଡ଼େ । ସ୍ୱାର୍ଥର ଶିଖଣ୍ଡୀମାନେ ଶିକ୍ଷକର ତଣ୍ଟି ଚିପି ସାରିଲେଣି, ଚତୁର୍ଦ୍ଦିଗରୁ ଦୁର୍ନୀତିର କଳରୋଳ । କବି, ଶିକ୍ଷକ, କୃଷକଗଣ ଦୁର୍ନୀତିର ଆତ୍ତରୋଳ ଭିତରେ ଅବହେଳିତ ହେଉଛନ୍ତି ଏବଂ ଭୀଷ୍ମସମ ଜୀବନର ଶରଶଯ୍ୟାରେ ଶାୟିତ ହୋଇ ଅହରହ ମୃତ୍ୟୁ ସହିତ ସଂଗ୍ରାମ ଜାରି ରଖିଛନ୍ତି ।

କବି ବିଭୁଦତ୍ତଙ୍କ ସୃଷ୍ଟିରେ ଏ ଦେଶର ବିଲ, ବଣ, ପଲ୍ଲୀ, ତୋଟା, ତୁଠ, ପାଟ ଓ ପୋଖରୀ, ସାଗର ଓ ସରିତ ଆଉ ଅଗଣିତ ମଣିଷମାନେ ସଂପ୍ରତି କାନ୍ଦୁଛନ୍ତି । ଦେଶ ହାହାକାରେ କରୁଛି । ଏଠି ଖାଲି ଧର୍ମବିହୀନ -ଭଗବାନହୀନ ଦେବାଳୟ, ବ୍ୟାବସାୟିକ ବୁଦ୍ଧି ଭିତରେ ସ୍ନେହ-ପ୍ରୀତି-ପ୍ରାଣ ଦିଆନିଆର କଥା ଆଜି ଦୁଷ୍ପ୍ରାପ୍ୟ ।

ଉତ୍କଳର ପୂର୍ବ ଐତିହ୍ୟ କୋଣାର୍କ, ବାରବାଟୀ ଆଜି କେବଳ ବିଜ୍ଞାପିତ ହେବାକୁ ଦଣ୍ଡାୟମାନ ମାତ୍ର । ତା'ର ମୂଲ୍ୟବୋଧ ଅଭାବନୀୟ ସ୍ଥିତି ଭିତରେ ପ୍ରଶ୍ନବାଚୀ ପାଲଟିଛି ।

ଜୀବନର ମହାସିନ୍ଧୁ ଭିତରକୁ ଦେଶ ଓ ଜାତିର ସ୍ୱାର୍ଥ ନିମନ୍ତେ ଲମ୍ଫ ଦେବା ପାଇଁ ତଥା ଜାତିର ଆଖି ଖୋଲିବା ପାଇଁ ଆଜି ଧର୍ମପଦ ପରି ବୀରପୁତ୍ର ବଞ୍ଚିନାହିଁ । ଶରୀରର ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ନିଜ କର୍ମସ୍ଥଳରୁ ତିଳେହେଁ ବିଚ୍ୟୁତ ହେବାପରି ବୀର ଏବେ ଦୁର୍ଲ୍ଲଭ । ଏହି ବିଷମ ସ୍ଥିତିରେ କବି ଉତ୍ତରପୁରୁଷଙ୍କୁ ଆହ୍ୱାନ କରିଛନ୍ତି ।

"କୋଣାର୍କର ଦେଶେ ଆଜି, କିଏ ଅଛ ହେ ନୂତନ ଶିଳ୍ପୀ / ଗଢ଼ ନୂଆ ବାରବାଟୀ ଇଏ ଖାଲି ମୁମୂର୍ଷୁ-ଅତୀତ / 'ମହାନଦୀ' ବହିଆଣୁ ସେ ଦିନର ଗୌରବ-ସଂପଦ / ସାଗର ତରଙ୍ଗ ଗାଉ ମନ୍ଦ୍ରନାଦେ ଜାତିର ସଂଗୀତ ।"

ପରିଶେଷରେ ନୀଳାଚଳଧାମର ଆରାଧ୍ୟ ଏ ଜାତିର ଦେବତା ଶ୍ରୀଜଗନ୍ନାଥଙ୍କୁ ସାକ୍ଷୀ ରଖି ଯୁଗଯୁଗର ଯୁଦ୍ଧ, ବିଭୀଷିକା, ରକ୍ତପାତ, ବନ୍ୟା, ମହାମାରୀ, ନରପ୍ରମତ୍ତ ଉତ୍ସବ, ମହାକାଳର ନିଷ୍ଠୁର ତାଣ୍ଡବ ଧରି ଆସିଥିବା ସକଳ ଦୁର୍ଯୋଗ, ଦୁଃଖ-ଦୁର୍ବିପାକରୁ କବି ମୁକ୍ତି ଚାହିଁଛନ୍ତି । ସେହି ପାଷାଣ ଦେବତାଠାରୁ ଆଶା-ଆଶ୍ୱାସନା ଚାହିଁବା ଭିତରେ କବି ବିଭୁଦତ୍ତଙ୍କ ଶ୍ରୀଜଗନ୍ନାଥୀୟ ଭକ୍ତିମତ୍ତା ସ୍ପଷ୍ଟ ଅନୁଭବ୍ୟ ହୋଇଥାଏ । ଯେଉଁ ଜଗନ୍ନାଥଙ୍କ ଆଦି-ଅନ୍ତ-ରୂପ-ରେଖ ନାହିଁ, ଯେ ଅନନ୍ତ-ଅଲେଖ, ଅନ୍ତର୍ଯ୍ୟାମୀ, ସେଇ ବିଶ୍ୱପ୍ରଭୁଙ୍କ ଚରଣାରବିନ୍ଦରେ କବିଙ୍କ ଶବ୍ଦ ବିସର୍ଜିତ ହୋଇଛି -

"ପାଷାଣ ନୁହେଁ ଏ ବନ୍ଧୁ; ଲୁହର ଏ ଉତ୍ଥଳ ସାଗର / ଦେବତା ନୁହେଁ ଏ ବନ୍ଧୁ ଦୀନବନ୍ଧୁ ପତିତ ପାବନ / ରତ୍ନ ସିଂହାସନ ନୁହେଁ, ଏ ଜାତିର ପ୍ରାଣକେନ୍ଦ୍ର ଏଇ / ଏଇଠୁ ଉତ୍ଥାନ ଆମ, ଏଇଠି ବି କରୁଣ ପତନ ।"

କବିଙ୍କ ପାଇଁ ବଡ଼ଠାକୁରଙ୍କ ପରି ବଡ଼ଦାଣ୍ଡ ଧୂଳି ମଧ୍ୟ ପୂତ-ପବିତ୍ର-ମହାନ୍ । ଯେଉଁଠାରେ ସେ ବଡ଼ଦିଅଁ ବ୍ରାହ୍ମଣ, ଚଣ୍ଡାଳ, ପଶୁ-ପକ୍ଷୀ ସବୁର ଦେବତା । ସମସ୍ତ ମାନବ ସମାଜ ନିଜ ଦୁଃଖ-ଶୋକ-ବେଦନାର ଜ୍ୱାଳାକୁ ଭୁଲାଇ ବଡ଼ଦାଣ୍ଡ ଧୂଳିରେ ଲୋଟି, ନୀଳଚକ୍ରକୁ ଚାହିଁ ଏଇଠାରେ ହିଁ ମୁକ୍ତିର ଅପେକ୍ଷା କରେ । ଯୁଗେ ଯୁଗେ ଏ ସନାତନ ଭୂମିରେ ଦାନବଠାରୁ ମୁକ୍ତ କରିବା ନିମନ୍ତେ ଭଗବାନ୍ ଧରାବତରଣ କରିଥାନ୍ତି । ଏ ଉତ୍କଳୀୟ ଜାତି ରଥର ଆରମ୍ଭ ମଧ୍ୟ ତାଙ୍କରି ଠାରୁ ଏବଂ ଶେଷ

ଲକ୍ଷ୍ୟ ମଧ୍ୟ ସେହି ସିଂହଦରଜାରେ । କାରଣ,

"ଏଇଠି ସବୁର ସୃଷ୍ଟି ଶେଷସିନା ଏଇ ଆମ ଲକ୍ଷ୍ୟ
ଆଗେ ଆଉ ପଥ ନାହିଁ, ହେ ସାରଥି ରଥ ଏଥି ରଖ ।"

କବି ବିଭୁଦତ୍ତଙ୍କ ଉତ୍ତୁଙ୍ଗ ମାନବପ୍ରେମ ଏବଂ କର୍ମଯୋଗର ଉଦାତ୍ତ ଗାୟତ୍ରୀ ଶୁଭେ ଧୂସର କବିତା ଏବଂ 'ଇସ୍ତାହାର'ରେ । ମୁକ୍ତିକାମୀ କବି ଜଗତର ଯାହା କୁତ୍ସିତ, ଅନ୍ଧାର, ବାଧା, ବିପଦ, ଅବରୋଧ, ରୋଗ, ଶୋକ, ଜରା, ବ୍ୟାଧି, ମୋହ, ଦଳିତର ଦୁଃଖକୁ ସଂପୂର୍ଣ୍ଣ ଦୂରୀଭୂତ କରିବାର ଇଚ୍ଛା ପୋଷଣ କରିଛନ୍ତି କବି । ଦଳିତର ଦୁଃଖରେ ବତୁରି ଅନ୍ୟକୁ ଅମୃତ ଦେଇ ନିଜେ ହସିହସି ସତ୍ୟସିଦ୍ଧ ସକ୍ରେଟିସ୍‌ଙ୍କ ପରି ବିଷପାନ କରିବାକୁ ଚାହିଁଛନ୍ତି । ଏ ପବିତ୍ର ଜନ୍ମଭୂମିର ଧୂଳିଠାରୁ ପଳାୟନ ନକରି ଏଇଠାରେ ରହି କର୍ମରତ ରହିବାକୁ ଚାହିଁଛନ୍ତି । ତାଙ୍କ ଶବ୍ଦରେ-

"ଏ ଧୂଳିରେ ହୋଇଛି ମୋ ଜନମ / ଏ ଧୂଳି ମୋ ଜୀବନରେ ପ୍ରିୟ ହେ / ଏ ଧୂଳିରେ କରିବି ମୁଁ କରମ / ଏଇ ମୋର କବିତାର ଦେୟ ହେ ।"

"ମୁଁ ଏକ ନୂତନ ବାର୍ତ୍ତା" । କବିତାରେ ମୁକ୍ତିର ଆହ୍ୱାନ ସହିତ ନିଜକୁ ଆଲୋକର ଯାତ୍ରୀ ଭାବରେ କବି ପରିଚୟ ପ୍ରଦାନ କରିଛନ୍ତି । 'ଶେଷ ଶପଥ' କବିତାରେ 'ମିଥ୍' ଚରିତ୍ରମାନଙ୍କୁ ସ୍ଥାନିତ କରିଛନ୍ତି । ଶକୁନି, ଧୃତରାଷ୍ଟ୍ର, ଦୁଃଶାସନ, ପାର୍ଥ, ମହାପରାକ୍ରମୀ ଭୀମ, ଅଭିମନ୍ୟୁ (ପାଞ୍ଚାଳୀ) ବୈଦେହୀ ଆଦି ଚରିତ୍ରଙ୍କୁ ଆଧୁନିକ ଯୁଗରେ ଅନ୍ୱେଷା କରିଛନ୍ତି । କୌଣସି ନିର୍ଦ୍ଦିଷ୍ଟ ମୂଲ୍ୟବୋଧର ସ୍ଥାପନାହିଁ କବିଙ୍କର ଏକମାତ୍ର ଉଦ୍ଦେଶ୍ୟ । ଆଧୁନିକ ଶାସକମାନଙ୍କର ଷଡ଼ଯନ୍ତ୍ରକାରୀ ବୁଦ୍ଧିକୁ 'ଶକୁନି' ସହିତ ତୁଳନା କରିଛନ୍ତି, ମଣିଷର ଛାତିହାଡ଼ରେ ପଶାକାଠି ଗଢ଼େ, ଛାତିର ରକ୍ତରେ ଲାଲ୍‌ଦାନ ପକାଇ ମଣିଷ ଓ ପ୍ରାଚୁର୍ଯ୍ୟର ଅନ୍ଧଖେଳ ଧନରେ ଖେଳେ । ଧୃତରାଷ୍ଟ୍ରର ଅନ୍ଧତ୍ୱ ହେତୁ ରାଷ୍ଟ୍ରରେ ଭ୍ରଷ୍ଟଶାସକଙ୍କ ରାଜୁତି ବୃଦ୍ଧି ପାଉଛି । ଦୁର୍ଯ୍ୟୋଧନର ଦୁର୍ଯୋଗ, ଦୁଃଶାସନର ଉତ୍ପାତ ବଢ଼ିଚାଲିଛି । ତଥାପି କବି ଗାଇଉଠିଛନ୍ତି-

"ପାର୍ଥର ରଥଚକ୍ର ଘୁରୁଛି ଗୁରୁ ନିର୍ଘୋଷେ ଆଜି / ଘୂର୍ଣ୍ଣିଠୁଁ ବଳି ଭୀମତର ପ୍ରବଳ ପ୍ରଳୟରାସେ, / ଅଶ୍ୱ ତା' ଛୁଟେ ବିଶ୍ୱର ମହାଦିଗ୍‌ଚକ୍ରକୁ ଭେଦି, / ସାରଥି ଆସନେ ସ୍ରଷ୍ଟା ତା' ବସି ହସେ ।"

ଆଲୋଚ୍ୟ କବିତାରେ କବି ମାନବମୁକ୍ତି ଏବଂ ତା'ର ଅଧିକାର ପ୍ରତିଷ୍ଠା ପାଇଁ

ଶେଷ ରକ୍ତବିନ୍ଦୁ ମଧ୍ୟ ଢ଼ାଳିବାକୁ ପ୍ରସ୍ତୁତ ଅଛନ୍ତି । ପୁଷ୍ପକ ବିମାନ, ଗାଣ୍ଡୀବ ଇମେଜ୍ ତୋଳି ନୂତନ ଆଲୋକିତ ପଥର ଯାତ୍ରୀ ହେବା ସହିତ ଗାଣ୍ଡୀବ ଉତ୍ତୋଳନ କରି ଅନ୍ୟାୟ-ଅନୀତିର ଧ୍ୱଂସ କରିବା ହୋଇଛି କବିଙ୍କ ଆଭିମୁଖ୍ୟ । 'ଶୋଣିତ ସତ୍ୟ' କବିତାରେ କବି ଦୀପ୍ତ ମଶାଲ ଉତ୍ତୋଳିତ କରି ବିପ୍ଲବର ଧ୍ୱଜା ଉଡ଼ାଇବାକୁ ଚାହିଁଛନ୍ତି । ବର୍ବରତାର ଅନ୍ଧାର ଭିତରେ ପଶୁତ୍ୱର ରକ୍ତସଜ୍ଜିତ ଐତିହ୍ୟ ଏଡ଼େଇ, ଅତ୍ୟାଚାରୀର ହିଂସ୍ର କୋରଡ଼ା ମାଡ଼ରେ, କ୍ରୀତଦାସ ପାଲଟିଥିବା ମଣିଷର ବନ୍ଧୁର ଜୀବନପଥରେ କବି ପଦ୍ମତୁଲ୍ୟ ଫୁଟିବାକୁ ଚାହୁଁଛନ୍ତି-

"ନୀଳ ଚକ୍ରର ନୀଳିମ ବଳୟ କାଟି / କୁଞ୍ଜ ନିଳୟେ ମଞ୍ଜୁ-ମଳୟ ଏଡ଼ି / ଯୁବତୀ-ପୀରତି-ମାଳତୀ-ମାଳାରେ ଛାଡ଼ି / ଦୁର୍ଗମ-ଗିରି-ଦୁର୍ଗେ-ଉଠିବି ଫୁଟି ।"

ମାଳୟ ଦ୍ୱୀପ, ମେକ୍ସିକୋ ସାଗର, ନାଇଲ ନଦୀ ତୀର ଅବା ଗୋଆ ରାଜପଥରେ ଅସଂଖ୍ୟ ମଣିଷଙ୍କ ବଳୀଦାନ କେବେ ବ୍ୟର୍ଥ ହେବନି । ଯୁଦ୍ଧର ତୂର୍ଯ୍ୟଧ୍ୱନି ଭିତରେ ମୁକ୍ତିର ମହାସୂର୍ଯ୍ୟରୂପୀ ମଶାଲକୁ ଧରି ଦଳିତ-ସର୍ବହରାଙ୍କ ଭିତରେ ଜାଗରଣ ସୃଷ୍ଟି କରିବା କବିର ଲକ୍ଷ୍ୟ । ମୁକ୍ତିର ଇତିହାସକୁ ରକ୍ତରେ ଲେଖି, ମୃତ୍ୟୁକୁ ଚୁମ୍ବନ ଦେଇ, ବିପ୍ଳବ ଭିତରେ ଶାନ୍ତିର ସ୍ୱପ୍ନ ଦେଖିବାର ସାମର୍ଥ୍ୟ କବି ଭିତରେ ରହିଛି । କବିଙ୍କ 'ରଥ' ଜୀବନଯାତ୍ରା ପଥର ସନ୍ଧାନୀ ହୋଇଛି ଏବଂ ସେ ପଥରେ କେବଳ ଯୁଦ୍ଧଭେରୀ ବାଜେ, ସର୍ବହରାମାନେ ଗର୍ବରେ ପ୍ରମତ୍ତ ହୋଇ ଅଣୁ, ଉଦ୍‌ଜାନ ଓ ଅଗ୍ନିର ସମାରୋହରେ ମୁକ୍ତିର ସ୍ୱପ୍ନଦେଖନ୍ତି ।

କବି ଯୀଶୁଙ୍କ ପରି କ୍ରୁଶବିଦ୍ଧ ହେବାକୁ ଚାହେଁ, ଗାନ୍ଧୀଙ୍କ ପରି ଆନନ୍ଦରେ ଗୁଳିବିଦ୍ଧ ହେବାକୁ ଚାହେଁ । 'ମୋ କବିତାର ଆତ୍ମଲିପି', 'ଜାତିର ଶପଥ', 'ରାତିର ସୂର୍ଯ୍ୟ' ଆଦି କବିତାରେ ଦଳିତ ଦୁଃଖୀ, ପ୍ରଦାହ, ନିଃସ୍ୱର ଯନ୍ତ୍ରଣା, ଶ୍ରମିକ-ବେକାରର ବ୍ୟଥା, ବିପ୍ଲବୀର ସ୍ଲୋଗାନ, ଶୋଷଣ-ପେଷଣପିଷ୍ଟ ଜନତାର ଲୁହ, ଅତ୍ୟାଚାରର ଦୁର୍ଗମ ଦ୍ୱାର, ସରକାରର ମଣିଷ ଜୀବନକୁ ନେଇ କନ୍ଦୁକ କ୍ରୀଡ଼ା, ଗୁର୍ଖା ପୁଲିସ୍‌ର ଲାଠି, ବନ୍ଧୁକ, ବର୍ବରତାର ହାତୁଡ଼ି, ସଭ୍ୟତାର ସାନ୍ଦ୍ର ତମିସ୍ରା ଭିତରେ ଦେଢ଼କୋଟି ଜନତା ଓଠରେ ହସ ନାହିଁ । ତେଣୁ କବି ତା'ର କବିତା ମାଧ୍ୟମରେ ଆଗାମୀ କାଲିପାଇଁ ବାର୍ତ୍ତା ଦେବାକୁ ଚାହିଁଛି । ନୂତନ ଜୀବନ ପାଇଁ ଖସଡ଼ାପ୍ରସ୍ତୁତ କରିବାକୁ ଚାହୁଁଛି । ବଜ୍ର ଶପଥ ପାଇଁ କବି ପୂର୍ବ ଗୌରବମୟ ଐତିହ୍ୟକୁ ମନେପକାଇ ଜାତିକୁ ସଚେତନ କରିବାକୁ ଚାହୁଁଛି -

"ଅନ୍ୟାୟ ଆଉ ଅନୀତିର ପାଇଁ / ଯୁଗେ ଯୁଗେ ଆମେ ଉଠିଅଛୁ ଚେଇଁ / ବରୁଣେଇ ତଟେ, ଧଉଳୀ ନିକଟେ, ସମ୍ବଲପୁରେ ପରା / ଆଜି ସେହି ଜାତି, ଉଠିଥିଲା ମାତି / ଓଡ଼ିଆ ରକତ ଉଠିଥିଲା ତାତି / ଖେଳାଇବା ପାଇଁ, ଜନନୀର ଓଠେ ହସର ଅରୁଣଧାରା ।"

ବିଭୁଦତ୍ତୀୟ ସେଣ୍ଟିମେଣ୍ଟ୍ ଭିତରେ ପ୍ରଗତିର ସ୍ୱର, ମାର୍କସୀୟ ଆହ୍ୱାନର ତୀବ୍ର ଆହ୍ୱାନ୍ ଅନୁଭୂତ ହୋଇଛି ତାଙ୍କର ଉଚ୍ଚକୋଟୀର କାବକୃତ 'ହେ ସାରଥି ରଥ ରଖ'ରେ । ଏଥିରେ କବି ଉତ୍କଳମଣି ଗୋପବନ୍ଧୁ, ମଧୁସୂଦନଙ୍କ ପରି ଜାତୀୟ ଜୀବନ ପ୍ରତିଷ୍ଠାର ପ୍ରତିଶ୍ରୁତିବଦ୍ଧ ଜନନାୟକମାନଙ୍କୁ ମନେପକାଇଛନ୍ତି । ସାମ୍ୟବାଦର ରଣହୁଙ୍କାର ଦେଇ ଛିନ୍ନମସ୍ତା ଉତ୍କଳକୁ ପ୍ରତିଷ୍ଠା କରିବା ଏବଂ ବିଶାଳ ଓଡ଼ିଶା ଗଢ଼ିବା କବିର ଲକ୍ଷ୍ୟ ହୋଇଛି । କବିର କୋମଳ ଆଦେଶ ବାସ୍ତବତାର ତାଡ଼ନାରେ ହିଂସ୍ର ପାଲଟିଛି । ବିପ୍ଳବର ନୂତନ କବିତା ଗାଇଛି । କବି ନିଜ ଜୀବନର ଅନ୍ତିମ କ୍ଷଣରେ ପ୍ରଭାତର ନାଲି ଇସ୍ତାହାର ରୂପେ ମୁକ୍ତିର ଘୋଷଣା କରିବାକୁ ଚାହିଁଛନ୍ତି । ହିନ୍ଦୀ ସାହିତ୍ୟର ପ୍ରଚଣ୍ଡ ସାମ୍ୟବାଦୀ କବି ଦୁଷ୍ୟନ୍ତ କୁମାରଙ୍କ ଶବ୍ଦରେ -

"ହଙ୍ଗାମା ଖଡ଼ା କର୍‌ନା ମେରା ମକ୍‌ସଦ୍ ନହିଁ / ସୁରତ୍ ବଦଲ୍‌ନି ଚାହିୟେ, / ମେରେ ଦିଲ୍ ମେଁ ନହିଁ ତେରେ ଦିଲ୍‌ମେଁ ସହି / ହୋ କହିଁ ଭି ଆଗ୍ / ଆଗ୍ ଜଲ୍‌ନି ଚାହିୟେ ।"

'ବାଜି ରାଉତ୍' ଉଦ୍ଦେଶ୍ୟରେ କବି ସଚ୍ଚିରାଉତଙ୍କ ବ୍ୟଥାତୁର - ଘୋଷଣା -

"ନୁହେଁ ବନ୍ଧୁ ନୁହେଁ ଏହା ଚିତା / ଏ ଜାତି ତିମିର ତଳେ ମୁକତିର ଅଲିଭା ସଳିତା / ନୁହେଁ ଏଥି ଜଳିଯିବା ପାଇଁ / ଏହାର ଜନମ ଏଥି ଜାଳିପୋଡ଼ି ଦେବାକୁ ଧସାଇ ।"

ଅନୁରୂପ ବିଦ୍ରୋହ ଆଉ ସାମ୍ୟବାଦୀ ମଶାଲ୍-ଦୀପ୍ତ ଶବ୍ଦ କବି ବିଭୁଦତ୍ତଙ୍କ କବିତାରେ ଉଚ୍ଚକିତ -

"ସବୁର ବିରୁଦ୍ଧେ ମୁହିଁ ଜାଳିଗଲି ବିପ୍ଳବ ମଶାଲ ।"

ହଳାହଳ ନାଗଫାଶ ବନ୍ଧନ ଭିତରେ ମଧ ଜୀବନର ଅମୃତ ସନ୍ଧାନୀ ହୋଇଛନ୍ତି କବି । କବିତା ଜରିଆରେ ମୁକ୍ତିର ମୋହନ ମନ୍ତ୍ର ଗାଇଛନ୍ତି ।

"ମୁହିଁ ତ ଆଜିର କବି ନିଷ୍ପୀଡ଼ିତ ଅଗ୍ନିଗର୍ଭ ଶିଶୁ / ଭବିଷ୍ୟତ ଯୁଗର ମୁଁ ପ୍ରତ୍ୟାବୃତ୍ତ ଶାନ୍ତିର ସୈନିକ / କବିତା ମୋ ଯୁଗାନ୍ତର ଯାତନାର ଉଜ୍ଜ୍ୱଳ ଜ୍ୟୋତିଷ୍କ

/ ଭାବନାର ଭଗ୍ନାଂଶରେ ନଷ୍ଟପକ୍ଷ ନିରୀହ ମୈନାକ ।"

'ସୀମାନ୍ତ ସୈନିକ' କବିତାରେ ସେହି ପରାଧୀନ ଅବସାଦଗ୍ରସ୍ତ ଆବେଗର ପୁନରାବୃତ୍ତି ଘଟିଛି । ନାଇଲ୍ ତୀରରେ ଇଣ୍ଡୋ-ଚୀନ୍ ଯୁଦ୍ଧ, ସାଇପ୍ରସ୍‌ରେ ଗୋଆ-କାଶ୍ମୀରର ରକ୍ତଛିଟା, ଆଲ୍‌ଜେରିଆର ମୁକ୍ତ ସିପାହୀର ସ୍ମୃତିଚାରଣ ରହିଛି । "ନବ୍ୟଯୁଗର ସବ୍ୟସାଚୀ ମୁଁ ଆଜି", କବିତାରେ ମହାଭାରତର ଦୁର୍ଯ୍ୟୋଧନ, ଦୁଃଶାସନ, ଶକୁନିଙ୍କ କୂଟବୁଦ୍ଧିର ସ୍ମୃତିଚାରଣ କରି ନିଜକୁ ଗାଣ୍ଡୀବଧାରୀ ସବ୍ୟସାଚୀ ରୂପରେ ସଜେଇ ସାରଥୀ କୃଷ୍ଣଙ୍କୁ ପ୍ରାର୍ଥନା କରିଛନ୍ତି-

"କୃଷ୍ଣ ହେ ! ତୁମେ ସଜିତ କର ରଥ, / ହେ ଜୀବନସାଥୀ ! ସାରଥୀର ଆସନରେ / ବସି ଦିଅ ତୁମେ ସଂଗ୍ରାମେ ନିରିଦେଶ / ବାହିନିଅ ରଥ ପବନହୁଁ ବଳି ଖରେ ।"

'ଆଗାମୀ' ପାଇଁ ସଂଗୀତ, ରକ୍ତସାତୀ, ହେ ଇଜିପ୍ଟ ! ପ୍ରିୟବନ୍ଧୁ ମମ, ଆଜି ପନ୍ଦରେ, ଅଜ୍ଞାତବାସ, କ୍ରୁଶ ଉପରୁ, ନବବର୍ଷର ଅଭିନନ୍ଦନ ନିଅ, ସୀମାନ୍ତର ଆହ୍ୱାନ ଆବାହନୀ, ହିମାଚଳେ ବିପ୍ଳବ, ସମୟ ନାଇଁ, ଜୟ ଗାନ୍ଧିଜୀ ଜୟ, ସ୍ୱପ୍ନଜୀବିର ଦଳ ଆମେ, ଉଷାର ସଂଗୀତ, ଯକ୍ଷ ମୁଁ ନୁହେଁ ବନ୍ଧୁ, ଆମେ କି ଉତ୍ତର ଦେବୁ (ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ), କଷ୍ଟଲୋକର କାବ୍ୟକାର ମୁଁ, ସିଂହ ଦୁଆରେ ଆଜି କିଏ ମୋର, ସୂର୍ଯ୍ୟଶିଶୁ ଶପଥ ନିଏ, ନମସ୍କାର, ସଂଗ୍ରାମୀର ଶପଥ, ରକ୍ତ ଦେଇ ରକ୍ଷାକର, ଇତ୍ୟାଦି କବିତାରେ ରାମରାଜ୍ୟର ସ୍ୱପ୍ନ, ଗୋଆପର୍ଥର ସଂଘର୍ଷ, ଅବକ୍ଷୟମାଣ ବାରବାଟୀର ସ୍ୱପ୍ନ, ସୁଏଜ୍ କେନାଲ୍‌ର ଜାତୀୟକରଣ ପରେ ଇଜିପ୍ଟ ବିରୋଧରେ ଯୁଦ୍ଧ ଘୋଷଣା କରିଥିବା ସାମ୍ରାଜ୍ୟବାଦୀ ଶକ୍ତିଗୋଷ୍ଠୀର ଅତ୍ୟାଚାର ବିରୋଧରେ ସଂପୂର୍ଣ୍ଣ ଏସିଆର ରୁଦ୍ର ଆବାହନୀ, ସାଇବେରିଆର ପରମାଣୁ ରଣହୁଙ୍କାର, ଚନ୍ଦ୍ରପୁରୀକୁ ଅଭିଯାନ, ମଣିଷର ଅଧିକାର ପ୍ରତିଷ୍ଠା ପାଇଁ ଆହ୍ୱାନ, ସାମ୍ୟବାଦ, ମାନବିକତା, ମାନବଜାତିର କଲ୍ୟାଣ, ଜାତୀୟତା ଏବଂ ଶାନ୍ତି ପ୍ରତିଷ୍ଠାର ଆହ୍ୱାନ ଅଛି ।

'ହେ ସାରଥି ! ରଥ ରଖ' କବିତାରେ କବି ଏ ମାନବ ସମାଜର ଅଜ୍ଞାତବାସ ଓ ଦୀର୍ଘ ବନବାସରେ ବୃହନ୍ନଳାର ଛଦ୍ମବେଶରୁ ମୁକ୍ତି ଚାହିଁଛନ୍ତି, କାରଣ, ଅର୍ଜ୍ଜୁନଙ୍କ ପରି ଦୁର୍ଦ୍ଦାନ୍ତ-ପୌରୁଷକୁ ଧାରଣ କରି କବରୀ ବନ୍ଧନରେ କ'ଣ ରହିହୁଏ ? କବି ରୁଦ୍ରବେଶରେ ନିଜ ଭିତରେ ଆଗ୍ନେୟ ସୁରଭିର ଲେଲିହାନ ବିଶ୍ୱଧ୍ୱଂସୀ ପ୍ରଖର ନିଃଶ୍ୱାସକୁ ଅନୁଭବ କରିଛନ୍ତି । ସେ ଅଳକାପୁରୀର ମତ୍ତ ତରୁଣୀ ଦଳରେ

ନର୍ତ୍ତନରତ ତରୁଣୀ ବଳରେ ପୀରତି ସ୍ନେହେ କାଳିଦାସଙ୍କ ବିରହ ବିଧୁର,ବେଦନା ଅଧୀର ଯକ୍ଷ ନୁହେଁ ସେ ଅର୍ଜୁନଙ୍କ ପରି ବୀର, ତାଙ୍କ ପାଖରେ ସେ ଯୁଦ୍ଧ ରଥ, ସାରଥୀ, ଅଶ୍ୱ, ଗାଣ୍ଡୀବ, ଅକ୍ଷୟ ତୂଣୀର ଅଛି । ସେ ଭୀରୁ, ସେ ନିଷ୍କ୍ରିୟ, ଉଦାସ ନୁହଁନ୍ତି । ସେ ସର୍ବଗ୍ରାସୀ, ପ୍ରଚଣ୍ଡ ବତାସ ଏବଂ ଏକ ଦୂରନ୍ତ ଘୂର୍ଣ୍ଣି, ଏକ ପ୍ରଳୟ ଶଂଖ; ଯୁଦ୍ଧ ପାଗଳ ଦାନବକୁ ସାମ୍ନା କରିବାକୁ ଗାଣ୍ଡୀବଧାରୀ ଅର୍ଜୁନ, ମହାଯୋଗୀ ଧୂର୍ଜଟି, ଚଣ୍ଡାଶୋକର ଖଡ଼୍‌ଗକୁ କବି ଆହ୍ୱାନ କରିଛନ୍ତି । କବିଙ୍କ ଉଦଗ୍ର ଶବ୍ଦରେ –

"କେତେ ଦିନ ବାକି ଆଉ ଏ ଅଜ୍ଞାତବାସ ? / କେବେ ହେବ ଶେଷ, / ଜୀବନର ଏଇ ଘୃଣ୍ୟହୀନ ଇତିହାସ ।"

ଏଥିରେ ସ୍ୱାଧୀନତା ପରବର୍ତ୍ତୀ ମୋହଭଙ୍ଗ (Disillusionent) ସ୍ପଷ୍ଟ ଅନୁଭବ ହୁଏ । 'କ୍ରୁଶଉପରୁ' କବିତାରେ କବି ଯୀଶୁଙ୍କୁ କ୍ରୁଶବିଦ୍ଧ କରିଥିବା ଦୁର୍ବୃତ୍ତ ସତ୍ୟସିଦ୍ଧ ସକ୍ରେଟିସ୍‌ଙ୍କୁ ହଳାହଳ ବିଷପାନ କରାଇଥିବା ଷଡ଼ଯନ୍ତ୍ରକାରୀଙ୍କ ପ୍ରତି ଛଳୋକ୍ତିପୂର୍ଣ୍ଣ ଶବ୍ଦ ବ୍ୟବହାର କରିଛନ୍ତି । କବିଙ୍କ ମତରେ ଯୁଗେ ଯୁଗେ ସତ୍ୟ-ଆଲୋକିତ ହୁଏ, କ[ା]ର ମୁକୁଟ-ସ୍ୱର୍ଣ୍ଣ ମୁକୁଟ ପାଲଟେ, ବିଷପାତ୍ର-ଅମୃତମୟ ହୋଇଉଠେ, କାଳକୂଟ-ପାରିଜାତମାଳାରେ ପରିଣତ ହୁଏ, ସମସ୍ତ ଅନ୍ଧକାର ଆଲୋକିତ ହୁଏ । ଆଧୁନିକ କବି ଭିତରେ ମାନବିକତାବାଦ ପ୍ରତିଷ୍ଠାର ଆଭିମୁଖ୍ୟ ସୃଷ୍ଟି ହୋଇଛି । କବି ଋଷିଆର ମାଇକୋଭସ୍କି କିମ୍ବା ଆମେରିକାର କବି ହୁଇଟ୍‌ମ୍ୟାନ୍‌ଙ୍କ କାବ୍ୟରେ ଏହି ମାନବବାଦର ସ୍ୱରର ପ୍ରଭାବ ଥିଲା ଅତ୍ୟନ୍ତ ମାର୍ମିକ । ମାଇକୋଭସ୍କିଙ୍କ ଶବ୍ଦରେ – "On every single tear that in shed I myself am crucified", ହୁଇଟ୍‌ମ୍ୟାନଙ୍କ ଶବ୍ଦରେ "Comrade, this is no book, who touches it touches a man" ଆଦି ସମୁଚ୍ଚ ଦର୍ଶନର ପ୍ରଭାବ ଥିଲା ବ୍ୟାପକ କିମ୍ବା କବି ଭୀମଭୋଇଙ୍କ ବିଶ୍ୱସ୍ତରୀୟ ସଂପ୍ରସାରିତ ଭାବରୂପ – "Let my soul be condemned to hell but let the universe be redeemed.

ଚଲାପଥ ଯେତେ କଣ୍ଟକିତ ହେଉପଛେ, ଚିର ଦୁର୍ଦ୍ଦମନୀୟ ଯାତ୍ରୀଟିଏ ଭଳି ଆଗକୁ ବଢ଼ିଚାଲିବା ପାଇଁ କବି ପ୍ରେରଣା ପ୍ରଦାନ କରିଛନ୍ତି । କବି ବିଭୁଦତ୍ତ ଜଣେ ଅପ୍ରତିହତ କାବ୍ୟକାର, ଯେ କୌଣସି ଦୁଃଖ, ବିପଦ, ବାଧାବିଘ୍ନକୁ ଖାତିର କରନ୍ତି ନାହିଁ । ସେ କଳ୍ପଲୋକର କାବ୍ୟକାର ହୋଇଥିବାରୁ ତାଙ୍କର ମୃତ୍ୟୁ ମଧ ନାହିଁ । ସେ ଜଣେ ସଂଗ୍ରାମୀ, ପରାଜୟ, ଗ୍ଲାନି, ମୃତ୍ୟୁ ଆଗରେ ସେ ନୋଇଁ ନାହାନ୍ତି । ଜାଗତିକ ରୂପଜ ମାୟା, ଐନ୍ଦ୍ରଜାଲିକ ସୌନ୍ଦର୍ଯ୍ୟ, ସମସ୍ତ ମିଥା ପ୍ରଲୋଭନର ଉର୍ଦ୍ଧ୍ୱରେ

ରହି ଅଦମ୍ୟ ଉତ୍ସାହରେ ସେ ନିର୍ବିକାର, ନିର୍ଭୀକ କବିଟିଏ ହେବାକୁ ଚାହାଁନ୍ତି ।

ପ୍ରତିନୂତନ ବର୍ଷର ଆଗମନରେ ଭାରତୀୟ ତଥା ଉତ୍କଳୀୟ ସମସ୍ତ କବି, କଳାକାର, ଶିଳ୍ପୀ, ଲେଖକଙ୍କୁ କବି ସମ୍ବର୍ଦ୍ଧିତ କରି ଅଭିନନ୍ଦନ ଜଣାଇଛନ୍ତି । ବୁଦ୍ଧ, ଗାନ୍ଧୀଙ୍କ ଭାରତବର୍ଷରେ ଭାରତୀୟ ଜନତା, କୃଷକ, ଖାଦାନ ଶ୍ରମିକ, ତରୁଣ ଛାତ୍ର, ନବୀନଯୁବକଙ୍କୁ ଜାଗ୍ରତ କରିବା ପାଇଁ କବି ଆହ୍ୱାନ ଦେଇଛନ୍ତି । ଏ ଭାରତବର୍ଷ ଦେବତାମାନଙ୍କର ଲୀଳାସ୍ଥଳ, କ୍ଷତ୍ରିୟଙ୍କ ପୁଣ୍ୟପୀଠ, ଶାସ୍ତ୍ରକଳା-ଭାସ୍କର୍ଯ୍ୟ, ଧର୍ମ-କର୍ମର ଶ୍ରେଷ୍ଠ ପୁଣ୍ୟତୀର୍ଥ । ସୁନାର ଭାରତଭୂଇଁରେ ଶଙ୍କରାଚାର୍ଯ୍ୟ, ନାନକ, ବୁଦ୍ଧ, ଗାନ୍ଧୀଙ୍କ ସତ୍ୟ-ପ୍ରୀତି-ଅହିଂସାର ମନ୍ତ୍ରକୁ ପ୍ରତିଷ୍ଠା କରିବା କବି ବିଭୁଦତ୍ତଙ୍କ ଲକ୍ଷ୍ୟ । 'ହେ ସାରଥୀ ରଥ ରଖ'ର ପାଣ୍ଡବଶ୍ରେଷ୍ଠ ସବ୍ୟସାଚୀ ପୁନର୍ବାର ନିଜ ଦୁର୍ଜୟ ଗାଣ୍ଡୀବ ଧାରଣ କରି ଜାଗୃତ ହେବାକୁ କବି ଆହ୍ୱାନ କରିଛନ୍ତି । ଆଲୋଚ୍ୟ କବିତାଗ୍ରନ୍ଥରେ ଆବେଗ ଅପେକ୍ଷା ଯୁକ୍ତିଶୀଳ ମନନଶୀଳତା ପ୍ରକାଶ ପାଇଛି । କବି ୱର୍ଡ୍‌ସ୍‌ୱର୍ଥଙ୍କ "Poetry recollected in tranqulty"ର ମନ୍ତବ୍ୟ ଅଧିକ ପ୍ରଯୁଜ୍ୟ । 'ହେ ସାରଥୀ ରଥ ରଖ'ରେ ଯୁକ୍ତିଯୁକ୍ତ ଆବେଗ ଅପେକ୍ଷା ଯୁକ୍ତିତତା ବେଶ୍ ହୃଦ୍ୟ ।

କବି ରମାକାନ୍ତ ରଥଙ୍କ ଶବ୍ଦରେ- "ସଭ୍ୟତାର ବ୍ୟାପ୍ତି ସହିତ ଜୀବନ ଧାରଣରେ ବିଭିନ୍ନତା ବୃଦ୍ଧି ପାଇଛି ଏବଂ ବିଭିନ୍ନ ପରିବେଶରେ ମନୁଷ୍ୟକୁ ବିଶ୍ଳେଷଣ କରି ତା'ର ମୋଟାମୋଟି ଆଭିମୁଖ୍ୟ କଳ୍ପନା କରିବାର ଦାୟିତ୍ୱ ସାହିତ୍ୟିକ ଉପରେ ନ୍ୟସ୍ତ । ଏଥିପାଇଁ ଦରକାର ଅନୁସନ୍ଧାନ, ପ୍ରବୃତ୍ତି ଓ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ।" ଏ ଦୃଷ୍ଟିରୁ କବି ବିଭୁଦତ୍ତଙ୍କ କବିତାରେ ଅନୁଭବର ଶାଣିତ ରୂପରେଖ ଅତ୍ୟନ୍ତ ସୁଦୃଢ଼ । ରାମ୍ବୋଙ୍କ ମତାନୁସାରେ କବି ନିଶ୍ଚିତ ରୂପେ Voyant (Visionary) ଅର୍ଥାତ୍ ଦିବ୍ୟଦ୍ରଷ୍ଟା ହୋଇଥିବା ଆବଶ୍ୟକ । ଦିବ୍ୟ କବିତ୍ୱର ଅଧିକାରୀ ବିଭୁଦତ୍ତୀୟ କାବ୍ୟ ମାନସ 'ହେ ସାରଥୀ ରଥ ରଖ'ରେ ମିଥ୍ ଅବଲମ୍ବନ କରି କବିତାକୁ ରସୋତ୍ତୀର୍ଣ୍ଣ କରିଛନ୍ତି ଏବଂ ଆଧୁନିକ ସମାଜର ଚିତ୍ର ଅଙ୍କନ କରିଛନ୍ତି ।

ବିଭୁଦତ୍ତଙ୍କ ପ୍ରତ୍ୟେକ କବିତା ସଂକଳନରେ ବ୍ୟକ୍ତିଗତ ପ୍ରେମ କର୍ମବାଦ, ମାନବବାଦ, ଗାନ୍ଧୀବାଦ, ଜଗନ୍ନାଥପ୍ରୀତିର ଦିବ୍ୟ ଅବବୋଧ ରହିଛି । ଜୀବନର ଅଙ୍ଗେନିଭା ମୁହୂର୍ତ୍ତ, ସ୍ମୃତି ଅନୁଭୂତିକୁ ହୃଦୟର ରୁଦ୍ଧ ପ୍ରକୋଷ୍ଠରେ ସାଉଁଟି ରଖିଛନ୍ତି । ଏମିତିକି ନିରବତାର ଅକୁହା କଥାକୁ ମଧ ଶବ୍ଦରେ ବାନ୍ଧିବାରେ ଅଭିନବ ପ୍ରୟାସ କରିଛନ୍ତି । ଜୀବନର ବ୍ୟାପକ ଶୂନ୍ୟତାକୁ ଶବ୍ଦରେ ଆଙ୍କିଛନ୍ତି । କବି N.R. Hartuଙ୍କ ମତରେ "As a writer you try to listen to what others aren't saying and write about silent." ତାଙ୍କ କବିତାରେ ଯୌବନ ଓ ଋତୁର ପଦଧ୍ୱନି ସହିତ କଟକ,

ପୁରୀ, ଧଉଳି ଆଦି ସ୍ଥାନୀୟତାର ଚିହ୍ନ ରହିଛି । ଗୋପବନ୍ଧୁ, ନଚିକେତା, ତ୍ରିଶଙ୍କୁ, ଦୀନକୃଷ୍ଣ ଆଦିଙ୍କ ନାମକୁ ନେଇ ନିଛକ ପ୍ରବଣତା ରହିଛି । ରଥଯାତ୍ରା, ଦଶହରା, ଜନ୍ମାଷ୍ଟମୀ ଆଦି ପର୍ବ-ପର୍ବାଣୀକୁ ନେଇ ପରମ୍ପରାନୁଗତ-ସଂସ୍କୃତିପ୍ରାଣ ଦୃଷ୍ଟିକୋଣ ରହିଛି ।

କବି ମାନସିଂହଙ୍କ ପରେ କବି ବିଭୁଦତ୍ତଙ୍କ କବିତା ଆଧୁନିକ ଓଡ଼ିଆ କବିତା ଧାରାକୁ ଦେଇଛି ନୂତନ ପରିଚିତି । ମାନସିଂହଙ୍କ ପରି ଆବେଗକୁ ସେ ସ୍ୱତନ୍ତ୍ର ଶୈଳୀରେ ତ୍ୱରାନ୍ୱିତ କରିଥିବା ମନେହୁଏ । ସାଧାରଣ କଥିତ ଗଦ୍ୟସୁଲଭ ଭାଷାର ସ୍ୱଚ୍ଛତା ଓ ଶବ୍ଦବସାଣ ଶକ୍ତିର ପରିଚାୟକ ହୋଇଛି । ବାସ୍ତବାଭିମୁଖୀ, ଆତ୍ମବିଶ୍ଳେଷଣଧର୍ମୀ ତଥା ଅନୁଭୂତି ସର୍ବସ୍ୱ ଜୀବନ ପ୍ରତ୍ୟୟ ଓ ତୀବ୍ର ବେଦନାବୋଧର ଉପସ୍ଥାପନା ତାଙ୍କର ସମସ୍ତ କବିତାକୁ କରିଛି ଅନନ୍ୟ । କାବ୍ୟିକ ପରୀକ୍ଷାରୂପେ ତାଙ୍କ ଉଚ୍ଛୁଳା ଗୀତିମୟତା, ସଂଗୀତମୟ ସନେଟ୍, ଚିତ୍ରଶବ୍ଦ, ମିଥ୍ ଆଦିର ପ୍ରୟୋଗ କୌଶଳ ଅତ୍ୟନ୍ତ ଉତ୍କୃଷ୍ଟ । ପ୍ରକୃତିର ରୂପକୁ କବିତାର ଆଙ୍ଗିକରେ ବ୍ୟବହାର କରି କିଛି ହୃଦୟସ୍ପର୍ଶୀ ଧ୍ୱନ୍ୟାତ୍ମକ-ଶବ୍ଦ ସୃଷ୍ଟି କରିଛନ୍ତି । ପୁରୁଣା ଶିଉଳିଲଗା, ନାମହୀନ ନିଛାଟିଆ କୋଠା, କାନ୍ଥର ଶିଉଳି, ବାସିପ୍ରେମ, ନିଛାଟିଆ ଖରାବେଳ, ଆଶାର ବୋଇତ, ଝଡ଼ର ପୂରବୀ, ବେଦନାର ପଥ, ଅଶ୍ରୁ ବତାସ, ଜୁନ୍ ଦ୍ୱିପ୍ରହର, ମାଇଲ୍ ମାଇଲ୍ ରାସ୍ତା, କାର୍ତ୍ତିକର ଶେଷ ଜହ୍ନ ଶୀତ ଆଉ ପାଉଁଶ କୁହୁଡ଼ି, ମହାନଦୀ ନଈପଠା, କଟକ ବାଲିଯାତ୍ରା, ଶ୍ରାବଣର ବର୍ଷା, କଣ୍ଟା ଘାସର ଢେଉ, ମେଘ ଆକାଶ, ମୁକୁଳା ପ୍ରକୃତି, ଥୁଣ୍ଟାଗଛ, ପବନର ବେହେଲା, କୋନ୍ଦରା, ବୀଣା ଇତ୍ୟାଦି ।

କବି ବିଭୁଦତ୍ତ ଧ୍ୱନ୍ୟାତ୍ମକ ଶବ୍ଦ ଖଞ୍ଜି ଭାବାତ୍ମକ ପ୍ରତୀତ ସୃଷ୍ଟି କରି ଲେଖିଛନ୍ତି-

"ଅତୀତର ଦିହୁଡ଼ି ଜଳାଇ ସ୍ମୃତିର ପାହାଚେ ପୁଣି ରୁଣୁଝୁଣୁ କିଆଁ ତୋ
ନୂପୂର' ଯା' ଭାଷା ମଧୁର-ମଦିର ପୁଲକ ଝରା ।"

ଯୁଗ୍ମଶବ୍ଦର ପ୍ରୟୋଗକ୍ଷେତ୍ରରେ ରହିଛି-ଭେଳାଭେଳା ମେଘ, ଝରଝର ବରଷା, ଚୁପ୍‌ଚାପ୍, କୁଢ଼କୁଢ଼, ପୁଳାପୁଳା, ଦିଗ୍‌ଦିଗ୍, ମାଇଲ୍ ମାଇଲ୍, ବୁନ୍ଦାବୁନ୍ଦା, କିଟିକିଟି ଇତ୍ୟାଦି କିଛି ଅର୍ଥପୂର୍ଣ୍ଣ ଶବ୍ଦଗୁଡ଼ିକ ହେଲା- ଢଳଢଳ ମଦିରା, ଶରତର ନୀଳକଇଁ, ଶୀତଳ ଝରଣା, ଫଗୁଣର କମଳ ଇତ୍ୟାଦି ।

ଶବ୍ଦବିଧାନ କ୍ଷେତ୍ରରେ 'ମୁଁ' କୈନ୍ଦ୍ରିକ ସମ୍ବୋଧନର ବ୍ୟବହାର ରହିଛି । ଆଙ୍ଗିକ-ଆତ୍ମିକ କ୍ଷେତ୍ରରେ କବି ବିଭୁଦତ୍ତଙ୍କ କାବ୍ୟିକ ଉଚ୍ଛ୍ୱାସ ଅନନ୍ୟ । ଜୀବନର ପ୍ରତିକ୍ଷଣକୁ ନେଇ ସେ ବିଭୋର । ତାଙ୍କ ପାଇଁ ଜୀବନର ଦୁଃଖ-ସୁଖ, ଶାନ୍ତି-ଅଶାନ୍ତି, ସଫଳତା-ବ୍ୟର୍ଥତା ସବୁକିଛି ମୂଲ୍ୟବାନ । ତାଙ୍କୁ ହିଁ ନେଇ ସେ ଶବ୍ଦରାଗ ତୋଳିଛନ୍ତି

ମାର୍ଗାରେଟ୍ ଅଟଉଡ୍‌ଙ୍କ ଶବ୍ଦରେ- "If I waited for perfection, I would never write" ମତଟି ବିଭୁଦତ୍ତଙ୍କ ପାଇଁ ପ୍ରଜୁଯ୍ୟ ମନେହୁଏ । କାରଣ ସେ ମଧ୍ୟ ଉପର୍ଯ୍ୟୁକ୍ତ ଭାବଧାରାଟିକୁ ସମସ୍ତ ପାଠକଙ୍କ ଉଦ୍ଦେଶ୍ୟରେ ବିନିଯୋଗ କରିଛନ୍ତି :-

"ଜାଗ କବି ତେଜ ଅବସାଦ, ଦୁନିଆର ଦୁଃଖ-ଶୋକ ବେଦନାର ବହୁ ଉର୍ଦ୍ଧ୍ୱେ ଉଠି- / ଗାନକର ଜୀବନର ବୀଣାଯନ୍ତ୍ରେ ଅନିନ୍ଦ୍ୟ ସଂଗୀତ ।"

ଆଧୁନିକ ଓଡ଼ିଆ କବିତା ଧାରାରେ କଳ୍ପନା, ଆବେଗ, ସଂଗୀତଙ୍କ-ଗୀତିଧର୍ମୀତା, ସୌନ୍ଦର୍ଯ୍ୟବୋଧ, ମୃତ୍ୟୁଚେତନା, ବ୍ୟକ୍ତିଗତ ଅନୁଭବ ତଥା ମିଥ୍‌କୁ ନେଇ ନୂତନ କାବ୍ୟକୌଶଳକୁ ବୈଶିଷ୍ଟ୍ୟ ପ୍ରଦାନ କରିଥିବା ଜଣେ ଭାବମନସ୍କ-ଗାମ୍ଭୀର୍ଯ୍ୟପୂର୍ଣ୍ଣ କବିସତ୍ତା ହେଉଛନ୍ତି କବି ବିଭୁଦତ୍ତ । ଅନନ୍ୟ ତାଙ୍କର କବିତାର ଆବେଗ ଏବଂ ଚମତ୍କାର ତାଙ୍କର ଶବ୍ଦଗୁମ୍ଫନ ଶୈଳୀ ବ୍ୟକ୍ତିଗତ ପ୍ରେମ କ୍ରମେ ମାନବପ୍ରେମରେ, ମାନବପ୍ରେମ ପୁଣି ବିଭୁପ୍ରେମ ଏବଂ ପରିଶେଷରେ ମୃତ୍ୟୁର ପ୍ରଶାନ୍ତ ରହସ୍ୟଲୋକକୁ ଆଦରି ନେଉଛି । ତାଙ୍କ ପ୍ରତ୍ୟେକ ସୃଷ୍ଟି ଅସଂଖ୍ୟ ଆଲୋଚନା ସମୀକ୍ଷା ତଥା ଗଭୀର ଅଧ୍ୟୟନର ଅପେକ୍ଷା ରଖେ । କିନ୍ତୁ; ବିଡ଼ମ୍ବନାର ବିଷୟ କବି ବିଭୁଦତ୍ତ ପ୍ରତ୍ୟେକ ଅତ୍ୟାଧୁନିକ ଓଡ଼ିଆଙ୍କ ନିକଟରେ ଯେପରି ଭାବରେ ଜଣାଶୁଣା ହେବାକଥା ସେପରି ନ ହୋଇ ଅନାଲୋଚିତ ଅଧ୍ୟାୟ ପାଲଟିଛନ୍ତି । ତାଙ୍କ ଉପରେ ବ୍ୟାପକ ଆଲୋଚନାର ଆବଶ୍ୟକତା ରହିଛି । ସମ୍ଭବତଃ ତାହାହିଁ ହେବ ତାଙ୍କ ପ୍ରତି ସମସ୍ତ ଓଡ଼ିଆପ୍ରେମୀଙ୍କ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳୀ ।

**ଶେଷଟୀକା**


୧. କବି, କବିତା ଓ ତା'ର ପୃଷ୍ଠଭୂମି :ଶ୍ରୀ ଦୀପକ ମିଶ୍ର, ପୃ. ୧୫୨

୨. ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ : ଡକ୍ଟର ଶତ୍ରୁଘ୍ନ ପାଣ୍ଡବ, ପୃ. ୫୪

୩. ଆଧୁନିକ ଓଡ଼ିଆ କବିତା ସମୀକ୍ଷଣ : ଡକ୍ଟର ଶତ୍ରୁଘ୍ନ ପାଣ୍ଡବ, ପୃ. ୫୪

୪. ନବଯୁଗର କବି ଓ କାବ୍ୟଧାରା, ଜାନକୀ ବଲ୍ଲଭ ମହାନ୍ତି ଭରଦ୍ୱାଜ, ପୃ. ୧୫୮

୫. ନବଯୁଗର କବି ଓ କାବ୍ୟଧାରା, ଜାନକୀ ବଲ୍ଲଭ ମହାନ୍ତି ଭରଦ୍ୱାଜ, ପୃ. ୧୫୭

୬. ଓଡ଼ିଆ ସାହିତ୍ୟର ଇତିହାସ, ଡକ୍ଟର ବେଣୁଧର ପାଢ଼ୀ, ପୃ. ୪୧୬

୭. ଆଧୁନିକ କବିତାର ଦିଗ୍‌ଦର୍ଶନ, ସଂପାଦନା-ଅପୂର୍ବ ରଞ୍ଜନ ରାୟ, ପୃ. ୫୦

୮. ଆଧୁନିକ କବିତାର ଦିଗ୍‌ଦର୍ଶନ, ସଂପାଦନା-ଶ୍ରୀଅପୂର୍ବ ରଞ୍ଜନ ରାୟ, ପୃ. ୧୪

୯. କବି, କବିତା ଓ ତା'ର ପୃଷ୍ଠଭୂମି, ଶ୍ରୀ ଦୀପକ ମିଶ୍ର, ପୃ. ୧୫୨

୧୦. କବି, କବିତା ଓ ତା'ର ପୃଷ୍ଠଭୂମି, ଶ୍ରୀ ଦୀପକ ମିଶ୍ର, ପୃ. ୧୩

୧୧. ଆଧୁନିକ କବିତାର ଦିଗ୍‌ଦର୍ଶନ, ସଂପାଦନା-ଶ୍ରୀ ଅପୂର୍ବ ରଞ୍ଜନ ରାୟ, ପୃ. ୯୨

# ଫନୀ ମହାନ୍ତିଙ୍କ "ବିଷାଦ ଯୋଗ"ରେ ବିଷାଦବାଦୀ ଚେତନାର ସ୍ୱର

ଦୀପ୍ତିପ୍ରଭା ଶଙ୍ଖୁଆ

ଓଡ଼ିଆ କବିତା ଜଗତରେ ଫନୀ ମହାନ୍ତିଙ୍କ ନାମ ଏକ ଅବିସ୍ମରଣୀୟ ନାମ । ପାଞ୍ଚ ଦଶନ୍ଧିର ନିରବଚ୍ଛିନ୍ନ ସାଧନାକୁ ଅତିକ୍ରମ କରି ପ୍ରେମଠାରୁ ଦର୍ଶନର ଅତିକାୟ ସତ୍ତାକୁ ବିଞ୍ଚି ଦେଇଛନ୍ତି ନିଜ କବିତାରେ । କବିତାକୁ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରି ସେ ପାଇଛନ୍ତି ଏଇ ବୈଦାନ୍ତିକ ଦର୍ଶନ । ତାଙ୍କର "ବିଷାଦ ଯୋଗ" କବିତାଟି ଓଡ଼ିଆ କବିତାରେ ଏକ ବିଷାଦବାଦୀ କବିତାର ଧାରା ପ୍ରବାହିତ କରି ନେଉଥିବା ବେଳେ ମଣିଷ ଜୀବନର ସୂକ୍ଷ୍ମତତ୍ତ୍ୱଗୁଡ଼ିକୁ ବିଶ୍ଳେଷଣ ସହ ବିଭିନ୍ନ ତତ୍ତ୍ୱଗୁଡ଼ିକ ପ୍ରକାଶିତ ହୋଇଛି ଏହି କବିତା ମାଧ୍ୟମରେ । ଏହି ପ୍ରଖ୍ୟାତନାମୀ ଲେଖକଙ୍କ ଜନ୍ମ ଖୋର୍ଦ୍ଧା ଜିଲ୍ଲା ଫକୀରପଡ଼ାରେ ୧୯୪୪ ମସିହାରେ । ତାଙ୍କର ବିଭିନ୍ନ କବିତା ଗ୍ରନ୍ଥ ଗୁଡ଼ିକ ମଧ୍ୟରେ "ମାନଚିତ୍ର", "ରୁବି ପାଇଁ କୋଡୋଟି କବିତା", "ମାୟା ଦର୍ପଣ", "ପ୍ରିୟତମା", "ଚିତ୍ର ପ୍ରତିମା", "ମୃଗୟା", "ଅହଲ୍ୟା", "ବିଦଗ୍ଧ ହୃଦୟ" ଓ "କେବଳ ପ୍ରେମ"ରେ ଇତ୍ୟାଦି । ତନ୍ମଧ୍ୟରୁ "ବିଷାଦ ଯୋଗ" କବିତାଟିର ସାରମର୍ମ ମନୁଷ୍ୟର ଅସ୍ତିତ୍ୱକୁ ବହନ କରିଛି ।

ମନୁଷ୍ୟ ଏକ ସାଂସାରିକ ପ୍ରାଣୀ ହୋଇଥିବାରୁ ବିଷୟା ବାସରେ ଅବଶିଷ୍ଟ ଜୀବନକାଳ ଘାଣ୍ଟି ଚକଟି ହୋଇ ନିଜର ଇପ୍ସିତ ଲକ୍ଷ୍ୟ ପ୍ରାପ୍ତି ଦିଗରେ ନିଜକୁ ସମ୍ପୂର୍ଣ୍ଣ ନିୟୋଜିତ କରି ସୃଷ୍ଟିପ୍ରଭାରେ ଉତ୍ସର୍ଗୀକୃତ ଜୀବନ ବିତେଇବା ସମ୍ଭବପର ମନେହେଉନି । ଶୃଙ୍ଖଳରୂପକ ବନ୍ଧନରୁ ମୁକ୍ତ ନହେବା ଯାଏଁ ମୁକ୍ତି ପାର୍ବଣରେ ଅୟମାରମ୍ଭ ପର୍ବ ସୁଦୂର ପରାହତ । ଏହି ବନ୍ଧନ ହିଁ ଯାବତୀୟ ଦୁଃଖର କାରଣ, ବାହ୍ୟିକ ସର୍ତ୍ତ ଦ୍ୱାରା ଯେତେଦିନ ଯାଏଁ ମଣିଷ ବନ୍ଧାପଡ଼ିଯିବ, ସମ୍ପୂର୍ଣ୍ଣ ସ୍ୱାଧୀନ ଓ ସଂହତିପୂର୍ଣ୍ଣ ଜୀବନର ମୃଣ୍ମୟ ଚିତ୍ର ଗଢ଼ିତୋଳିବା ଅସମ୍ଭବ । ସୌନ୍ଦର୍ଯ୍ୟର ଉପାସକ ହେବା ମଧ୍ୟ ଏକ ଦୁଃସାଧ୍ୟ ବ୍ୟାପାର । ସଚରାଚର ବିଶ୍ୱ ମଣିଷ ପାଇଁ ଏକ ଅବରୁଦ୍ଧ ବନ୍ଦୀଶାଳା । ତା ଭିତରେ ମଣିଷ ବନ୍ଦୀଟିଏ ପରି ବଞ୍ଚିରହିଛି । ବନ୍ଦୀଗୃହରୁ ଖସି ପଳାଇବା ପାଇଁ ଅହରହ ସଂଗ୍ରାମରତ ମଣିଷର ପରାଜୟ ସ୍ଥିର ନିଶ୍ଚିତ ଜୟମାଲ୍ୟ । ଯଦିଓ ସେ ଭଲ ଭାବେ ଜାଣେ ଯେ ସୁଖ-ଦୁଃଖାଦି ତା ଆତ୍ମାର ଧର୍ମ ନୁହେଁ, ଅନ୍ତଃକରଣର

ଧର୍ମ, ତଥାପି ନିଜର ଆତ୍ମିକ ପରିଚୟ ସମ୍ପର୍କରେ ଅନଭିଜ୍ଞ ମଣିଷ ଆଜନ୍ମ ଧାରଣା କରି ଆସିଛି ଯେ ସେ ହିଁ ସୁଖୀ, ସେ ହିଁ ଦୁଃଖୀ । ଭୋଗ ଓ ବୈରାଗ୍ୟର ମଧ୍ୟବିନ୍ଦୁରେ ତାର ଅସହାୟ ବିକଳ ସ୍ଥିତି, ଯାହା ଦୈବୀକୃତ । ପୂର୍ବଜନ୍ମାର୍ଜିତ କର୍ମ ଫଳରେ ହିଁ ତାର ଅଖଣ୍ଡ ଅଧିକାର । ଅଥଚ ତା ନିଜର ଯେ ଜନ୍ମ ନାହିଁ କି ମୃତ୍ୟୁ ନାହିଁ, ମୃତ୍ୟୁ ପରବର୍ତ୍ତୀ ଅବସ୍ଥା ସମ୍ପର୍କରେ ତାର କୌଣସି ଧାରଣା ନାହିଁ, ଶରୀରର ବିନାଶ ପରେ ପୁନଃ ପୁନଃ ଜନ୍ମିବାର କୌଣସି ସମ୍ଭାବନା ନାହିଁ, ସୁଖ-ଦୁଃଖ, ଆନନ୍ଦ-ବିଷାଦର କୌଣସି ଅବକାଶ ନାହିଁ । ତଥାପି ବିମୃତ ମଣିଷଟି ପ୍ରତିରବିକୁ ଛବି ମନେକରି ଶୋକ ଓ ବିଷାଦରେ ଜର୍ଜରିତ ହୁଏ, ଆନନ୍ଦ ଓ ଐଶ୍ୱର୍ଯ୍ୟରେ ଉଲ୍ଲସିତ ହୁଏ, ଶ୍ରବଣ ମଧୁର ବାକ୍ୟରେ ବିମୁଗ୍‌ଧ ହୁଏ, ଭୋଗ ଓ କାମନାରେ ଆସକ୍ତ ହୁଏ । ସମ୍ପର୍କନୈତ ଆସକ୍ତି ସେ ସକଳ ବନ୍ଧନର କାରଣ, ସେ ବ୍ୟଥାକୁ ଭୁଲିଯାଇ କ୍ଷଣିକ ସୁଖଭୋଗ ଆଶାରେ ଚଳଞ୍ଚଳ ହୋଇ ଉଠେ ମଣିଷ । ସୁଖଭୋଗ ଶେଷରେ ପୁନରାବର୍ତ୍ତନ ଯେ ଅବଶ୍ୟଭାବୀ, ଏହା ତାର ସ୍ମରଣକୁ ଆସେ ନାହିଁ । ଉଦ୍‌ବେଗ ଶୂନ୍ୟ, ସ୍ପୃହାଶୂନ୍ୟ, ମମତାଶୀସ ଓ ଉଦାସୀନ ଜୀବନର ବାହାରେ ହିତାହିତ ଜ୍ଞାନଶୂନ୍ୟ ଅସମର୍ଥ, ଅସ୍ତନାନୁଚିତ ମଣିଷଟି କେତେ ଦୁର୍ବଳ, କେତେ ଅସହାୟ !

ଦେହ ଭୂମିରେ ତଲ୍ଲୀନ ଥିବା ଯାଏଁ ବ୍ରହ୍ମବିଦ୍, ବ୍ରହ୍ମବିଦ୍‌ବର, ବ୍ରହ୍ମବିଦ୍ ବରିୟାନ୍, ବ୍ରହ୍ମବିଦ୍ ବରିଷ୍ଠାର ପ୍ରକୃତ ଅର୍ଥ ବୁଝିବା ମଣିଷ ପକ୍ଷେ ଅୟାସସାଧ । ବିମୋହିତ ମଣିଷ ସବୁ ଯୁଗରେ ସବୁ କାଳରେ ଦୁଃଖ ଭୋଗ କରିଥାଏ । ତାର ଇହକାଳ ଓ ପରକାଳ ବିନଷ୍ଟ ହୋଇଯାଏ । ସହସ୍ର ସହସ୍ର ବର୍ଷ ଯାଏଁ ଶାପଗ୍ରସ୍ତ ଅବସ୍ଥାରେ ମଣିଷ ଥିବାରୁ ଭୋଗ ବିଳାସର ଅନ୍ତ ହୋଇ ନଥାଏ । ବିବେକ ବୈରାଗ୍ୟ ଶବ୍ଦଟି ତା ପକ୍ଷେ ନିରର୍ଥକ ହୋଇ ରହିଥାଏ ।

ମାୟା ବନ୍ଧନରୁ ଲୁଚି ଛପି, ଖସି ପଳାଇଯିବା ପାଇଁ ମନୁଷ୍ୟ ଯେତେ ଚେଷ୍ଟା କଲେ ମଧ ତାହା ସମ୍ଭବ ନୁହେଁ । ଯେଉଁ ଅନନ୍ତ ଯୁଗରୁ ମଣିଷର ହାତମୁଠାରେ ଆକସ୍ମିକ ଭାବେ ଧରାପଡ଼ିଥିବା ଧରାବନ୍ଧା, ମପାଚୁପା ଜୀବନ ଯେ ଏକ ଛଳନାପୂର୍ଣ୍ଣ ବିଷାଦଗ୍ରସ୍ତଳ ତାହା କାରାମୟ ଜୀବନ, ସେତିକି ବୁଝିବାକୁ ମନୁଷ୍ୟ ଅପାରଗ । ଅଜ୍ଞତା, ଅପାରଗଣ, ଅସଫଳତା ପାଇଁ ଶୋକ ଜର୍ଜର ଅବସ୍ଥାରେ ହତଂଭବ ହୋଇ କେଉଁ ଅପରିକଳ୍ପିତ ଦୁର୍ବାନ୍ତ ଶକ୍ତିର ମର୍ଜି ଉପରେ ନିର୍ଭର ହେବାକୁ ଏ ମଣିଷ ସଭ୍ୟତା ବାଧ । ଅର୍ଥହୀନ ଅସୀମ ନୀଳାକାଶ ତଳେ ଅଶାନ୍ତ ନିଃଶବ୍ଦ ମପାଚୁପା ଜୀବନର ଅୟମାରମ୍ଭରେ ସବୁ ଜଣେ ଜଣେ ମୁଖାପିନ୍ଧା, ଯାନ୍ତ୍ରିକ, ଅସଫଳ ନାୟକ ।

ମଣିଷର ଦୁଃଖ କୁରୁକ୍ଷେତ୍ରର ସେହି କର୍ତ୍ତବ୍ୟହୀନ ଅର୍ଜୁନର ନିଃସଙ୍ଗ ଭାରାକ୍ରାନ୍ତ ଦୁଃଖ । ଏହି କ୍ଷେତ୍ରରେ କବିଙ୍କର ଗୋଟିଏ ପଂକ୍ତି ଉଦ୍ଧାର କରାଯାଇପାରେ ।
"ଯୁଆଡ଼କୁ ଚାହେଁ, ନିର୍ଜନାତାର / ପ୍ରଲଂବିତ ତ୍ୱାଳପତ୍ର, ମାନସ / ବୈଧବ୍ୟ, କ୍ରୁର, ଦୈବୀ ଉପହାସ / ଶୂନ୍ୟ ମଣ୍ଡଳରେ ଘୂର୍ଣ୍ଣାୟିତ / ମାୟାଚକ୍ରର ଆକୋପ ଆଡ଼ମ୍ବରମୟ / ଦୃଶ୍ୟ ଯାଇ ଯଥାର୍ଥ ସ୍ୱରୂପ / ବର୍ଣ୍ଣିବାକୁ ସାଧ ନାହିଁ କାର / ମର ଜଗତରେ ।"

ଅର୍ଜୁନର ନିଃସଙ୍ଗତା, ଶୂନ୍ୟତା ସର୍ବାତଃକରଣରେ ଅର୍ଜୁନର ନୁହେଁ । ବିଷାଦଯୋଗର ଅର୍ଜୁନ ନିଃସହାୟ, ନିରୁପାୟ ନୁହେଁ । ଯେତେବେଳେ କୌରବ ଓ ପାଣ୍ଡବ ମଧ୍ୟରେ ଯୁଦ୍ଧର ଆରମ୍ଭ ହେବାକୁ ଥାଏ ସେତେବେଳେ ଅର୍ଜୁନ ନିଜର ଆତ୍ମୀୟ ସ୍ୱଜନଙ୍କ ହତ୍ୟାର ଦୋଷ ନିଜ ମୁଣ୍ଡକୁ ନେବାକୁ ଉଚିତ୍‌ବୋଧ ମନେ କରିନାହିଁ । ବରଂ ନିଜକୁ ଦୋଷୀ ମନେ କରି ଯୁଦ୍ଧରୁ ବର୍ତ୍ତିବା ପାଇଁ ରାସ୍ତା ଖୋଜେ । ସେହି ସମୟରେ କୃଷ୍ଣ, ଯିଏ କି ଅର୍ଜୁନର ସାଥୀ ତଥା ଓ ସମଗ୍ର ଧରାଧାମର ଯିଏ ନିୟନ୍ତ୍ରଣ କର୍ତ୍ତା । ଯାହାର ଆଦେଶରେ ସମଗ୍ର ପୃଥିବୀ ଲୀଳାଖେଳା କରେ । ବରାଭୟ ମୁଦ୍ରାର ଅଞ୍ଚଳରେ ଚିରକାଳ ବନ୍ଧା ଅର୍ଜୁନ ସେ କୃଷ୍ଣଙ୍କର ସାର୍ଥକ ଅଂଶବିଶେଷ । ତାର ଆତ୍ମା, ଶରୀର ନିଶ୍ୱାସ ଓ ପ୍ରଶ୍ୱାସରେ କୃଷ୍ଣ ହିଁ କୃଷ୍ଣ । କୃଷ୍ଣ ଭାବରେ ପ୍ରମତ୍ତ ଅର୍ଜୁନର ଦୁଃଖ କ'ଣ ? ବିଷାଦ କ'ଣ ? ସଂକଟ କ'ଣ ? ଅର୍ଜୁନର ଯାବତୀୟ ସଂକଟ ଓ ସାଂସାରିକ ଦୁଃସ୍ଥିତି ସମୟରେ ସଂକଟ ମୋଚନକାରୀ କୃଷ୍ଣ ହିଁ ଛାଇପରି ତା ପାଖେ ପାଖେ ଥିଲେ । ସବୁ ସଂକଟ ଓ ସମସ୍ୟାର ମର୍ଯ୍ୟାଦାବନ୍ତ, ସହଜ, ସରଳ, ସମାଧାନ ଓ ସାମ୍ଭାବ୍ୟ ଦୁଃଖ ଓ ବିଷାଦର ଉପଶମ ସ୍ୱତଃ ହୋଇପାରୁଥିଲା । ଯୁଦ୍ଧ ଭୂମିରେ କୃଷ୍ଣ ଅନୁପସ୍ଥିତ ଥିଲେ । ଅର୍ଜୁନ ଜଣେ ସାଧାରଣ ମଣିଷ ନିଜ ଭାଗ୍ୟ ନିଜେ ଆଦରି ରହିଥାନ୍ତେ, ଇତିହାସର ଦିଗ ବଦଳି ନଥାନ୍ତା ।

କିନ୍ତୁ ବର୍ତ୍ତମାନ ସମୟର ମଣିଷ ଶତାବ୍ଦୀର ଶେଷ ଅଙ୍କରେ ଏବଂ ଅନ୍ୟ ଏକ ନୂତନ ଅଜ୍ଞାତ ଶତାବ୍ଦୀର ଅୟମାରମ୍ଭ ପୂର୍ବରୁ ଯେଉଁ ନୈତିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇ ସଂକଟାପନ୍ନ ଅବସ୍ଥାରେ କାଳାତିପାତ କରୁଛି, ତାର ସମାଧାନର ରାସ୍ତା ତାକୁ ଜଣାନାହିଁ । ଘଡ଼ିସନ୍ଧି ମୁହୂର୍ତ୍ତରେ ଠିଆ ହେବା ପାଇଁ ବର୍ତ୍ତମାନ ସମୟରେ କୃଷ୍ଣ ଭଳି କେହି ପାଖରେ ନାହାନ୍ତି । ତା ଭିତରେ, ବାହାରେ ଝଡ଼ର ବାରିପାତ । ମଣିଷ ଏତେ ନିଃସହାୟ ଯେ ନିଜ ସମସ୍ୟାରୁ ନିଜକୁ ମୁକୁଳାଇବାକୁ ଅକ୍ଷମ । ଯେତେ ଚେଷ୍ଟା

କଲେ ସୁଦ୍ଧା ସେ ସେଥିରୁ ନିଜକୁ ମୁକୁଳାଇ ପାରୁନାହିଁ । ପୋକଖିଆ ରୋଗଜୀର୍ଣ୍ଣ ବାଡ଼ି ପରି ତାର ଅବସ୍ଥା । ଯେତେ ଚେଷ୍ଟା ମଧ୍ୟ ସେ ଏହି ବିରକ୍ତିକର ପରିସ୍ଥିତିରୁ ନିଜକୁ ମୁକୁଳାଇ ନପାରି ସଦାସର୍ବଦା ସଂକୁଳ ପରିସ୍ଥିତିରେ ଗତି କରି ଚାଲୁଛି, ତାର ନିଜସ୍ୱ ସତ୍ତା ନାହିଁ ।

କବି ମଣିଷ ଜୀବନ କେବଳ ଲୋଭନୀୟ ମାଂସପେଶୀ ନୁହେଁ । ଅସ୍ଥିମତା ବି ଜୀବନର ମହତ୍ତ୍ୱପୂର୍ଣ୍ଣ ଅଂଶବିଶେଷ । ମଣିଷ ଶରୀରର ପ୍ରତି ଅଂଶ ଦିନେ କାହାରି କାମରେ ଲାଗିବ, ଯଦିଓ ରକ୍ତ ମାଂସ ପଚିସଢ଼ି ମାଟିରେ ମିଶିବା ଅନିବାର୍ଯ୍ୟ । ଧରାଧାମରୁ ପୁତିଗନ୍ଧମୟ ଶରୀର ଦିନେ ନା ଦିନେ ବିଲୁପ୍ତ ହୋଇଯିବ । ମୃତ୍ୟୁ ଧ୍ରୁବ-ନିଶ୍ଚିତ ଜାଣି ବି ସୃଷ୍ଟିକ୍ରିୟାରେ ପ୍ରମତ୍ତ ରହିବାକୁ କାହିଁକି ଏ ମୋହଗ୍ରସ୍ତ ମନ ସର୍ବଦା ଡହଳ ବିକଳ ହୁଏ, ସେ ବୁଝିପାରେନି । ଅବଶ୍ୟ ଭଲ ମଣିଷଟି ନିଃସ୍ୱାର୍ଥପର ସଚ୍ଚୋଟ ମଣିଷଟି ତାର ମହତ୍ତ୍ୱ ସମ୍ପର୍କରେ ସଚେତନ ଥାଇ ବି କେଉଁ ବାଞ୍ଛିତ ଲକ୍ଷ୍ୟ ପ୍ରାପ୍ତିର ଆଶାରେ ଅହର୍ନିଶ ସଂଗ୍ରାମ କରୁଥାଏ, ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବା ପାଇଁ ମନରେ ଆଶା ବାନ୍ଧିଥାଏ, ଅଥଚ, ଏଣେ କେଉଁ ଅଜ୍ଞାତ, ଅପରିଚିତ ଅଦୃଶ୍ୟର ହାତରେ କ୍ଷୀଣ ଆଲୋକବର୍ତ୍ତିକାଟିଏ ପରି ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ ସାରା ଜୀବନ କାଳ, ସାରା ମରଣକାଳ ।

ବିଫଳତାର ଆଶଙ୍କା ଓ ଆକ୍ରମଣରୁ ବେଖାତିର କରି ଅଶ୍ରୁର ଗଙ୍ଗାରେ ଅବଗାହନ କରୁଛି ଓ ଶୋକ ପାଳନ କରୁଛି ନିଷ୍ଠାର ସହ ପ୍ରାୟଶ୍ଚିତ କରିବାକୁ ନିଜକୁ । ନୈତିକ ଅଧଃପତନର ଶୋକନୀୟ ପରିଣତି ପାଇଁ ସେହି ଛଳନାମୟୀ ମଣଷମାନଙ୍କୁ ଈଶ୍ୱର କେବେ କ୍ଷମା ଦେବେ ନାହିଁ । ସ୍ୱାର୍ଥାନ୍ୱେଷୀ ମଣିଷ ନିଜର ଅପକର୍ମରୁ ମୁକ୍ତି ପାଇବାକୁ ସତତ ଚେଷ୍ଟା କଲାବେଳେ ସେ କଦାପି ସେଥିରୁ ନିସ୍ତାର ପାଇପାରିନାହିଁ । ଜନ୍ମମୃତ୍ୟୁର ଚକ୍ରବ୍ୟୁହରେ ସେ ସର୍ବଦା ଘାଣ୍ଟି ହେଉଥିବା ବେଳେ ମୃତ୍ୟୁ ପରିଭାଷାକୁ ବୁଝିବାରେ ଅସମର୍ଥ । ବାସ୍ତବରେ ମରଣର ଚିତ୍ର ନାଁ କେଉଁ ଭାଷାରେ, କେଉଁ ଶବ୍ଦରେ ନା କୌଣସି ବର୍ଣ୍ଣନା ଦ୍ୱାରା ସମ୍ଭବ ହୋଇପାରିବ । କବି ଏହି କାବ୍ୟରେ ମୃତ୍ୟୁ ଚେତନା ସହ ସ୍ୱାର୍ଥବାଦୀ ମଣିଷର ଆସୁରିକ ଜାବତୀୟ ଚିତ୍ରକୁ ପାଠକମାନଙ୍କ ସମ୍ମୁଖରେ ଗୋଟିଏ ଖୋଲା ବହି ସଦୃଶ ଉନ୍ମୁକ୍ତ କରି ରଖିଛନ୍ତି । ମଣିଷ ସବୁ ବିଷାଦ ମଧ୍ୟରେ ରହି ପୁଣି ଚାହେଁ ତାକୁ ଯିଏ ଆଶ୍ୱାସନା ଦେଉ କି ଚାହେଁ ତାକୁ କିଏ ଦୁଃଖରୁ ମୁକ୍ତି ପାଇଁ ବାଟ ଦେଖାଉ । ଅତଏବ, ବିଷାଦ ସବୁଦିନ

ମଣିଷର ସମ୍ମୁଖରେ ରହିଥାଏ, ପ୍ରତିଟି ମୁହୂର୍ତ୍ତରେ ନିଜ ଆଡ଼କୁ ଆକର୍ଷିତ କରିଥାଏ, କବିଙ୍କ ଭାଷାରେ ଏପରି କୌଣସି ମଣିଷ ନାହିଁ ଯିଏ କି ବିଷାଦରୁ ମୁକ୍ତି ପାଇଛି । ସମସ୍ତେ ବିଷାଦରେ ଜଡ଼ିଭୂତ ହୋଇ ନିଜର ସମସ୍ତ ଜୀବନ, ଦୁଃଖ, ଶୋକରେ ଅତିବାହିତ କରିଛନ୍ତି । ଜୀବନର ଗୋଟିଏ ସୂର୍ଯ୍ୟାଲୋକରୁ ସୂର୍ଯ୍ୟାସ୍ତ ଯାଏ ମଣିଷ ଅବିରତ ଚେଷ୍ଟା କରୁଥାଏ ଯେ ସେ କେତେବେଳେ ନିଜକୁ ସେହି ମରଣ ଯନ୍ତାରୁ ଉଦ୍ଧାର କରି ଏକ ନୂତନ ସୂର୍ଯ୍ୟାଲୋକର ସନ୍ଧାନରେ ନିଜକୁ ବ୍ରତୀ କରିବ, ସବୁ ସତ୍ତ୍ୱେ ସେ ବିଫଳ । ନିୟତିର ନିଷ୍ପତ୍ତି ନିକଟରେ ହାର ମାନିଯାଏ, ପୁଣି ବିଷାଦକୁ ସୁଖର ବରଣମାଳା ପରି ଗ୍ରହଣ କରେ । ତା ସମ୍ମୁଖରେ କେବଳ ଥାଏ ଦୁଃଖଗ୍ଳାନି କଷ୍ଟ ଆଉ ସେହି ଦୁଃଖଗ୍ଳାନିରୁ ନିଜକୁ ମୁକ୍ତି ଦେବାକୁ ଯାଇ ସେ ପାଲଟିଯାଏ ସଂସାରର ସମସ୍ତ ମଣିଷ ନିୟତିର କ୍ରିଡ଼ନ ପରି । ମଣିଷ ଯେତେ କବଚ ଧାରଣ କଲେ, କି କୁଣ୍ଡଳ ଧାରଣ କଲେ ମଧ ଶେଷରେ ମୃତ୍ୟୁ ହିଁ ତାକୁ ବରଣ କରିନିଏ ।

ଏହି ବିବରଣୀର ନାନା ଅନ୍ତ ଅଛି, ଯାହା ଧାରାବାହିକ କ୍ରମରେ ଆଗେଇଚାଲିଛି ପ୍ରୀତିରୁ ପ୍ରୀତି ଆଗେଇଯାଏ ପୁଣି ସେ ସମୟର ମଣିଷକୁ ବିଷାଦର ବନ୍ୟା ସ୍ରୋତରେ ଆଗେଇ ନେଇ ଏକ ଭିନ୍ନ ଇଲାକାକୁ ନିକ୍ଷିପ୍ତ କରିବା ଉଦ୍ଦେଶ୍ୟରେ । ସମୟର ସ୍ରୋତ ଓ ମଣିଷ ଜୀବନ ବିଷାଦମୟ ହୋଇ ତା ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଏପରି ଧୂସର କରିଦିଏ ସେ କଳନା କରିପାରେ ନାହିଁ ଯେ ସେ କ'ଣ କରିବ । ଶେଷରେ କବି ଏହି ଭାବ ପୋଷଣ କରିଛନ୍ତି ଯେ, ଏପରି ଏକ ମଣିଷ ଏହି ଧରାଧାମରେ ଜନ୍ମ ହେଉ, ଯେ ସମସ୍ତ ବିଷାଦକୁ ଚିରି ଅନ୍ଧକାର ରାତ୍ରିର ଅନ୍ଧକାରକୁ ଛିନ୍ନ କରି ଏକ ନୂତନ ଇତିହାସର ଆରମ୍ଭ ହେଉ, ଯାହାର ନୂତନ ଆଲୋକରେ ଏ ସଂସାର ଆଲୋକମୟ ହେଉ । 'ବିଷାଦଯୋଗ' କବିତାଟି ମଣିଷର ଜନ୍ମଠୁଁ ମୃତ୍ୟୁ ପର୍ଯ୍ୟନ୍ତ ବିଷାଦ୍ କିପରି ତାର ସମସ୍ତ ଜୀବନକୁ ଆଛାଦିତ କରି ରଖିଛି ଓ ଜନ୍ମମୃତ୍ୟୁ ସମସ୍ତ ତତ୍ତ୍ୱକୁ କବି ନିଜ କବିତାରେ ପ୍ରକାଶ କରିଛନ୍ତି । ଏହି କବିତାରେ ନିଜ ବିଷାଦ ବିଭିନ୍ନ ରୂପକୁ ବିଭିନ୍ନ ଦିଗରୁ ତର୍ଜମା କରିବା ସହ ମୃତ୍ୟୁର ପ୍ରକୃତ ରୂପକୁ ଦେଖାଇବାରେ ସମର୍ଥ ହୋଇପାରିଛନ୍ତି । ତେଣୁ ଏହି କବିତାଟି ବିଷାଦବାଦୀ କବିଙ୍କର ଏକ ବିଷାଦମୁଖୀ ଚେତନାକୁ ପ୍ରସାରିତ କରାଇଛି । ମଣିଷର ବିଷାଦକୁ କବି ଏକ ସୂକ୍ଷ୍ମ ଦୃଷ୍ଟିକୋଣରୁ ବିଚାର କରିଛନ୍ତି, ଯାହା ତାଙ୍କ କବିତାରେ ସ୍ପଷ୍ଟ ବାରି ହୋଇପଡ଼େ ।

# କବି ନୀଳାଦ୍ରି ଭୂଷଣ ହରିଚନ୍ଦନ

ଡ. ପ୍ରିୟରଂଜନ ପଟ୍ଟନାୟକ

"ବଗିଚା ସୁନ୍ଦର ହୋଇ ରହୁ ଚିରକାଳ
ଖୁଂଟା ଗଛର ଅବେଶୋଷକୁ ଲୁଚାଇ ଦେଇ
ଘୋଷଣା କରୁ ସୁନ୍ଦର ହିଁ ସତ୍ୟ ।"
(ବଗିଚା, ଇତିହାସ ଲେଖିବାର ମୁହୂର୍ତ୍ତ)

ଯାହା ସୁନ୍ଦର ତାହା ସତ୍ୟ ଅର୍ଥାତ୍ ସତ୍ୟ ହିଁ ସବୁବେଳେ ସୁନ୍ଦର । ଏମିତି ସତ୍ୟ-ସୁନ୍ଦର ରେ ଭରା ପୃଥିବୀଟିଏ ଗଢ଼ିବାର ବା ଏଇ ପୃଥିବୀକୁ ସତ୍ୟ-ସୁନ୍ଦରରେ ଭରିବାର ସାହସ ତଥା ପରିକଳ୍ପନା ଯିଏ କରିପାରେ ସିଏ ହିଁ କବି । କବି ନୀଳାଦ୍ରି ଭୂଷଣ ହରିଚନ୍ଦନ ଏଇ ସତ୍ୟ-ସୁନ୍ଦର ମନ୍ତ୍ରରେ ମାଟି-ମଣିଷ-ପ୍ରକୃତିକୁ ଦୀକ୍ଷିତ କରିବାର ସାହସ ରଖନ୍ତି । ଷାଠିଏ ପରବର୍ତ୍ତୀ ସମୟରେ ନୀଳାଦ୍ରି ଭୂଷଣଙ୍କ କାବ୍ୟ ଜୀବନର ଉନ୍ମେଷ ଘଟି ସତୁରୀ ପରବର୍ତ୍ତୀ ସମୟରେ ତାଙ୍କ କାବ୍ୟଜଗତ ବହୁଳ ପ୍ରସାରିତ ହୋଇଉଠେ । ଚିଲିକା କୂଳବର୍ତ୍ତୀ ଗ୍ରାମରେ ଜନ୍ମିତ କବି ପ୍ରକୃତି ପ୍ରେମରୁ ନିଜକୁ ମୁକୁଳେଇ ନେବେ ବା କିପରି, ତେଣୁ ତ ତାଙ୍କ କବିତାରେ ପ୍ରକୃତି ପ୍ରତି ସୃଷ୍ଟି ହୋଇଛି ଗଭୀର ସୌନ୍ଦର୍ଯ୍ୟବୋଧ, ଯାହା ତାଙ୍କ କାବ୍ୟ କବିତାକୁ କରିଛି ପ୍ରାଣବନ୍ତ ।

ସପ୍ତମ ଶ୍ରେଣୀ ପଢୁଥିବା ସମୟରେ 'ମୀନା ବଜାର' ରେ ତାଙ୍କର ପ୍ରଥମ କବିତା 'ବ୍ୟର୍ଥ କଳ୍ପନା' ପ୍ରକାଶିତ ହୁଏ । ପରେପରେ ଗୋଦାବରୀଶ ବିଦ୍ୟାପୀଠ (ହାଇସ୍କୁଲ)ରେ ଅଧ୍ୟୟନ ସହ 'କଲ୍ୟାଣୀ', 'ନବଜୀବନ', 'ଆସନ୍ତାକାଲି (କିଶୋର ବିଭାଗ)' ପତ୍ରିକାରେ କବିତା ପ୍ରକାଶ ପାଇ ଚାଲେ । ପୁରୀର ଏସ୍ ସି ଏସ୍ କଲେଜ ଅଧ୍ୟୟନ ସମୟରେ ମଧ୍ୟ ରବିବାର ପ୍ରଜାତନ୍ତ୍ର, ରବିବାସରୀୟ କଳିଙ୍ଗ, ଆସନ୍ତାକାଲି, ନବରବି, ଦିଗନ୍ତ ଆଦି ପତ୍ରିକାରେ ପୃଷ୍ଠାମଣ୍ଡନ କରେ ତରୁଣ ନୀଳାଦ୍ରି ଭୂଷଣଙ୍କ କବିତା । ୧୯୬୭ ମସିହାରେ 'ଝଙ୍କାର' ପତ୍ରିକାରେ 'ଚର୍ଯ୍ୟାଗୀତି' ନାମରେ କବିତା ପ୍ରକାଶିତ ହୋଇ ବହୁ ପାଠକୀୟ ଆଦୃତି ଲାଭ କରେ । ଯଦ୍ୟପି ପୂର୍ବରୁ ଅନେକ କବିତା ରଚନା କରି ପ୍ରକାଶ ପାଇଥିଲେ ମଧ୍ୟ ଏହି 'ଚର୍ଯ୍ୟାଗୀତି' କବିତା ହିଁ କବିଙ୍କୁ କବିତା ଜଗତ ଆଡକୁ ଟାଣିନେଇଥିଲା । ଖ୍ରୀଷ୍ଟ ମହାବିଦ୍ୟାଳୟ ଓ ରେଭେନ୍ସା ମହାବିଦ୍ୟାଳୟ ଅଧ୍ୟୟନ କାଳରେ ରତ୍ନାକର ଚଇନି, ଅର୍ଚ୍ଚନା

ନାୟକ,ମାଳବିକା ରାୟ,ପ୍ରଶାନ୍ତ ନନ୍ଦ ଙ୍କ ପରି ସହପାଠୀମାନଙ୍କ ଗହଣରେ ନିଳାଦ୍ରି ଭୂଷଣଙ୍କ ସୃଜନ ଯାତ୍ରା ବେଶ୍ ସୁନ୍ଦର ରୂପେ ଆଗେଇ ଚାଲିଲା ।

ସାହିତ୍ୟର ଅନ୍ୟ ବିଭାଗ ଆଡକୁ ନ ଢଳି ସୃଜନ ଯାତ୍ରା ର ଆରମ୍ଭ କବିତାରୁ କାହିଁକି ? ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କବି ନୀଳାଦ୍ରି ଭୂଷଣ କହିଥିଲେ- " ମୋ ନିଜର ଭାବନାକୁ କବିତାରେ ସହଜରେ ପ୍ରକାଶ କରିପାରୁଥିଲି ।" ଯଦିଓ ନୀଳାଦ୍ରିଙ୍କ ସୃଜନ ଯାତ୍ରା କବିତାଠୁ ଆରମ୍ଭ, ତେବେ ବି ପରେ ପରେ ସେ ଗଳ୍ପ, କ୍ଷୁଦ୍ର ଉପନ୍ୟାସ,ନାଟକ, ଆଲୋଚନା ତଥା ସମାଲୋଚନା ଲେଖିବାରେ ସେ ନିଜକୁ ନିୟୋଜିତ କରିଆସିଛନ୍ତି । ୧୯୬୯-୭୦ ମସିହାରେ ଏମ୍.ଏ ଅଧ୍ୟୟନ ସମୟରେ 'ନୀଳଚନ୍ଦ୍ରର ନିଃଶ୍ୱାସ', 'ପବନ ଫୁଲକେଶ' ପରି କିଛି ଗଳ୍ପ ଆସନ୍ତାକାଲି ,ଜନସାହିତ୍ୟ ଆଦି ପତ୍ରପତ୍ରିକାରେ ପ୍ରକାଶିତ । ଏହାଛଡା ଏକ ଇଂରାଜୀ ପୁସ୍ତକର ଅନୁସରଣରେ ମହମ୍ମଦଙ୍କ ପ୍ରେମକାହାଣୀକୁ ନେଇ କ୍ଷୁଦ୍ର ଉପନ୍ୟାସ 'ମରୁଭୂମିର ଫୁଲ' ରଚନା କରିଥିଲେ । ଯାହା 'ଜୀବନରଙ୍ଗ' ପତ୍ରିକାରେ ପ୍ରକାଶିତ ।

ନୀଳାଦ୍ରି ଭୂଷଣଙ୍କ ପ୍ରଥମ କବିତା ପୁସ୍ତକ 'ପାହାଚ' । ଯାହା ପ୍ରକାଶ ପାଏ ୧୯୭୨ ମସିହାରେ । ପରେପରେ 'ନୀଳଚନ୍ଦନର ଭୁଲ ଠିକଣା'(୧୯୭୮), 'ସମ୍ବୋଧନହୀନ'(୧୯୭୯), 'ଅଚାନକ ବୃହନ୍ନଳା'(୧୯୯୧), 'ନିର୍ବୋଧ ଲୋକର ପୃଥିବୀ'(୧୯୯୬), 'ସମୁଦ୍ର ନିରୁତ୍ତର'(୧୯୯୭), 'ଇତିହାସ ଲେଖିବାର ମୁହୂର୍ତ୍ତ'(୨୦୦୨),'ଉପୁଡ଼ି ପଡ଼ିଥିବା ଗଛ'(୨୦୧୭) ଆଦି ଦଶଗୋଟି କବିତା ସଙ୍କଳନ ଅଦ୍ୟାବଧି ପ୍ରକାଶିତ ।

କବିତାକୁ କେବଳ କବିର ଖିଆଲି କଳ୍ପନା ବିଳାସ ଭାବିନେବା ଉଚିତ୍ ନୁହେଁ । କବିତା ସ୍ୱତଃସ୍ଫୂର୍ତ୍ତ ,ଏବଂ ପ୍ରାକୃତିକ ଆବଶ୍ୟକତା, ଅନୁଭୂତି ସହ କଳ୍ପନାର ମଧୁର ସମନ୍ୱୟରୁ ସୃଷ୍ଟି । ତେଣୁ କବିଗୁରୁ ରବୀନ୍ଦ୍ରନାଥଙ୍କ ମତରେ-"ଅର୍ଦ୍ଧେକ ମାନୁଷୀ ତୁମି ଅର୍ଦ୍ଧେକ କଳ୍ପନା ।" କାଳକ୍ରମେ ସମୟ ସହ ତାଳଦେଇ କବିତା ମଧ୍ୟ ପରିବର୍ତ୍ତନ ହେଇଚାଲିଛି । ଗତ ଶତାବ୍ଦୀର ସ୍ୱପ୍ନପ୍ରବଣତା କୁ ପରିହାର କରି ସଂପ୍ରତି କବିତା ହୋଇଉଠିଛି ଅଧିକ ବାସ୍ତବବାଦୀ । ଫଳରେ ପାରମ୍ପରିକ ଆଦର୍ଶବାଦ ବଦଳରେ ବାସ୍ତବାନୁରାଗ ହିଁ କବିତାର ସ୍ୱର ପାଲଟିଛି । ସମାଜ ସହ ଯୁଦ୍ଧ ଅପେକ୍ଷା ନିଜ ସାଥେ ଯୁଦ୍ଧ କରିବାକୁ ଉଚିତ୍ ମଣିଛି କବି । ଜୀବନକୁ ଜଡେଇ ଧରିଥିବା କୃତ୍ରିମତାର ଖୋଳପାକୁ ସବୁଦିନ ପାଇଁ ଫିଙ୍ଗିଦେବାକୁ ଅନବରତ କସରତ୍ କରିଚାଲୁଛି କବି । ଦ୍ୱିଧାଗ୍ରସ୍ତ ମନ ଓ ରଙ୍ଗହୀନ ଜୀବନକୁ ନେଇ ସେ ଘାଂଟି ଚକଟି

ଚାଲିଛି । ତାର ବିଶ୍ୱାସ ଅଛି, ଦିନେ ସିଏ ତା ଲକ୍ଷ୍ୟ ସ୍ଥଳରେ ପହଂଚିବ ଓ ତା ଉଦ୍ଦେଶ୍ୟ ସାଧିତ ହେବ, କାହିଁକି ନା ସିଏ ପରା କବି । ବିଜ୍ଞାନର ଜୟଯାତ୍ରା ଯୋଗୁ ଆଜି ମଣିଷ ଖୁବ୍ ବେଶି ବସ୍ତୁବାଦୀ ହୋଇଯାଇଛି । ଏ ମୋହ ରେ ଆବଶ୍ୟକୀୟ ଲଗାମ ଲଗାଇବା କେବେ ବି ସହଜ ନୁହେଁ । ତଥାପି କବି ହାରିଯାଇନି ନିଜଠାରୁ ପ୍ରୟାସ ଆରମ୍ଭ କରିଛି, ଆଗେଇ ଚାଲିଛି ମୁକ୍ତିର ଦିଗ ଆଡକୁ ।

ଜୀବନକୁ ଅନ୍ୱେଷଣ କରି ନୂତନ ଭାବେ ଜୀବନକୁ ଆବିଷ୍କାର କରିବାରେ ନୀଳାଦ୍ରୀ ଭୂଷଣଙ୍କ କାବ୍ୟଜଗତ ବନ୍ଧା । ଜୀବନ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ହିଁ ତାଙ୍କୁ ନିକଟତର କରାଇଛି ମଣିଷ ପାଖରେ । ଏ ମଣିଷ ଅଭିଜାତ କି ଭୋଗର ମୋହରେ ବନ୍ଧା ନୁହେଁ, ଏ ସାଧାରଣ ମଣିଷ । ଯେଉଁ ମଣିଷମାନଙ୍କ ଗହଳିରେ କବି ନିଜକୁ ଦେଖିଛନ୍ତି । ଭେଟିଛନ୍ତି ଯାବତୀୟ ଦୁଃଖକୁ । ଭେଟିଛନ୍ତି ଶୂନ୍ୟତାକୁ । ଭେଟିଛନ୍ତି ନାରୀ-ପୁରୁଷର ପ୍ରେମକୁ । ପୁଣି ଭେଟିଛନ୍ତି ମୃତ୍ୟୁକୁ । ସଚେତନ ହୋଇଉଠନ୍ତି କବି । କବି ବ୍ୟକ୍ତିକୈନ୍ଦ୍ରିକତା କି ବିଛିନ୍ନତାବୋଧ ରେ କବିତା ସଂରଚନା କରିନାହାନ୍ତି ବରଂ ମାନବ ସଂପ୍ରୀତି ଓ ସମାଜ ସଂପ୍ରୀତି ରେ ତାଙ୍କ କବିତା ବଳିଷ୍ଠ ରୂପ ଗ୍ରହଣ କରିଛି । କୌଣସି ବି କ୍ଷେତ୍ରରେ କବି ନିରାଶ କି ଅସହାୟତାରେ ଦୁର୍ବଳ ହୋଇନାହାନ୍ତି ବରଂ ସବୁକିଛିକୁ ସାମ୍ନା କରିବାର ସାହସରେ ଆଗେଇଯାଆନ୍ତି ଏବଂ ନିଜର ନିରାପତ୍ତା ପ୍ରତି ମଧ୍ୟ ସଚେତନ ରହିଥାନ୍ତି । ତେଣୁ ତ ସେ କୁହନ୍ତି-

"ଅନ୍ଧାରରେ କଣ୍ଟାଝଣ୍ଟା, କିଛି ମୁଁ ମାନିବି ନାହିଁ / ଗୋରୁଙ୍କର ହମ୍ବାରଡ଼ି ଶୁଣିଶୁଣି ଆସୁଥିବି ଫେରି / ମାଆ କୋଳେ ଶୋଇ ରହି କେବଳ ମୁଁ ଦେଖୁଥିବି / ଦର୍ପଣର କଳାକଳା ଦୁଇ ଆଖି / ମୋ ସକାଶେ ଆଗ୍ରହରେ ଯାଇଅଛି ଭରି ।" (ତଥାପି, ନୀଳଚନ୍ଦନର ଭୁଲ ଠିକଣା)

ମଣିଷ ଭେଟୁଥିବା ଜୀବନର ସବୁ ସମସ୍ୟା,ଦୁଃଖ,ପ୍ରେମ,ହତାସା ଆଦି ରେ କବିଙ୍କ କାବ୍ୟଜଗତ ଗଢିଉଠିଛି ସତ ହେଲେ ସବୁକିଛିକୁ ଅତିକ୍ରମ କରିବାର ସାହସୀ ସୁସ୍ଥ ରୂପଟିଏ ବି କବିତାରେ ପ୍ରଦର୍ଶିତ । କବି ଯେହେତୁ ରକ୍ତ ମାଂସର ମଣିଷ ତେଣୁ ନିଃସଙ୍ଗତା,ଅସହାୟତା,ଭୟ ରହିବା ସ୍ୱାଭାବିକ ତେବେ ଏଥିରେ ଆକ୍ରାନ୍ତ ହୋଇଯାଇନି କାବ୍ୟପୁରୁଷ ।

"ଏମିତି ବିତିଗଲା ଗୋଟାଏ ଜୀବନ / କାହାକୁ ମାଗିଲି ନାହିଁ କିଛି / ମାଗିବାର ଇଚ୍ଛା ନ ଥିଲା ବୋଲି ନୁହେଁ / ସୀମାହୀନ ଲଜ୍ଜା କଣ୍ଠରୋଧ କରୁଥିଲା ମୋର । / ଆଜି

ଅବସୋସ ହୁଏ / ମାଗିଥିଲେ ହୁଏତ ମିଳିଥାନ୍ତା ସହଜରେ / ଅଲଭ୍ୟ,ଅପ୍ରାପ୍ୟ,ଅଚିନ୍ତିତ କିଛି ।" (ଯାଚନା, ଉପୁଡି ପଡିଥିବା ଗଛ)

କାବ୍ୟ ପୁରୁଷ କିଛି ନ ପାଇବାର ଅବସୋସ ଭେଟୁଛନ୍ତି ଅଥଚ ପରବର୍ତ୍ତୀ ସମୟରେ ସ୍ୱୀକାର କରୁଛନ୍ତି ଯେ ଅନେକ ପାଇପାଇ ହିଁ ଚାଲିଛନ୍ତି ଜୀବନଯାକ । ତେଣୁ ପୁନର୍ବାର କବି କହୁଛନ୍ତି-

"କାହାକୁ କିଛି ମାଗିନି ବୋଲି / ଅସ୍ୱୀକାର କରିପାରିବି କି ଆଜି ? / ମାଗିଛି ତ / ନିଜକୁ ଉଜାଡ଼ି ଦେଇ ମାଗିଛି ଥରକୁ ଥର ପରମ ସତ୍ତାକୁ / ଯେଉଁଠି ବିଲୀନ ହୋଇଯାଏ ଲଜ୍ଜା ଓ ସଂକୋଚ / ଉଦାର ବିସ୍ତୃତି ଭିତରେ ।" (ଯାଚନା, ଉପୁଡି ପଡିଥିବା ଗଛ)

କବି ମଧ୍ୟ ବିଦ୍ରୁପାତ୍ମକ କବିତା ରଚନାରେ ସାଂପ୍ରତିକ ସମୟର ଅହଂପ୍ରମତ୍ତ ପ୍ରଶାସକମାନଙ୍କ କଥା କହିଛନ୍ତି । କ୍ଷମତାନ୍ଧ ମଣିଷମାନେ କିପରି ହିଂସ୍ର ହୋଇ ନିଜର ସଇତାନି ବୁଦ୍ଧି ବଳରେ ସାଧରଣ ମଣିଷଟିର ସୁଖ ସ୍ୱାଚ୍ଛନ୍ଦ୍ୟ କିପରି ଛଡ଼େଇ ନିଅନ୍ତି, ସେକଥା ମଧ୍ୟ କହିବାକୁ କବି ଭୁଲିନାହାନ୍ତି-

"ପଶୁରାଜ ଚିତ୍କାର କରୁଛି ଅରଣ୍ୟରେ / କିଏ କେଉଁଠି ଅଛ ଆସ / ମୋର ପ୍ରଭୁତ୍ୱ ସ୍ୱୀକାର କର / ଦୁର୍ବଳ ତୁମମାନଙ୍କୁ ମୁଁ ଦେବି ଖାଦ୍ୟ ଓ ଆଶ୍ରୟ । / ଜାଣିରଖ କ୍ଷଣ କ୍ଷଣକେ ମୋର କ୍ରୋଧ / ଇଚ୍ଛାନୁସାରେ ମୁଁ ତୁମକୁ ଉତ୍ପୀଡନ କରିବି / ତୁମେ କିନ୍ତୁ ପ୍ରତିବାଦ ନ କରି କହିବ / ଈଶ୍ୱର ଯାହା କରନ୍ତି ପ୍ରାଣୀଙ୍କ ମଙ୍ଗଳ ପାଇଁ ।" (ପଶୁରାଜ, ସମ୍ବୋଧନହୀନ)

ପ୍ରେମ, ମୃତ୍ୟୁ, ଯନ୍ତ୍ରଣା କୁ କବି ଅନୁଭବ କରିବା ସହ ବିଭୁବୋଧରେ ମଧ୍ୟ କବିଙ୍କ ମାନସିକତା ଭରିଯାଇଛି । ଏହାର ଗତି ଜୀବନର ବୈରାଗ୍ୟ ଆଡ଼ିକି ନୁହେଁ, ଏହା ଏକ ଅନନ୍ୟ ଅନୁଭୂତି, ଶୂନ୍ୟତାରେ ପୂର୍ଣ୍ଣତାକୁ ଭେଟିବାର ଏ ଏକ ଅପୂର୍ବ ସମନ୍ୱୟ-

"ତମେ ପ୍ରଭୁ ହଠାତ୍ ଉତ୍ତାଳ ସମୁଦ୍ର ଲହଡି ଭିତରେ / ନିରାସକ୍ତ ଡଙ୍ଗାଟିଏ ପରି ଭାସିଆସ / ମୋ ନିକଟକୁ । / ଅଥଚ ମୋ ହାତ ପାଏନାହିଁ ଡଙ୍ଗାକୁ ଅସହାୟ ଶାମୁକାଟିଏ ପରି / ଭାସି ଭାସି କୂଳରେ ମୁଣ୍ଡ ପିଟେ ।"

କବିଙ୍କର ପ୍ରଥମ କେତୋଟି ସଙ୍କଳନର କବିତାରେ ଯଦିଓ ପ୍ରେମର ସ୍ୱରୂପ ସ୍ପଷ୍ଟ ନଥିଲା, ତେବେ ପରବର୍ତ୍ତୀ ଅବସ୍ଥାର କବିତାଗୁଡ଼ିକରେ ଏକ ନିର୍ଭୟ ପ୍ରେମିକପୁରୁଷକୁ ଦେଖିବାକୁ ମିଳେ । ଯାହାର ଆବେଦନ ଯେତିକି ସ୍ପଷ୍ଟ ସେତିକି ରୋମାଣ୍ଟିକ ମଧ୍ୟ ।

"ଏମିତି ଦିନ ଆସୁ, ରାତି ଆସୁ / ବର୍ଷା ଆସୁ, ଗ୍ରୀଷ୍ମ ଆସୁ / ଶୀତ ଆସୁ ଢଳଢଳ ଶିଶିର ବିନ୍ଦୁରେ / ସବୁ ଋତୁରେ ତୁମେ କିନ୍ତୁ ସୁନ୍ଦର ନଗେନ୍ଦ୍ରବାଳା ! / କବିର ସମ୍ମୋହନ ଦୃଷ୍ଟି ରାଶିରାଶି ଫୁଲ ବର୍ଷୁ / ଯେଣେ ଅନାଇଲେ ।" (ନଗେନ୍ଦ୍ରବାଳା)

ମାଟି-ମଣିଷ-ପ୍ରକୃତି, ନାରୀ-ପୁରୁଷ ପ୍ରେମ, ସାମୂହିକ ମାନବବେଦନା, ମାଆର ମମତା, ନିର୍ଜନତାର ମନୋହର ରୂପ, ଜଗତର ଅପୂର୍ବ ସୌନ୍ଦର୍ଯ୍ୟ ଆଦି ଖୁବ ସୁନ୍ଦର ତଥା ସଚେତନ ଭାବେ କବିତାରେ ଫୁଟେଇପାରିଛନ୍ତି କବି ନୀଳାଦ୍ରି ଭୂଷଣ ହରିଚନ୍ଦନ । ପ୍ରତୀକ, ଚିତ୍ରକଳ୍ପର ପ୍ରୟୋଗରେ ତାଙ୍କ କବିତା ଗୁଡିକ ଚମତ୍କାରିତା ଲାଭ କରିଛି ନିଶ୍ଚୟ । ମିଥ୍‌ର ପ୍ରୟୋଗରେ ମଧ୍ୟ ତାଙ୍କ କବିତାଗୁଡ଼ିକୁ ଆହୁରି ଶାଣିତ ହୋଇଉଠିଛି । ବୃହନ୍ନଳା, ବିଦୁର, ପଣ୍ଡୁ, ଦୁର୍ବାସା, ପ୍ରହ୍ଲାଦ, ଦାସୀପୁତ୍ର, ଦ୍ରୌପଦୀ ଆଦି ଚରିତ୍ର ମିଥ୍ ରୂପେ ବ୍ୟବହୃତ ହୋଇଛି । ପାଠକର ନିକଟତର ହେବା ପାଇଁ କବି ମଧ୍ୟ ଲୋକ ଉପାଦାନର ସାହାଯ୍ୟ ନେଇଛନ୍ତି । ଏହି କ୍ରମରେ ବୁଢ଼ୀ ଅସୁରୁଣୀ କଥା, କେଶବତୀ କନ୍ୟା କଥା, କୋକୁଆ ପ୍ରସଙ୍ଗ, କାଠୁରିଆ କାହାଣୀ ଆଦି ପ୍ରସଙ୍ଗମାନ କବିତାରେ ଉପସ୍ଥାପିତ । ଗ୍ରାମ୍ୟ ପରିବେଶ, ପରଂପରା,ବିଶ୍ୱାସ ଆଦି କବିତାରେ ଉପଯୁକ୍ତ ରୂପେ ବ୍ୟବହୃତ ହୋଇଛି । ପ୍ରେମ, ମୃତ୍ୟୁ, ଜୀବନ, ଈଶ୍ୱର, ମିଥ୍ୟା, ପ୍ରବଂଚନା, ଅହଂକାର ଆଦି ପ୍ରୟୋଗ କରି କବି ନୀଳାଦ୍ରି ଭୂଷଣ ଓଡ଼ିଆ କବିତା ଜଗତରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଛନ୍ତି ।

# ପରିବ୍ରାଜକ କବି ପ୍ରସନ୍ନ କୁମାର ପାଟଶାଣୀ

ଡ. ମିଥୁନ ଚନ୍ଦ୍ର ଦେ

ପ୍ରସନ୍ନ କୁମାର ପାଟଶାଣୀ ଏପ୍ରିଲ ୨୭, ୧୯୪୬ରେ ଖୋରଧାର ବାଲୁଗାଁରେ ଜନ୍ମଗ୍ରହଣ କରିଥିଲେ । ସେ ଏକାଧାରରେ କବି, ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ, ରାଜନେତା (ବିଧାୟକ ଓ ସାଂସଦ), ଓକିଲ, ଦାର୍ଶନିକ, ସୁବକ୍ତା, ଭ୍ରମଣପ୍ରିୟ, ଯୋଗ-ଆସନ-ପ୍ରାଣାୟମ ଶିକ୍ଷକ, ଅଭିନେତା, ବୈଦ୍ୟ, ପତ୍ରପତ୍ରିକା ସମ୍ପାଦକ, ସିନେମା ଗୀତ ରଚୟିତା ଅଟନ୍ତି । ତାଙ୍କର ପିତା ଅନିରୁଦ୍ଧ ପାଟଶାଣୀ, ମାତା ବିଧୁମଣି ଦେବୀ, ସ୍ତ୍ରୀ ବିଜୟଲକ୍ଷ୍ମୀ ପାଟଶାଣୀ । ତାଙ୍କର ଦୁଇ ପୁଅ ଓ ଗୋଟିଏ ଝିଅ ଥାଇ ମଧ୍ୟ ସେ ବାବା ଭାବରେ ପରିଚିତ । ସେ ଏଯାବତ୍ ୯ଥର ନିର୍ବାଚନରେ ଜିତିସାରିଛନ୍ତି ବିଧାୟକ ଓ ସାଂସଦ ଭାବରେ । ୧୯୮୦-୯୮ ପର୍ଯ୍ୟନ୍ତ ଖୋରଧାର ବିଧାୟକ ଭାବରେ ଓ ୧୯୯୮-ଆଜି ସୁଦ୍ଧା ସାଂସଦ ଭାବରେ ନିର୍ବାଚିତ ହୋଇଛନ୍ତି । ସେ କଂଗ୍ରେସ, ନିର୍ଦ୍ଦଳୀୟ, ଜନତା ଦଳ, ବିଜୁ ଜନତା ଦଳ ପ୍ରଭୃତି ଦଳରୁ ପ୍ରାର୍ଥୀ ହୋଇଛନ୍ତି ।

ତାଙ୍କର ଶିକ୍ଷାଗତ ଯୋଗ୍ୟତା ହେଉଛି- ଏମ୍.ଏ., ଏଲ୍.ଏଲ୍.ବି., ଏମ୍.ଏସ୍.ସି.ଆଇ., ଏଫ୍.ଆଇ.ଏମ୍.ଏ., ପିଏଚ୍.ଡି (ସମ୍ମାନସୂଚକ), ଡି.ଲିଟ୍. (ଉତ୍କଳ), ଡି.ଏସ୍‌ସି. (ସ୍ୱିସ୍), ଡି.ଲିଟ୍.(ସାଉଥ୍ ଆଫ୍ରିକା) । ସେ ଉତ୍କଳ ବିଶ୍ୱବିଦ୍ୟାଳୟ (ଭୁବନେଶ୍ୱର), ମଧୁସୂଦନ ଲ କଲେଜ୍ (କଟକ), ମହର୍ଷି ଇନଷ୍ଟିଚ୍ୟୁଟ୍ ଅଫ୍ କ୍ରିଏଟିଭ୍ ଇଣ୍ଟେଲିଜେନସ (ରିଷିକେ. ଉତ୍ତରପ୍ରଦେଶ), ଶିଲ୍‌ସ୍‌ବର୍ଗ (ସ୍ୱିଜରଲ୍ୟାଣ୍ଡ) ପ୍ରଭୃତି ଶିକ୍ଷାନୁଷ୍ଠାନର ଛାତ୍ର ଥିଲେ ।

ସମାଜରୁ କୁସଂସ୍କାର ଦୂରକରି ଏକ ସୁସ୍ଥ ଓ ସୁନ୍ଦର ସମାଜ ଗଠନର ବାର୍ତ୍ତା ସେ ତାଙ୍କ କବିତାରେ ଶୁଣାଇଛନ୍ତି । ତାଙ୍କ କବିତାର ଭାଷା ଅତି ସରଳ ଅଟେ, କିନ୍ତୁ ତାହା ପ୍ରତୀକାତ୍ମକ, ବ୍ୟଞ୍ଜନାଧର୍ମୀ, ଇଙ୍ଗିତଧର୍ମୀ ଭାବରେ ରହିଥାଏ । ଫଳରେ କବି ତାଙ୍କ କବିତାରେ କଣ କହିବାକୁ ଚାହୁଁଛନ୍ତି, ପାଠକ ହଠାତ୍ ତାହା ବୁଝିପାରିବେ ନାହିଁ । ପ୍ରଥମ ପର୍ଯ୍ୟାୟରେ ସେ ପ୍ରେମ କବିତା ଲେଖୁଥିଲେ, ତାପରେ ବିପ୍ଳବ କବିତା, ଭ୍ରମଣ କବିତା ଲେଖିଛନ୍ତି । ତାଙ୍କ କବିତାରେ ପ୍ରେମଚେତନା, ବିଭୁଚେତନା, ମୃତ୍ୟୁଚେତନା, ବିପ୍ଳବୀଚେତନା ପ୍ରଭୃତି ବହୁଳ ଭାବରେ ଦେଖିବାକୁ ମିଳିଥାଏ । ମଣିଷର ନିଷ୍ଠୁର

ଅପ୍ରିୟ ସତ୍ୟକୁ ଉପସ୍ଥାପନ କରିଛନ୍ତି ତାଙ୍କ କବିତାରେ । ତାଙ୍କ ବିପ୍ଳବୀ କବିତାଗ୍ରନ୍ଥକୁ ବ୍ୟାନ କରିଦିଆଯାଇଥିଲା, ୧୨ବର୍ଷ ଧରି ତାଙ୍କ ବିରୋଧରେ ୱାରେଣ୍ଟ ଜାରି ହୋଇଥିଲା । ଫଳରେ ସେ ଲୁଚି ରହିଥିଲେ । ତାଙ୍କର ୬୦ରୁ ଊର୍ଦ୍ଧ୍ୱ ବହି (ବିଭିନ୍ନ ଭାଷାରେ) ପ୍ରକାଶ ହୋଇସାରିଛି । ତାଙ୍କର ପ୍ରକାଶିତ କବିତା ଗ୍ରନ୍ଥ ମଧ୍ୟରେ "ଆକାର କବିତା" (୧୯୭୬), "ଲେନିନ୍" (୧୯୭୬), "ବାଘ ଆଁରେ ପିକ୍‌ନିକ୍" (୧୯୭୬), "ବର୍ଷା" (୧୯୮୧), "ସାପଗାତରେ ସକାଳ" (୧୯୮୨), "ରକ୍ତପଥ" (୧୯୮୨), "ସାତ ମନ ତେର ଆକାଶ" (୧୯୮୩), "କିଛି ଲୁହ କିଛି ଲହୁ" (୧୯୮୪), "ପ୍ରସନ୍ନ ପାଟଶାଣୀଙ୍କ ଶହେ ଏକ କବିତା" (୧୯୮୭), "ଅଗ୍ନିଯୁଗ" (୧୯୮୮), "ଖୋର୍ଦ୍ଧାର କବିତା ମୁଁ ପଢ଼େ" (୧୯୮୯), "ଅମର ନାଥ" (୧୯୯୦), "ଆଖି ଫୁଟି ଯାଇଥିବା ସତ୍ୟବାନଟିଏ" (୧୯୯୦), "ଦେଖା ହେଲେ କହିବି ସେ କଥା" (୧୯୯୦), "ସମ୍ପର୍କ" (୧୯୯୧), "ନୀଳ ନୂପୁର" (୧୯୯୧), "ଆକାଶର କାଠ ଗଡ଼ାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା" (୧୯୯୨), "ବାଲିର ଚିଠି ଓ ଲବଙ୍ଗ ଠିକଣା" (୧୯୯୨), "ଅମାବାସ୍ୟା ବସିଛି ଜହ୍ନର ପିଠିରେ" (୧୯୯୩), "ଛଷ୍ଠାଣ ଡେଣାରେ ଭାରତ" (୧୯୯୩), "ଚିତାଗ୍ନିରେ ବୋମା: ହିରୋସୀମା" (୧୯୯୩), "ଓଠ ଫଣାରେ କଠଉ" (୧୯୯୪), "ନବକଳେବର" (୧୯୯୬), "ଏଇଠୁ ଆରମ୍ଭ" (୧୯୯୭), ଅଙ୍ଗ ଓ ଅଙ୍ଗିକା ପ୍ରମୁଖ । ୧୯୯୨ରେ "ଦେଖାହେଲେ କହିବି ସେ କଥା" ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି ।

କବିତା ବ୍ୟତୀତ ବହୁ ମିନିଗଳ୍ପ, ଆଭାସଗଳ୍ପ ମଧ୍ୟ ଲେଖିଛନ୍ତି । ତାଙ୍କର ଗଳ୍ପ ତଥା ମିନିଗଳ୍ପ ସଙ୍କଳନ ମଧ୍ୟରେ "ଆଖି", "ନିଆଁର ଋତୁ" ଓ "ରକ୍ତବୃତ୍ତର ପରିଧି" ପ୍ରମୁଖ । ଏତଦ୍ ବ୍ୟତୀତ ତାଙ୍କ ଉପରେ ଗୋଟିଏ ଗ୍ରନ୍ଥ ପ୍ରକାଶ ପାଇଛି- Jesse Russell I Ronald Cohnଙ୍କ ଦ୍ୱାରା ରଚିତ "Prasanna Kumar Patasani" (୨୦୧୨) । ସେ ୧୦ଟି ଚଳଚ୍ଚିତ୍ରରେ ଅଭିନୟ ମଧ୍ୟ କରିଛନ୍ତି । ଆମେରିକା ରାଷ୍ଟ୍ରପତି ବାରାକ୍ ଓବାମାଙ୍କ ସହ ମଧ୍ୟ ଆଲୋଚନା କରିଛନ୍ତି କବି । ତାଙ୍କ ଉଦ୍ୟମରେ ଶତାଧିକ ଶିକ୍ଷାନୁଷ୍ଠାନ ଗଢ଼ିଉଠିଛି ଓଡ଼ିଶାରେ ।

ରିଷିକେଷସ୍ଥିତ ମହର୍ଷି ମହେଶ ଯୋଗୀ ଆଶ୍ରମରେ ଯୋଗ ଶିକ୍ଷା ଲାଭ କରିବା ପାଇଁ ଯୋଗ ଦେଇଥିଲେ କବି ପ୍ରସନ୍ନ ପାଟଶାଣୀ । ତାପରେ ସ୍ୱିଜରଲ୍ୟାଣ୍ଡସ୍ଥିତ ମହର୍ଷି ମହେଶ ଯୋଗୀ ଆଶ୍ରମରେ ଯୋଗ ଦେଇଥିଲେ । ଯୋଗ ଶିକ୍ଷା ଦେବା ପାଇଁ

ମହର୍ଷି ମହେଶ ଯୋଗୀ ଆଶ୍ରମ ଦଳ ସାଙ୍ଗରେ ସେ ଇଉ.ଏସ୍.ଏ., ଫ୍ରାନ୍ସ, ଜର୍ମାନୀ, ବର୍ମା, ଥାଇଲାଣ୍ଡ, ଚୀନ, ଜାପାନ, ଉତ୍ତର କୋରିଆ, ଦକ୍ଷିଣ କୋରିଆ, ସ୍ପେନ୍, ଅଷ୍ଟ୍ରିଆ, ଗ୍ରୀସ, ପୋଲାଣ୍ଡ, ହଲାଣ୍ଡ, ଗ୍ରୀନଲାଣ୍ଡ, ଫିନ୍‌ଲାଣ୍ଡ, ବ୍ରାଜିଲ୍, ଇଟାଲୀ, ସ୍ୱିଡେନ୍, ଡେନମାର୍କ, ନରୱେ, ହଙ୍ଗ୍‌କଙ୍ଗ୍, ଇଣ୍ଡୋନେସିଆ, ସିଙ୍ଗାପୁର, ମାଲେସିଆ, କାମ୍ବୋଡିଆ ପ୍ରଭୃତି ଶତାଧିକ ଦେଶ ଭ୍ରମଣ କରିବାର ସୁଯୋଗ ପାଇଲେ ।

କେବଳ ଯୋଗୀ ହୋଇଥିଲେ କେବଳ ଯୋଗ ଉପରେ ଧ୍ୟାନ ଦେଇପାରିଥାନ୍ତେ । ଯେହେତୁ ସେ ଜଣେ କବି ଅଟନ୍ତି, ତେଣୁ ସେ ଯେଉଁ ଯେଉଁ ଦେଶକୁ ଯୋଗ ଶିଖାଇବାକୁ ଗଲେ, ସେଠାକାର ସାମାଜିକ, ସାଂସ୍କୃତିକ, ରାଜନୀତିକ, ଐତିହାସିକ, ଭୌଗୋଳିକ ଅବସ୍ଥାକୁ କବି ଦୃଷ୍ଟିରେ ଦେଖି ମେଞ୍ଚା ମେଞ୍ଚା କବିତା ଲେଖିପକାଇଲେ । ଏହି ଭ୍ରମଣ କବିତାଗୁଡ଼ିକ ପାଠକଲେ ଜଣାପଡ଼ିବ ଯେ କବି ନାନା ଦେଶର ବହୁମୁଖୀନତାକୁ ନିଜେ ଅନୁଭବ କରି, ତା ସହିତ ତାର ସାମାଜିକ, ଐତିହାସିକ, ଭୌଗୋଳିକ ସହିତ ଜଡ଼ିତ ହୋଇ ନାନା ଚିତ୍ରକଳ୍ପ ଓ ପ୍ରତୀକ ବ୍ୟବହାର କରି ପ୍ରାଚ୍ୟ ଓ ପାଶ୍ଚାତ୍ୟର ସାମାଜିକ, ଆର୍ଥନୀତିକ, ରାଜନୀତିକ, ସାଂସ୍କୃତିକ, ନୈତିକ, ପାରିବେଶିକ ପ୍ରଭୃତିକୁ ତୁଳନା କରିଛନ୍ତି ତାଙ୍କ ଭ୍ରମଣ କବିତାଗୁଡ଼ିକରେ । ଏହି ଭ୍ରମଣ କବିତାରେ ବିଦେଶୀ ସଂସ୍କୃତି, ସଭ୍ୟତା, ସାମାଜିକ ଚଳଣୀ, ଖାଦ୍ୟପେୟ, ପୋଷାକ ପରିଧାନ, ଜୀବନଶୈଳୀ. ଶାସନ ବ୍ୟବସ୍ଥା ପ୍ରଭୃତିର ଚିତ୍ର ଦର୍ଶାଇଛନ୍ତି । ମୋଟ ଉପରେ କହିବାକୁ ଗଲେ ଏହି ଭ୍ରମଣ କବିତାଗୁଡ଼ିକରେ ପାଶ୍ଚାତ୍ୟ ସଭ୍ୟତା ପ୍ରତି ବ୍ୟଙ୍ଗ, ତାଚ୍ଛଲ୍ୟତା ପ୍ରକାଶ ପାଇଛି । ଆଲୋଚ୍ୟ ସଂକ୍ଷିପ୍ତ ପ୍ରବନ୍ଧରେ କବି ପ୍ରସନ୍ନ ପାଟଶାଣୀଙ୍କୁ କେବଳ ପରିବ୍ରାଜକ କବି ଭାବରେ ଆଲୋଚନା କରାଯାଇଛି ।

ଭାରତରେ ବର୍ତ୍ତମାନ ପ୍ରାୟ ଅର୍ଦ୍ଧାଧିକ ଲୋକଙ୍କର ଘରଦ୍ୱାର ନାହିଁ । କୋଟି କୋଟି ଲୋକ ଖୋଲା ଆକାଶ ତଳେ ରାତି ବିତାଉଛନ୍ତି । କିନ୍ତୁ ଭାରତ ତୁଳନାରେ ବିଦେଶରେ କିପରି ଘରବାଡ଼ି, ଗାଡ଼ି କ୍ଷେତ୍ରରେ ବେଶ୍ ଉଲ୍ଲେଖନୀୟ ବିକାଶ ହୋଇସାରିଛି, ତାହା ବହୁ କବିତାରେ ଲକ୍ଷ୍ୟ କରାଯାଇପାରେ-

"ଆକାଶରେ ହେଲିକପ୍‌ଟର ଉଡୁଛି, ସହର ସାରା କାର୍ ମାଳ ମାଳ ଚାଲୁଛି ।" (ଲସ୍ ଏଞ୍ଜେଲସ୍-୧)

"କୋଠା ଆଉ ମେଘ ସତେ ଅବା କୋଳାକୋଳି / ଆକାଶର କଳା ବାଦଲକୁ ଚିରି / ବିମାନ ଯାଉଛି ଗଳି ॥" (ୱାସିଂଟନ୍‌ର ପାହାନ୍ତା)

"ଗଗନଚୁମ୍ବୀ କୋଠା ପରେ କୋଠା ପାଏନି ଆଖି / ସାରା ଆକାଶକୁ କୋଠା ମାଳ ମାଳ ଛାଇ ରଖିଛି ।" (ନ୍ୟୁୟର୍କ)
"ଯୁଆଡ଼େ ଦେଖିବ ସେଇ କୋଠାବାଡ଼ି / ପାରା ଭାଡ଼ି ପରି ମହଲା ମହଲା ଘର / ରାସ୍ତାରେ ଖାଲି ଗାଡ଼ି ଓ ମଟର
ବେଗବାନ ଗତି ମଣିଷ ଗୋଳ ।" (କୋରିଆ-୧)

ବିଦେଶରେ ଘରବାଡ଼ି, ଗାଡ଼ି ପ୍ରଭୃତି ଅସାରବସ୍ତୁରେ ବିକାଶ କରିସାରିଥିଲେ ମଧ୍ୟ ତାଙ୍କ ପାଖରେ ମାନବିକତା ବୋଲି ଗୋଟିଏ ମୂଲ୍ୟବାନ ଜିନିଷ ନାହିଁ । ସେମାନେ ଏତେ ପରିମାଣରେ ଉନ୍ନତ ହୋଇଯାଇଛନ୍ତି ଯେ ଉଚ୍ଚ ଉଚ୍ଚ କୋଠା ଆକାଶକୁ ଲାଗିଯାଇଛି, ରାସ୍ତାରେ ହାଇଫାଇ କାର୍ ମାଳ ମାଳ ଚାଲୁଛି, ଆକାଶରେ ମାଳ ମାଳ ହେଲିକପ୍ଟର ଉଡ଼ୁଛି, ପ୍ରତିଟି କାନ୍ଥରେ ଲଙ୍ଗଳା ଛବି ଦେଖିବାକୁ ମିଳେ । କିନ୍ତୁ ରାସ୍ତାରେ କ୍ଷୁଧାର୍ତ୍ତଙ୍କ ଆର୍ତ୍ତନାଦ ମଧ୍ୟ ଅତି ସହଜରେ ଦେଖିବାକୁ ମିଳିଯାଏ । ଆଉ ଦେଖିବାକୁ ମିଳେ ନିଗ୍ରୋମାନେ କିପରି ଦୟନୀୟ ଭାବରେ ଏଇ ସଭ୍ୟ ଲୋକମାନଙ୍କର ବେଠି ଖଟୁଛନ୍ତି । କବିଙ୍କ ଭାଷାରେ-
"ମିଆମି କାଂଥରେ ଲଂଗଳା ଛବି / ରାସ୍ତାରେ ବୁଭୁକ୍ଷୁ / ନିଗ୍ରୋ ଏଇଠି ଖଟଇ ବେଠି ।" (ମିଆମି-୧)

ଭୌତିକ କ୍ଷେତ୍ରରେ ଉନ୍ନତି ଲାଭ କରିସାରିଥିଲେ ସୁଦ୍ଧା ନିଜ ଥନରେ କ୍ଷୀର ଥାଇ ସୁଦ୍ଧା ମା ତା ପିଲା ଓଠରେ ବୋତଲ କ୍ଷୀର ଧରେଇ ଦେଇ ଯାଏ ପରକୀୟା ପ୍ରୀତି ପାଇଁ । ଏହାଠାରୁ ଦୁଃଖ ଆଉ କିଛି ହୋଇପାରେ କି ? କବିଙ୍କ ଭାଷାରେ-
"ବିରାଟ ନଗରୀ ଧନର ମଣିଷ / ଥନର ସମୁଦ୍ର, ଖିର ଏଠି ମିଳେ ନାଇଁ / ଶିଶୁର ଓଠରେ ରବର ଚୁଚୁମା ଧରେଇ ଦେଇ / ମା ଯାଏ ନୂଆ ଘଇତା ପାଇଁ ।।" (ମିଆମି-୧)

ଅସାରବସ୍ତୁରେ ବିକାଶ କରିସାରିଥିଲେ ସୁଦ୍ଧା ବିଦେଶୀମାନଙ୍କର ସଭ୍ୟତା ବୋଲି ଗୋଟିଏ ଜିନିଷ ତାଙ୍କ ପାଖରେ ଖୋଜିବା ମୂର୍ଖାମି ଅଟେ । ବିଦେଶରେ ଯୁଆଡ଼େ ଯିବ ରାସ୍ତାଘାଟ ଚାରିଆଡ଼େ କେବଳ ଅଶ୍ଳୀଳ ଛବି, ପତ୍ରପତ୍ରିକା ଏବଂ ଯୁବତୀମାନଙ୍କର ଯୌନଇଂଗିତ । ଦିନଦ୍ୱିପ୍ରହରରେ ଲୋକଗହଳି ସ୍ଥାନରେ ମଧ୍ୟ ପୁରୁଷ-ନାରୀ ବିନା ସଙ୍କୋଚରେ କେଉଁଠି କୋଳାକୋଳି ହେଉଥିବେ ତ କେଉଁଠି ଚୁମ୍ବନ ଆଦାନ-ପ୍ରଦାନ କରୁଥିବେ । ଏପରିକି ଷୋଡ଼ଶୀ ସୁନ୍ଦରୀ ଜଣେ ବୃଦ୍ଧ କୋଳରେ ପ୍ରେମ କରୁଥିବାର ଦୃଶ୍ୟ ମଧ୍ୟ ଅତି ସହଜରେ ଦେଖିବାକୁ ମିଳିଯାଏ ।

ବିବାହିତା ହୋଇ ମଧ୍ୟ ପରପୁରୁଷ ଖୋଜିବାରେ ବ୍ୟସ୍ତ ଥାଆନ୍ତି ସେମାନେ । କବିଙ୍କ ଭାଷାରେ-
"ଝିଅପୁଅ ସବୁ ଦେହ ଲଗାଲଗି / ମେରିନ୍ ଡ୍ରାଇଭ୍ କୂଳ" (ଲସ୍ ଏଞ୍ଜେଲସ୍-୧)
"ଦିନରେ ବି ଏଠି ବୁଢ଼ାର କୋଳରେ / ରସିକା ରମଣୀ ପ୍ରୀତିରେ ଯାଇଚି ରସି ।" (ହଂକଂ-୨)
"ସ୍ତ୍ରୀ ବାଛୁଥାଏ ମନ ମୁତାବକ ପର ପୁରୁଷ" (ହଲାଣ୍ଡ)

ରାସ୍ତାଘାଟ ବ୍ୟତୀତ ହଲିଉଡ୍‌ରେ ଏଇ ବ୍ୟଭିଚାରର ଚିତ୍ର ଭୟଙ୍କର ଅଟେ । ସେଠାରେ କେବଳ ଦେହରେ ଦେହରେ ସବୁକିଛି ହୋଇଥାଏ । କବିଙ୍କ ଭାଷାରେ-
"ଦେହର ଦେହରେ ହଲିଉଡ ହୁଏ / ବ୍ୟଭିଚାର ଚରାଭୂଇଁ ॥" (ହଲିଉଡ୍-୧)

ରାସ୍ତାଘାଟରେ ଖୋଲାଖୋଲି ଭାବରେ ଯେମିତି ପ୍ରଣୟର ଚିତ୍ର ସାଧାରଣ ଅଟେ, ସେମିତି ବେଶ୍ୟାଳୟର ମଧ୍ୟ ପ୍ରାଧାନ୍ୟ ରହିଛି ବିଦେଶରେ । ପ୍ରଚୁର ମାତ୍ରାରେ ବେଶ୍ୟାଳୟ ଦେଖିବାକୁ ମିଳେ ବିଦେଶରେ । କବିଙ୍କ ଭାଷାରେ-
"ଦେହ ଦୋକାନକୁ ଲଗେଇ ଦେଇଚି ଭଡ଼ା" (ନ୍ୟୁୟର୍କ)
"ଦାରୀ ବଜାରରେ ପଶିଗଲେ ଥରେ / ମିଳେନାହିଁ ନିଜ ପତ୍ତା ।" (ଲସ୍ ଏଞ୍ଜେଲସ୍-୧)

ଏତେ ବେଶ୍ୟାମାନଙ୍କୁ ଦେଖି ସେମାନଙ୍କ ପ୍ରତି ଦୟା ଆସିଛି କବିଙ୍କର । କବି କହିଛନ୍ତି ପୃଥିବୀରେ ଏତେ ପରିମାଣରେ ବେଶ୍ୟା ଅଛନ୍ତି ବୋଲି ଜାଣିଥିଲେ ମୁଁ କେବେ ବି ମାତୃଗର୍ଭ ଦେଇ ଜନ୍ମ ହୋଇନଥାନ୍ତି ବୋଲି । କବିଙ୍କ ଭାଷାରେ-
"ପୃଥିବୀର ଏତେ ନାରୀ ବେଶ୍ୟାବୋଲି ଜାଣିଥିଲେ / କେବେ ମୁଁ ନଥାନ୍ତି ଆସି ମାତୃଗର୍ଭ ଦେଇ" (ଥାଇଲାଣ୍ଡର ଆକାଶ)

ବିଦେଶରେ କୋଠା ଅତି ଉଚ୍ଚ ଉଚ୍ଚ, କିନ୍ତୁ ନାରୀର ପୋଷାକ ଅତି ଛୋଟ ଛୋଟ । କାରଣ ତାଙ୍କର ସଂସ୍କୃତି ଦେହର ସଂସ୍କୃତି ଅଟେ । ତେଣୁ କିଏ କେତେ ପରିମାଣରେ ଦେହ ଦେଖେଇ ପାରୁଛି, ତା ଉପରେ ତାଙ୍କ ଭିତରେ ପ୍ରତିଯୋଗିତା ହୋଇଥାଏ । ବିଦେଶରେ ନାରୀ ଗୋଟିଏ ଦର୍ଶନୀୟ-ଉପଭୋଗର ବସ୍ତୁ ଅଟେ । ତା ନହେଲେ ପୁରୁଷ ପୁରା ପୋଷାକ ପିନ୍ଧିଥିବାବେଳେ ନାରୀ କାହିଁକି ଦେହ ଦେଖା ପୋଷାକ ପିନ୍ଧିଥାନ୍ତି, ତାହା ମଧ୍ୟ ଅତି ଥଣ୍ଡାରେ । ଏତେ କମ୍ ପୋଷାକ ପିନ୍ଧିଥାନ୍ତି ଯେ ନାରୀର ସମ୍ବେଦନଶୀଳ ଅଙ୍ଗ ମଧ୍ୟ ଅତି ସହଜରେ ଦେଖିବାକୁ ମିଳିଯାଇଥାଏ ।

କବିଙ୍କ ଭାଷାରେ-
"ପୋଷାକ ଫୁଟେଇ ଦିଶିଯାଉଅଛି ପିଚା ।" (ଲସ୍ ଏଞ୍ଜେଲସ୍-୧)
"ଗୋରୀର ଚିବୁକେ କଳାଯାଇ ଟିପା / ପିଚା ପେଣ୍ଡା ଦିଶେ ଦୂର ପାହାଡ଼ର ପିଠି ।" (ମିଆମି-୧)
"ପୁଅ ଝିଅ କିଛି ବିଚାର ନାହିଁ / ପେଟ ପିଠି ସବୁ ମୁକୁଳା ପଡ଼ିଚି" (ହଲାଣ୍ଡ)

ବିଦେଶରେ କୋଠାବାଡ଼ି, ଗାଡ଼ିମଟର ମାଳ ମାଳ, କିନ୍ତୁ ସେମାନଙ୍କ ପାଖରେ ମଣିଷପଣିଆ ବୋଲି ଗୋଟିଏ ଜିନିଷ ନାହିଁ । ଜୀବଜଗତର ଅତି ମୂଲ୍ୟବାନ ପଶୁପକ୍ଷୀଙ୍କ ପ୍ରତି ଟିକିଏ ହେଲେ ଦୟା ଭାବ ନାହିଁ ସେମାନଙ୍କର । ପଶୁପକ୍ଷୀମାନେ ଆମର ବନ୍ଧୁ ଅଟନ୍ତି । ସେମାନେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ମଣିଷର ଉପକାର ହିଁ କରିଥାନ୍ତି । କିନ୍ତୁ ମଣିଷ ସେମାନଙ୍କୁ ନିର୍ମମ ଭାବରେ ହତ୍ୟା କରି ତାକୁ ଅତି ଆନନ୍ଦରେ ଭୋଜନ କରିଥାଏ । ବିଦେଶୀ ଖାଦ୍ୟପେୟର ଚିତ୍ର ଦର୍ଶାଇବାକୁ ଯାଇ କବି ଲେଖିଛନ୍ତି-
"କୁକୁଡ଼ା ଟାଂକକୁ ଘୁଷୁରୀର ପୁଟା / ବିଫ୍‌ରେ ନାହିଁ ଝୋଳ ।।" (ଲସ୍ ଏଞ୍ଜେଲସ୍-୧)
"ଗୋରୁ ମାଉଁସରେ ଗୋଳେଇ ପିଉଛ ହୁଇସ୍କି-ଦାରୁ / ଘୁଷୁରୀ ହାଡ଼ରେ ଦାଂତ ମାଢ଼ିକୁ / କାମୁଡ଼ କୁକୁର ପରି / ଗଧର ଗାଲରେ ଚୁଂବନ ଦିଅ / ମିଆମି ନଗରୀ ସୁସଭ୍ୟ ନରନାରୀ ।।" (ମିଆମି-୧)

ବିଦେଶୀମାନେ କିପରି ପାଣିଠାରୁ ବେଶି ରମ୍, ବିଅରର ପ୍ରୟୋଗ କରିଥାନ୍ତି, ତାର ଚିତ୍ର ମଧ୍ୟ କବିତାରେ ଦେଖିବାକୁ ମିଳେ-
"ରମ୍‌ର ନଈ ଯାଉଛି ବହି / ବିଅର ଭିତରେ ଶୋଷ" (ଲଣ୍ଡନ)

ଭୌତିକ ବିକାଶ ହୋଇଥିଲେ ମଧ୍ୟ ପରିବେଶର ଅବସ୍ଥା ସେଠାରେ ଅତି ଦୟନୀୟ ଅଟେ । କୋଠାର ଛାଇ ଅତି ସହଜରେ ମିଳିଯିବ, କିନ୍ତୁ ଗଛର ଛାଇ ଖୋଜିଲେ ମିଳିବ ନାହିଁ । କାରଣ ସେଠାରେ ଗଛର ଜଙ୍ଗଲକୁ କାଟି ସବୁ କଂକ୍ରିଟ୍ ଜଙ୍ଗଲ ତିଆରି କରିସାରିଛନ୍ତି । ସେଠାରେ ଯେଉଁ କେତୋଟି ଗଛ ରହିଛି, ତାର ଛାଇକୁ କବି ତାଚ୍ଛଲ୍ୟ କରିଛନ୍ତି । କବିଙ୍କ ଭାଷାରେ-
"ଗଛ ତଳେ ନାହିଁ ଛାଇ / ବନ୍ଧ ରହିଅଛି ଦିଶେନା ଘାଇ" (ହଲିଉଡ୍-୨)
"ଗଛରତ ନାହିଁ ଛାଇ" (ହଲିଉଡ୍-୧)
"ଖଜୁରୀ ଗଛରେ ସହର ହେବକି ଛାଇ !!"(ଲସ୍ ଏଞ୍ଜେଲସ୍-୧)

ଉକ୍ତ କବିତା ମାଧ୍ୟମରେ ଭାରତବାସୀଙ୍କୁ ଚେତାଇବା ପାଇଁ ପ୍ରୟାସ କରିଛନ୍ତି କବି ପରୋକ୍ଷ ଭାବରେ । କାରଣ ଭାରତରେ ମଧ୍ୟ ବିଦେଶୀ ପରମ୍ପରା ଆରମ୍ଭ ହୋଇଯାଇଛି ଗଛର ଜଙ୍ଗଲ ସଫା କରି କଂକ୍ରିଟ୍ ଜଙ୍ଗଲ ତିଆରି କରିବାର ।

ଭୌତିକ ସ୍ତରରେ ଯେତେ ଉନ୍ନତି କରୁଛି, ଧ୍ୱଂସ ଅଭିମୁଖେ ମଧ୍ୟ ସେଇ ପରିମାଣରେ ଅଗ୍ରସର ହେଉଛି । ପ୍ରତି ମୁହୂର୍ତ୍ତରେ ଯୁଦ୍ଧର ଆଶଙ୍କା ରହିଛି ସର୍ବତ୍ର । କିନ୍ତୁ ଯୁଦ୍ଧର ଭୟାବହ ପରିଣାମ କଣ ହେବ, ସେ କଥା କେହି ଟିକିଏ ଭାବୁନାହାନ୍ତି । କବି ତାଙ୍କ କବିତାରେ ଯୁଦ୍ଧର ଭୟାବହ ପରିଣାମର ଚିତ୍ର ପ୍ରଦାନ କରିଛନ୍ତି-

"ମାଛି ମାରିବାକୁ ମଣିଷ ନ ଥିବେ / ଘାରେ ନଥିବେ ପୋକ / ପାଣିରେ ନ ଥିବେ ଜୋକ । / ପଦୁଅଁ ଫୁଟିବ ପାହାଡ଼ ଚୁଡ଼ାରେ / ଚିରଦିନ ପାଇଁ ବଂଦ୍ ହୋଇଯିବ / ଆଗ୍ନେୟ ଗିରି ଲାଭା ବରଫ ଉପରୁ ଲିଭିଯିବ ଦିନେ ଅସ୍ତ ସୂରୁଜ ଆଭା । ସମୁଦ୍ର ଉଝାଳି ମାଛମାନେ ଯିବେ ଭାସି ମଣିଷ ସଭ୍ୟତା ଶୂନ୍ୟରେ ଯିବ ମିଶି । ନତୁବା ମଣିଷ ପିଇବ ପେଟ୍ରୋଲ ପାଣି ଗଳା ହେବ ଧୂଆଁ ନଳ ଭକ୍ ଭକ୍ ଧୂଆଁ ବାହାରି ପଡ଼ିବ ପେଟ ହେବ ରସାତଳ । ହୀରୋସୀମା ଧ୍ୱଂସ ମଶାଣୀ ଭିତରୁ ହାଡ଼ରେ ଲାଗିବ ମାଂସ ମାଟିକୁ ବିଦାରୀ ନିରୀହ ମଣିଷ ଚିତ୍କାର କରିବ ଲୋଡ଼ାନାହିଁ ଆଉ ଯୁଦ୍ଧ । (ଟୋକିଓ ଭାବନା)

ପ୍ରତିଟି ଦେଶର ଲୋକମାନଙ୍କର ଶରୀର ଗଠନ ଭିନ୍ନ ଭିନ୍ନ ଅଟେ । କବି ନାନା ଦେଶ ଭ୍ରମଣ କରୁଥିବାବେଳେ ନାନା ପ୍ରକାର ଲୋକଙ୍କୁ ଦେଖି ତାଙ୍କ ମନରେ ଯେଉଁ ପ୍ରତିକ୍ରିୟା ଦେଖାଦେଇଛି, ତାହା ତାଙ୍କ କବିତାରେ ଫୁଟିଉଠିଛି-

"ଜାପାନୀ ଝିଅର ଭାତରଂଗ ଗାଲ / ଦୁଧ ରଂଗ ଦେହ, ଲହୁଣୀ ଓଠ / ଥନ ତ ଗୋଟିମି ତାଳ / ନ ହେଲେ ବା ଦୁଇ ପୁଣ୍ୟ ମଂଦିର ପୀଠ ।" (ଓସାକା ସହର ଛାତି)

"ପାଚିଲା କଦଳୀ ଚୋପା ରଂଗ ଦେହ / ମହୁରଂଗର ଓଠ / କାନ ତ ଟାଙ୍କୁଆ, ଗାଲରେ ଆଂବୁଲ ରସ । / ଲାଳ ବୋହିଯିବ ଖାଇତ ହେବନି / ପିଟା ପିତଳର ବେଲା / କପାଳ ପଖାଳ, ଆଖି ହୁଏ ଶାଗ / ଚେପା ନାକତଳ ତାଟିଆ ପୁଡ଼ାରେ ରାଗ, / ନିଶ ଦାଢ଼ି ନାହିଁ ପୁରୁଷ ଜାତିର / ନାରୀର ଛାତିରେ ଥନ- / ଜାଣି ହୁଏ ନାହିଁ କିଏ ବାମା କିଏ ଶ୍ୟାମ ।।" (ଟୋକିଓ)

କବି ଯେଉଁ ଯେଉଁ ଦେଶକୁ ଯାଇଛନ୍ତି, ସେଠାରେ ପହଞ୍ଚିଲା ପରେ ସେଠାକାର ଇତିହାସ କଥା ମନେ ପଡ଼ିଯାଇଛି । ଜର୍ମାନ୍‌ରେ ପହଞ୍ଚିଲା ପରେ ହିଟ୍‌ଲର୍ କଥା ମନେ ପଡ଼ିଯାଇଛି, ଜାପାନରେ ମନେ ପଡ଼ିଯାଇଛି ନାଗାସାକୀ ଓ ହୀରୋସୀମା ଉପରେ ୧୯୪୫ ମସିହା ଅଗଷ୍ଟ ମାସରେ ଆମେରିକା ପରମାଣୁ ବୋମା ପକାଇଥିବା କଥା । କବିଙ୍କ ଲେଖନୀରେ ଝରିଉଠିଛି-

"ଜର୍ମାନ୍ ହତଭାଗା / ଚରମ ଲୋଲୁପ ହିଟଲର ସେହି / କଲା ତୋତେ ହଟହଟା ।।" (ଜର୍ମାନ)

"କେତେ ଯାତନାର ଜାତକ ତୋହର / ବିଶ୍ୱଯୁଦ୍ଧରେ ଯାଇଚି ଜଳି / ହାୟ ! ନାଗାସାକୀ ହୀରୋସୀମା ମାଟି / ମଣିଷ ରକତେ ନାଲି । / ଅଶ୍ରୁରେ ଅଶ୍ରୁରେ ହାତର ପାଉଁଶ / ପରମାଣୁ ଘଟେ ଝଡ଼ର ନିଃଶ୍ୱାସ / କେତେ ଝଡ଼ ଅଗ୍ନି ଯାଇଅଛି ଜଳି / ଧ୍ୱଂସ ସ୍ତୂପ ତଳୁ ମଥା ଟେକି ଉଠେ ଘାସ ।।" (ଟୋକିଓ)

ମଣିଷ ଯୁଆଡ଼େ ବି ଯାଉ, ନିଜ ଜନ୍ମଭୂମି କଥା ସବୁବେଳେ ମନେ ପଡ଼ିଯାଏ । ସେଇ ନ୍ୟାୟରେ କବି ଯେଉଁ ଦେଶକୁ ଯାଇଛନ୍ତି, ସେ ଦେଶରେ ଯାହା ବି ଦେଖିଛନ୍ତି ତାଙ୍କର ହଠାତ୍ ମନେ ପଡ଼ିଯାଇଛି ଭାରତର କଥା । ବିଦେଶୀ ସଂସ୍କୃତି ସହିତ ଭାରତର ସଂସ୍କୃତିକୁ ତୁଳନା କରିଛନ୍ତି । ଅର୍ଥାତ୍ ଭାରତର ସଂସ୍କୃତି ବିଦେଶରେ ଖୋଜିଛନ୍ତି । କବିଙ୍କ ଭାଷାରେ-

"ଦେଖୁଛି କି ସତେ ବଡ଼ଦାଣ୍ଡରେ ଯାତ !" (ହୋନଲୁଲୁ-୧)

"ଦାଣ୍ଡରେ ତୋର ଦେଖୁନାହିଁ କୁଆ / ବାରିରେ କୁକୁଡ଼ା ଅବା ମଖମଲି ଫୁଲ / ପହଁରେନି ତୋର ପୋଖରୀରେ ହଂସ / ଫୁଟେ ନାଲି କଇଁ / ଦିଶେ ନାଇଁ କେଣେ ମନ୍ଦାର ଫୁଲ ଲାଲ । / ବାଳରେ ରିବନ ଗାଲରେ ଚୁଂବନ ନାହିଁ / ବଣରେ ପବନ କାହିଁ ।।" (ଟୋକିଓ)

"ଗରୀବ ଅଛନ୍ତି ଚାଳଘର ନାଇଁ / ମାଡ଼େନା କଖାରୁ ଡଂକ" (ମିଆମି-୨)

"କାଳିଜାଈ ପରି ପାହାଡ଼ ଦିଶଇ ପାରାବାରେ / ଜାହାଜ ଦିଶଇ ଛୋଟ ତରୀଟିଏ ଚିଲିକାରେ ।" (ହଂକଂ-୨)

"ଗାଁ ନଦୀ ମୋର ଆହାକି ସୁଂଦର ପଠାରେ ହସଇ କାଶ" (ଲଣ୍ଡନ)

ମଣିଷ କରୁଥିବା କର୍ମ ହିଁ ପ୍ରାରବ୍ଧ ହୋଇ ତା ଭାଗ୍ୟରେ ପରିଣତ ହୁଏ ଓ ସେହି ଅନୁଯାୟୀ ତାକୁ ଫଳ ଭୋଗ କରିବାକୁ ପଡ଼ିଥାଏ । ବିଦେଶ ଯାତ୍ରା ସମୟରେ ଯେଉଁ ଦେଶରେ ପହଞ୍ଚିଛନ୍ତି, ସେଠାରେ ଯଦି କିଛି ଅନ୍ୟାୟ ଦେଖୁଛନ୍ତି, ତେବେ କବି କର୍ମଫଳ, ପ୍ରାରବ୍ଧ କଥା ପ୍ରକାଶ କରିଛନ୍ତି ତାଙ୍କ କବିତାରେ । କବିଙ୍କ ଭାଷାରେ-

"ପ୍ରାରବ୍ଧ ସୂଚାଏ ପୃଥିବୀରେ ନିଜ କର୍ମ ।।" (ହୋନଲୁଲୁ-୧)

"ବିକଳାଙ୍ଗ ହେବ ଆଉ ଥରେ ତୁମେ / ଲୋପ ହେବ ତୁମ ଜାତି / ପ୍ରାରବ୍ଧର କରାମତି ।। / କର୍ମ ଫଳତ ଆପଣା କପାଳେ / ହାତ ମାରି ଦେଲେ / ଜଣାପଡ଼େ ନାହିଁ ଭାଗ୍ୟ ଫଳର ଗତି / ମଣିଷ କରମ ନିଜକୁ ଚଳାଏ / ଯେମିତି ଜଳାଏ ତେଲ ଲଣ୍ଠନ ବତୀ ।" (ଜର୍ମାନ)

ସାଧାରଣ ମଣିଷ ଯାହା ଦେଖିପାରେ ନାହିଁ, କବି ସେସବୁ ଦେଖିଥାଏ । ଗୋଟିଏ ଦୃଶ୍ୟ ଦେଖି ସାଧାରଣ ମଣିଷ ଯାହା ଭାବିପାରେ ନାହିଁ, କବିଟିଏ ନୂଆ କିଛି ଭାବିପାରିଥାଏ । ସେଥିପାଇଁ କବିଙ୍କୁ ଦ୍ୱିତୀୟ ଈଶ୍ୱରର ଆଖ୍ୟା ଦିଆଯାଇଛି । କବି ପ୍ରସନ୍ନ ପାଟଶାଣୀଙ୍କର ଭାବନାଶକ୍ତି, ଚିନ୍ତାଧାରା, ଦେଖିବା ଶୈଳୀ ଥିଲା ଅସାଧାରଣ । ଗୋଟିଏ ସାଧାରଣ ଦୃଶ୍ୟକୁ ଦେଖି କିଛି ଭିନ୍ନ କଥା ତାଙ୍କ ମନକୁ ଆସୁଥିଲା । ଉଦାହରଣସ୍ୱରୂପ-

"ପାହାଡ଼ ପିନ୍ଧିଛି ଗଛର ଲୁଗା ।।" (ନ୍ୟୁୟର୍କ)

"ଯେଉଁଆଡ଼େ ଦେଖେ ନୀଳ ରାଇଜରେ / ଉଡ଼େ ମୋ ବିମାନ କପୋତ ଧଳା / ନୀଳ ଚଦରରେ ପୃଥିବୀ ଶୋଇଛି / ମଥାରେ ଦେଇଛି ନରମ ତକିଆ ରେଶମୀ ତୁଳା ।" (ହୋନଲୁଲୁ-୧)

କବିତା ହେଉଛି କବି ପ୍ରସନ୍ନ କୁମାର ପାଟଶାଣୀଙ୍କର ଜୀବନ । ପଦେ ପଦେ କଥାରେ ସେ କବିତା ଗାଆନ୍ତି । ତାଙ୍କୁ କୌଣସି ପ୍ରଶ୍ନ ପଚାରିଲେ, ତାର ଉତ୍ତର ସେ କେବଳ କବିତାରେ କହିଦିଅନ୍ତି । ବୋଧହୁଏ ସେ ଏକମାତ୍ର ବ୍ୟକ୍ତି, ଯିଏ ବିନା ଗଦ୍ୟରେ ମଧ୍ୟ ଜୀବନ ତମାମ୍ କେବଳ କବିତା କହି ଜୀବନଯାପନ କରିପାରିବେ । ତାଙ୍କ ପ୍ରତିଟି କବିତାରେ ମା, ମାଟି, ଜନନୀ, ଜାତି, ଭାଷା, କଳା, ସଂସ୍କୃତି କଥା ହିଁ ସାଧାରଣ ଭାବରେ ଦେଖିବାକୁ ମିଳିଥାଏ ।

# ବାସ୍ତବ ଜୀବନର ରୂପକାର କବି ଭଗବାନ ଜୟସିଂହ

ଗିରିଜା ଶଙ୍କର ସେଠୀ

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ନିଆରା ଢଙ୍ଗରେ ମସୀ ଚାଳନା କରୁଥିବା କେତେଜଣ କବିଙ୍କ ମଧ୍ୟରେ କବି ଭଗବାନ ଜୟସିଂହ ଅନ୍ୟତମ । କବି ଭଗବାନ ଜୟସିଂହ ଜଣେ ବିଭୋର-ଆତ୍ମିକ ମଣିଷ । ଜୀବନପ୍ରତି ଏକ ଅଭିନବ ଦୃଷ୍ଟିଭଙ୍ଗୀ, ନିଆରା ଜୀବନାନୁଭୂତିର ଅନେକ ସଂଗୁପ୍ତ ରହସ୍ୟ ତାଙ୍କ କବିତାରେ ପ୍ରତିଧ୍ୱନିତ । ଯୁବସୁଲଭ ଢଙ୍ଗରେ ଯେ କେବଳ ପ୍ରେମ-ପ୍ରଣୟଧର୍ମୀ ରୋମାଣ୍ଟିକ୍ କବିତା ଲେଖିଛନ୍ତି ତାହା ନୁହେଁ, ବରଂ ମାର୍ଜିତ ଚରିତ୍ରର ଚିତ୍ରସହ ବିଶ୍ୱକଲ୍ୟାଣ ପାଇଁ ବ୍ୟକ୍ତି ମଣିଷଟି ନିଜକୁ କିପରି ଗଢ଼ି ତୋଳିବ, ତା'ର ପ୍ରତିଛବି ତାଙ୍କ କବିତା ଗୁଡ଼ିକରେ ଦୃଶ୍ୟମାନ ହୁଏ । ଅଧୁନା ବସ୍ତୁବାଦୀ ଦୁନିଆରେ କବିଟିଏ କେତେ ବାସ୍ତବବାଦୀ, ତା'ର ପରିଚୟ ମିଳେ କବି ଭଗବାନ ଜୟସିଂହ କବିତା ପାଠକଲେ ।

ଅତ୍ୟାଧୁନିକ ମଣିଷ ମନର ଜଟିଳତା, ଜୀବନଯନ୍ତ୍ରଣା; ଆତ୍ମଗ୍ଲାନି, ଶୋଷଣ ଓ ଅଧଃପତନର ବିକଳଚିତ୍ରକୁ ଚିତ୍ରଣ କରିବା ସହିତ ତା'ବିରୋଧରେ ତୀବ୍ର ପ୍ରତିକ୍ରିୟା ପ୍ରକଟ କରିଛନ୍ତି କବି ଶ୍ରୀ ଜୟସିଂହ-

"ଏଠି ସବୁ ହସର ହାୱାରେ / ଫେଣ୍ଟିହୁଏ ଶୋକ ଓ ସନ୍ତାପ / ସବୁଦିଗେ ଅପଚାର, ଅନାଚାର / ଯନ୍ତ୍ରଣାର କ୍ଲେଶ / x x x / ଯେଉଁଆଡ଼େ ଆଖିଯାଏ / ଖାଲି ଶ୍ମଶାନ, ଖାଲି ଶୂନ୍ୟତା" (ପୁରୀ, ଘୋଷଯାତ୍ରା)

ନିଃସଙ୍ଗତାର ଆଉ ନିର୍ଜନତାର ପୀଡ଼ା ଆଜିର ମଣିଷକୁ କିଭଳି ପ୍ରତ୍ୟେକ ମୁହୂର୍ତ୍ତରେ ତିଳ ତିଳ କରି ଦଗ୍ଧ କରୁଛି, ଅସରନ୍ତି ବିରକ୍ତିକର ସମୟର ଗୁରୁଭାର କିଭଳି ଦୁର୍ବହ ବୋଝ ହୋଇ ତା'ଉପରେ ମାଡ଼ିବସୁଛି, ତାହା ତାଙ୍କ କବିତା ପାଠକଲେ ଜାଣିହୁଏ ।

ମଣିଷ ଜନ୍ମହୋଇଛି ମାନେ ତା'ର ମୃତ୍ୟୁ ସୁନିଶ୍ଚିତ । 'ମର୍ତ୍ତ୍ୟମଣ୍ଡଳେ ଦେହ ବହି / ଦେବତା ହୋଇଲେ ମରଇ' । ଏହି ମର୍ତ୍ତ୍ୟମଣ୍ଡଳରେ ଯିଏ ଜନ୍ମ ହୋଇଛି, ସେ ନିଶ୍ଚୟ ମୃତ୍ୟୁବରଣ କରିବ । ଏହା ହିଁ ସତ୍ୟ । ମୃତ୍ୟୁ ନିଷ୍ଠୁର ପୁଣି ନିର୍ମମ । ଏଠି କେହି କାହାର ନୁହଁନ୍ତି । ସମସ୍ତେ ନିଜ ନିଜର ଅଭିନୟ ସାରି ଫେରିଯାଆନ୍ତି

କାଳବକ୍ଷକୁ । କବି ତାଙ୍କ ପିତାଙ୍କର ସ୍ନେହୋଷ୍ମ ଆଙ୍ଗୁଳି ଧରି ଚାଲିବା ସମୟରେ ସେଇ ଆଙ୍ଗୁଳିଟିକୁ ହଠାତ୍ ତାଙ୍କଠାରୁ ଛଡ଼ାଇ ନିଆଯାଇଛି । ତାଙ୍କ ଆଖି ସାମ୍ନାରେ ଆକାଶର ନିରଙ୍କୁଶ ଛାତିରେ ପବନର ସର୍ବମୟତା ଭିତରେ, ଶ୍ମଶାନର ନିସ୍ତବ୍ଧତା ଭିତରେ, ଜୀବନ ଓ ମୃତ୍ୟୁର ଦ୍ୱନ୍ଦ୍ୱ ଭିତରେ ସମ୍ବେଦନଶୀଳ କବିପ୍ରାଣ ଠିଆ ହୋଇଛି ବାଟ ବତେଇବା ପାଇଁ ।

"ତମର ନିଷ୍କଳ ଶରୀରକୁ ଜ୍ୱଳନ୍ତ କାଠର / ଲୋଭନୀୟ ଅଗ୍ନି ଉପରେ ଫିଙ୍ଗିଦେଇ ଫେରିବା ବାଟରେ ଅନୁଭବ କଲି / x x x / ବଙ୍କା ବାଡ଼ି ଠକ୍‌ଠକ୍ କରି ଆଗେଇ ଚାଲିଚ / ବାଟ କଢ଼େଇ ନେଉଚ ପୂର୍ବପରି / ପୂର୍ବପରି ପ୍ରତ୍ୟେକ ଛକରେ କହିଦେଉଚ / ଏ ରାସ୍ତା କେତେଦୂର, ସେ ରାସ୍ତା କେତେଦୂର / ସବୁ ରାସ୍ତା କେତେଦୂର ।" (ଶ୍ମଶାନରେ, ପିତୃସ୍ମୃତି)

ଜୀବନର ଏଇ ଚରମ ଶୋକାବହ ଘଟଣାକୁ କବି କେତୋଟି କ୍ଷୁଦ୍ର କ୍ଷୁଦ୍ର ବର୍ଣ୍ଣନା ସାହାଯ୍ୟରେ ପ୍ରଧାନ ଘଟଣାଟିର ଏକ ପୂର୍ଣ୍ଣରୂପ ପାଠକମାନଙ୍କ ଆଗରେ ବାଢ଼ି ଦେଇଛନ୍ତି ।

ପଞ୍ଚମହାଭୂତରେ ଗଢ଼ା ଏହି ମଣିଷ ଶରୀର ପଞ୍ଚଭୂତରେ ମିଶିଯାଏ କିନ୍ତୁ ଆତ୍ମା ଅମର । ସେ ଆତ୍ମାକୁ ପାପ-ପୁଣ୍ୟ, ଧୂଳି-ମଳି କିଛି ଲାଗିନଥାଏ । ସେ କେବଳ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ ହୁଏ । ଗୋଟିଏ ଘଟରୁ ଅନ୍ୟ ଏକ ଘଟକୁ ପ୍ରବେଶ କରିଥାଏ । ତେଣୁ ପିତୃସ୍ନେହରୁ ବଞ୍ଚିତ କବିପ୍ରାଣ ଉହଳ ବିକଳ ହୋଇଉଠିଛି ପିତାଙ୍କର ରୂପ ଦେଖିବାପାଇଁ । କବି ଖୋଜିଛନ୍ତି କାଉ ମାନଙ୍କୁ ଖାଇ ଦେବା ସମୟରେ, ବିରାଡ଼ିକୁ କ୍ଷୀରି ପରଷିବା ସମୟରେ, ପୋଖରୀ ତୁଠରେ, ଶୁଖିଲା ପତ୍ର ସନ୍ଧିରେ, ଅନାବନା ପକ୍ଷୀଙ୍କୁ ଚାହିଁବା ବେଳେ-

"କାଉକୁ ତମେ ଭାବି ଆଦରରେ / ଖାଇ ବିଞ୍ଚୁଅଛି / ବିରାଡ଼ିକୁ ତମେ ଭାବି / ଖିରି ପରଷିଛି / ପୋଖରୀ ତୁଠରେ ପ୍ରେତକ୍ରିୟା / କଲାବେଳେ, ଗଛପରେ / ଅନାବନା ପକ୍ଷୀଙ୍କୁ ଚାହିଁଛି / କାଳେ କେତେବେଳେ / ତମ ଭଳି କିଏ ଦିଶିବ !" (ଯେଉଁ ରୂପରେ ଥାଅ)

କବି କିନ୍ତୁ ବିଶ୍ୱାସ ହରାଇନାହାନ୍ତି ବରଂ ଅଧିକ ଆଶାବାଦୀ ହୋଇଉଠିଛନ୍ତି ଯେ, ତାଙ୍କ ପିତା ଯେଉଁ ରୂପରେ ଥିଲେବି ତାଙ୍କ ଆଶୀର୍ବାଦର ପବନ କବିଙ୍କର ଜୀବନର ଖାଣ୍ଡବ-ଅରଣ୍ୟରେ ସ୍ପର୍ଶ କରୁଥିବ ଅହର୍ନିଶି-

"ମୋର କିନ୍ତୁ ବିଶ୍ୱାସ / ତମେ ଯେଉଁ ରୂପରେ ଥାଅ / ତମ ଆଶୀର୍ବାଦର ପବନ /

ବାରଂବାର ଛୁଉଁଅଛି / ମୋ ଜୀବନ ଖାଣ୍ଡବ ଅରଣ୍ୟ ।" (ଯେଉଁ ରୂପରେ ଥାଅ)

ପୁରୀ ହେଉଛି ଭାରତର ଏକ ପବିତ୍ର ତୀର୍ଥସ୍ଥାନ, ସଂସାରୀ ମଣିଷମାନେ ଏଠାକୁ ଆସନ୍ତି ଏହାର ପବିତ୍ର ମହୋଦଧି, ନରେନ୍ଦ୍ର, ଇନ୍ଦ୍ରଦ୍ୟୁମ୍ନ, ମାର୍କଣ୍ଡ ଓ ଶ୍ୱେତଗଙ୍ଗାରେ ସ୍ନାନକରି ଜଗତର ନାଥ ଜଗନ୍ନାଥଙ୍କୁ ଦର୍ଶନ କରି ଜୀବନବ୍ୟାପୀ କରିଥିବା ସମସ୍ତ ପାପକୁ ଧୌତ କରି ସଂସାରୀ ଚିନ୍ତା ବାହାରେ ଜୀବନର ମୁକ୍ତିକାମନା କରିବା ପାଇଁ । ଲହଡ଼ିର ସିଡ଼ି ଦେଇ ଉଠୁଥିବା ଜହ୍ନର କିରଣ ଦେଖିବା ପାଇଁ, ସମୁଦ୍ରକୁ ଆସୁଥିବା ବିଭିନ୍ନ ସାମୁଦ୍ରିକ ପକ୍ଷୀଙ୍କୁ ଦେଖିବା ପାଇଁ । କିନ୍ତୁ ପୁରୀର ସେହି ପ୍ରାକୃତିକ ସୌନ୍ଦର୍ଯ୍ୟ ଆଉ ନାହିଁ । ତାହା ନଷ୍ଟ ହେବାକୁ ଲାଗିଛି । ଛେନା, କ୍ଷୀର, ସର, ଅବଢ଼ାର ବାସ୍ନା ବଦଳରେ ଏଠି ମଦ, ଚରସ, ଗଂଜେଇର ଧୂଆଁରେ ଏହି ସହର ଧୂଆଁଳିଆ ହୋଇଯାଇଛି । ତେଣୁ କବି ଲେଖିଛନ୍ତି-

"ଚରସ ଓ ଗଂଜେଇରେ / ଗୁଂଜରିତ ହୁଏ ଏଠି / ସଂପର୍କର ବାଇଶି ପାହାଚ / x x x / ଏଠି ସମୁଦ୍ର କୂଳରେ / କୂଳହୀନ ଲାଗେ ଏ ଜୀବନ ।" (ପୁରୀ)

ନିଃସଂଗତା ଓ ଅଶାନ୍ତିରେ ଛଟପଟ ହେଉଥିବା କବି ଏଠି ଶୂନ୍ୟତା ଓ ନିରର୍ଥକତାରେ ନୀରବ, ନିଶ୍ଚଳ । ଜୀବନ ମୃତ ଏକ ଚେତନାର କୋଠରୀରେ ଆବଦ୍ଧ । କେବେ ଭୟଭୀତ ତ ପୁଣି କେବେ ସ୍ପନ୍ଦିତ ।

ଜୀବନର ବିଫଳତା, କ୍ଷଣଭଂଗୁରତା, ବିଡ଼ମ୍ବନା ଓ ଅଚରିତାର୍ଥକୁ ବ୍ୟକ୍ତିସତ୍ତା ଭୋଗିଲେ ବି ତାହା କବି ମାନନ୍ତି ନାହିଁ । ଅନ୍ୟ ଅର୍ଥରେ କହିଲେ ନୈରାଶ୍ୟ ବା ବିଷାଦ ଅତିକ୍ରମ କରି ଜୀବନ ଯେ ଆଶାର, ଆଲୋକର, ଅମୃତର ଉଦ୍‌ଘୋଷଣା କରେ, କବି ଏହା ଉପଲବ୍ଧି କରିଛନ୍ତି ।

କବି ଆଶାବାଦୀ ହୋଇଛନ୍ତି ଯେ ଦିନେନା ଦିନେ ଚେତନାର କିରଣ ବିଚ୍ଛୁରିତ ହେବ । ଗଛର ଶିରାରେ ଋତୁଙ୍କର ସ୍ପନ୍ଦନ ଶୁଭିବ । ପକ୍ଷୀଙ୍କ କଣ୍ଠରେ ସକାଳର ମଧୁର ସ୍ୱରଝଂକାର ଗୁଞ୍ଜରି ଉଠିବ । ଯାହା କବି କଲମରୁ ଝରିଆସିଛି-

"କେବେ ପୁଣି ବସୁଦେବ ପାଇଁ / କବାଟ ଖୋଲିଯିବ / ନଈ ଏବଂ ସମୁଦ୍ରରେ / x x x / କେବେ ପୁଣି ଗଛର ଶିରାରେ / ଶୁଭିବ ଋତୁଙ୍କ ସ୍ପନ୍ଦନ / ପକ୍ଷୀଙ୍କ କଣ୍ଠରେ / x x x / ଚେତନାର ଦ୍ୱାର ଖୋଲିଯିବ / ଏ ସହର ଉପକଣ୍ଠ ଦେଇ / ସଂପର୍କର ସମୁଦ୍ର ଗର୍ଜିବ ।"

କବି ଭଗବାନ ଜୟସିଂହ ନିଜ ଜୀବନ ଦର୍ଶନର ସ୍ୱତନ୍ତ୍ର ଦୃଷ୍ଟିରେ ନଦୀକୁ ଦେଖିଛନ୍ତି । ନଈପଠା କବିଙ୍କୁ ଆଉ ଭଲ ଲାଗୁନାହିଁ । ନଈର କୁଳୁକୁଳୁ ଶବ୍ଦ

ଶୁଣିପାରୁନାହାନ୍ତି । ସମାଜର ପରିବର୍ତ୍ତିତ ପରିସ୍ଥିତି, ନିଜ ଉଦାସପଣିଆ, ନିଃସଂଗତା, ନୈରାଶ୍ୟ, ସଂସାର ପ୍ରତି ରହିଥିବା ଗ୍ଲାନି, ଅବଶୋଷ ଭିତରେ ରହି କବିପ୍ରାଣ ଅଣନିଃଶ୍ୱାସୀ ହୋଇପଡ଼ିଛି । ସେ ନିଜେ ନଈ ହୋଇ ମିଶିଯିବାକୁ ଚାହିଁଛନ୍ତି ସମୁଦ୍ରର କରାଳ ବକ୍ଷରେ । କବିଙ୍କୁ ଆଛନ୍ନ କରିଛି ମୃତ୍ୟୁଚେତନା-

"ଆଜି ଚାଲ ଲୀନ ହେବା / ଏ ନଈରେ, ଏ ନଈର ମଧୁମତ୍ତ / ନିଃଶବ୍ଦ ସ୍ରୋତରେ / ଆସ ଆମେ ମିଶିଯିବା ନଈ ହୋଇ / କିଛି କାଳ ବ୍ୟାପି ନେଇ / ମହାକାଳ ସମୁଦ୍ର ଛାତିରେ ।" (ନଦୀକୂଳରେ ଜୀବନ ଚିନ୍ତା, ନିର୍ବାସନରେ ପକ୍ଷୀ)

ଜୀବନର ଆଲୋକ-ଅନ୍ଧାରର କୁହୁଡ଼ି ଭିତରେ ଅଦୃଶ୍ୟ ହେବାର ଚିତ୍ର ଦୃଶ୍ୟମାନ ହୋଇଛି କବିଙ୍କୁ- "ଏକ ଅପୂର୍ବ ରୋମାଞ୍ଚେ / ଦୃଶ୍ୟହୁଏ ଅଦୃଶ୍ୟ ଓ / ଅଦୃଶ୍ୟର ନାମାଙ୍କନ / ମୃତ୍ୟୁର ଚିତ୍ରରେ ।"

ଜୀବନ ବଞ୍ଚିବା ପାଇଁ ଦୁଃଖକୁ ବରଣ ନକଲେ ଜୀବନର ଗଭୀରତାକୁ ମାପିହେବନି । ଜୀବନର କିଛି କଥା ନିବିଡ଼ ଲାଗିବନି । ନଦୀ କୂଳରେ ଠିଆ ହୋଇ କବି ଯେଉଁଆଡ଼େ ଆଖି ପହଁରେଇଛନ୍ତି, ଖାଲି ଦୁଃଖକୁ ହିଁ ଭେଟିଛନ୍ତି । ଶୂନ୍ୟ ଆକାଶକୁ ଚାହିଁଲେ ଦୁଃଖ, ନଈର ପରିବ୍ୟାପ୍ତ ବାଲିକୁ ଚାହିଁଲେ ଦୁଃଖ, ପବନର ମୃଦୁ ସ୍ପର୍ଶରେ ବି କବି ଦୁଃଖକୁ ଅନୁଭବ କରିଛନ୍ତି । ତେଣୁ ତାଙ୍କ କଲମରୁ ଝରିପଡ଼ିଛି ଦୁଃଖବୋଧର କବିତା-

"ଆଜି ଏ ନଈକୂଳରେ / ଶୂନ୍ୟ ଆକାଶକୁ ଚାହିଁଲେ ଦୁଃଖ"

କବି ଭଗବାନ ଜୟସିଂହଙ୍କ କବିତା ବହୁମାତ୍ରାରେ ବାସ୍ତବତାମୁଖୀ । ସମକାଳୀନତାକୁ ପୁଞ୍ଜିକରି ଗଢ଼ିଉଠିଛି ତାଙ୍କ କାବ୍ୟଚେତନାର ସୌଧ । ନିଜର ଚାରିପାର୍ଶ୍ୱ, ଜୀବନ ଓ ଜଗତକୁ ଅନୁଧ୍ୟାନ କରି ଆଞ୍ଚଳିକ ସମସ୍ୟା, ବିସ୍ଥାପନ, ଦଙ୍ଗା ଭ୍ରଷ୍ଟରାଜନୀତି, ଈଶ୍ୱର, ସମୟ ଓ ମୃତ୍ୟୁର ନିକଟରେ କବିର ଲେଖନୀ ଅଟକି ଯାଇନି ବରଂ ତା'ବିରୁଦ୍ଧରେ ପ୍ରତିବାଦ ତୋଳି କବି ବୈପ୍ଳବିକ ସ୍ୱର ଉତ୍ତୋଳନ କରିଛନ୍ତି । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବାଦ, ନିର୍ଦ୍ଦିଷ୍ଟ ଭାବକୁ ପୁଞ୍ଜିକରି କବି ଗତି କରିନାହାନ୍ତି । ବରଂ ଯାହା କହିଛନ୍ତି ସ୍ପଷ୍ଟ ଭାବରେ ସତ୍ୟ ଓ ବାସ୍ତବତାକୁ କାବ୍ୟିକ ଭାବବ୍ୟଞ୍ଜନାରେ ଏବଂ କଳାତ୍ମକ ଶୈଳୀରେ ଉପସ୍ଥାପନ କରିଛନ୍ତି ।

ଅଶୀ ଦଶକରେ ବିଶେଷ ପ୍ରତିଷ୍ଠାର ଅଧିକାରୀ ହୋଇଥିବା କବି ଭଗବାନ ଜୟସିଂହ ନିଜର ଏକ ସ୍ୱତନ୍ତ୍ର କାବ୍ୟଶୈଳୀ ନିର୍ମାଣ କରି ଯଥେଷ୍ଟ ସଫଳତା ଅର୍ଜନ କରିଛନ୍ତି । ଏହାକୁ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରିବାକୁ ହେବ ।

# ତନୁଲତାର କବି
# ସୁନୀଲ୍ କୁମାର ପୃଷ୍ଟି

ଡ. ସୋମନାଥ ବିଷୋୟୀ

ଆମ ସମୟର ଜଣେ ପ୍ରବୀଣ କାବ୍ୟସ୍ରଷ୍ଟା ସୁନୀଲ୍ କୁମାର ପୃଷ୍ଟି ଓଡ଼ିଶାର ଉତ୍ତରାଧୁନିକ କାବ୍ୟଜଗତରେ ବେଶ୍ ଜଣାଶୁଣା । ଜୀବନରେ ସେମିତି ବିଶେଷ ଭାବରେ କିଛି ଆଶା ନଥିବା ତାଙ୍କର ଜୀବନ ଛାଇଆଲୁଅର ଖେଳ ଭିତରେ ବହି ଯାଉଥିବା ଗୋଟେ ନୀରବତାର ନଈ । ପ୍ରକୃତରେ ଦେଖିବାକୁ ଗଲେ କବି ସୁନୀଲ୍‌ଙ୍କ ଜୀବନରେ ଏକଥାଟି ସତ୍ୟ କେବଳ ନୁହେଁ, ପ୍ରତ୍ୟେକ କବିର ଜୀବନରେ ଏହା ସତ୍ୟ । ଏହା ଯେମିତି କବିର ଗୋଟେ ଦର୍ଶନ । ଆଉ ଏ ଦର୍ଶନ ଚିରନ୍ତନ ।

ପ୍ରତ୍ୟେକଟି କବିସତ୍ତା ଚିରନ୍ତନ । କବି ତେଣୁ ଅମର । ସବୁ କବି ସାର୍ବଜନୀନ ଓ ସାର୍ବକାଳୀନ । କେବଳ ବହିଯାଉଥିବା ସମୟର ପ୍ରେକ୍ଷାପଟରେ ବଦଳିଯାଏ ଜୀବନର ରଙ୍ଗ, ବାସ୍ତବତାର ଚିତ୍ର, ଚେତନାର ଚୌହଦୀ, ଅନୁଭବର ପରିଧି, ଉପଲବ୍ଧିର ପରିସୀମା, ଜ୍ଞାନ ଓ ବିଜ୍ଞାନର ଭୂମି ଇତ୍ୟାଦି । ଏହି ପରିବର୍ତ୍ତନଶୀଳତା ମଧରେ ସବୁ କାଳରେ ସବୁ ମଣିଷଙ୍କ ମେଳରେ ନୀରବ ସାଧକଟିଏ ହେଇ କବି ବଞ୍ଚିଥାଏ । ସେ ଖୁବ୍ ସାଦାସିଧା, ଖୁବ୍ ସାଦାସିଧା ତାର ସଂସାର ।

କବି ତ ସ୍ୱୟଂ ଗୋଟେ ପ୍ରଶ୍ନବାଚୀ । ତାକୁ କିଏସେ କାହିଁକି ପ୍ରଶ୍ନ ପଚାରିବ ? ପଚାରିଲେ ବା କ'ଣ ପାଇବ ସେ ଉତ୍ତର ? ସାଦାସିଧା ନୀରବ ପ୍ରବାହଟିଏ ହେଇ ବହିଯାଉଥିବା କବିର ଜୀବନ ଖାଲି ବହିଯିବା ଜାଣେ । ନିନ୍ଦା ପ୍ରଶଂସାକୁ ଭୃକ୍ଷେପ ନ କରି, ସୁଖ ଦୁଃଖକୁ ଖାତିର୍ ନ କରି, ଭଲ ମନ୍ଦକୁ ବିଚାର ନ କରି ସେ ବହିଚାଲେ । ଏଇ ବହିଯିବାରେ ହିଁ ତାର ଧର୍ମ । ଆଉ ଏମିତି ବହିଯିବା ଭିତରେ ହିଁ ଚିର ଜାଗ୍ରତ ଥାଏ । ଏ ସମାଜର ସାମାଜିକ ମଣିଷମାନଙ୍କର, ଏ ସମୟର ଏ ସଚରାଚର ଜଗତର ସେ ଜାଗ୍ରତ ପ୍ରହରୀ । କିନ୍ତୁ ସେ ନୀରବ । ପ୍ରଶ୍ନ ତାକୁ ଶୁଣିବାକୁ ଭଲ ଲାଗେ । ପ୍ରଶ୍ନରେ ସେ ଆହତ ଓ ଆକ୍ରାନ୍ତ ହେବାକୁ ଭଲପାଏ । ଏଇ ପ୍ରଶ୍ନ ଭିତରେ ସେ ଜୀବନର ଅର୍ଥ ଖୋଜୁଥାଏ । ଏପରି ପ୍ରଶ୍ନ ଉଜାଗର ରହିବାର ନିଶାକୁ ସେ ତା'ର କବିତା ପୁସ୍ତକରେ

ଉତ୍ସର୍ଗ କରିଦିଏ ।

ତେଣୁ ଏପରି ଏକ ଅନୁତ୍ତରିତ ପ୍ରଶ୍ନ ପାଖରେ ନିବେଦିତ ହୋଇଥିବା ଏଇ 'ତନୁଲତାର କବିତା' ପୁସ୍ତକଟି ଅନୁତ୍ତରିତ ହୋଇ ମଧ ଉତ୍ତରିତ ଚେତନାର ପରିଚୟ ବହନ କରେ । ଏ ଚେତନା ଗୋଟେ ପରିପକ୍ୱ ପ୍ରେମ ଚେତନା, ଯାହା ଜୀବନର ବାସ୍ତବଭୂମିରେ ସଂସ୍ଥାପିତ । ଏ ଚେତନା କବିର ସାମଗ୍ରିକ ବ୍ୟକ୍ତିଚେତନା ମଧ୍ୟରେ ସଂଗୋପିତ । କବି ସଂସାର କରେ । ପରିବାର ବସାଏ । ସମାଜ ଗଢ଼େ । ଜଂଜାଳ ସମ୍ଭାଳେ । ସାଧନା ବଜାୟ ରଖେ । ତା' ଭିତରେ ତା'ର ଅତୀତ ଜୀବନର ଏମିତି କିଛି ଅନୁଭବ, କିଛି ଉପଲବ୍ଧି, କିଛି ଘଟଣା, କିଛି ଦୃଶ୍ୟ ଏବଂ ସର୍ବୋପରି କିଛି ସ୍ପର୍ଶକାତରତା ସିଏ ଲୁଚେଇକରି ରଖିଥାଏ । ନିହାତି ଏକାନ୍ତ ସମୟରେ, ନିଃସଙ୍ଗ ପରିବେଷ୍ଟନୀରେ, ନିବିଡ଼ ଭାବପୂର୍ଣ୍ଣ ମୁହୂର୍ତ୍ତରେ ସିଏ ତାକୁ ରୋମନ୍ଥନ କରେ । ଖୁବ୍ ରହସ୍ୟମୟ ଲାଗେ ଅତୀତ । ମିଛ ପରି ଲାଗେ ଘଟିଯାଇଥିବା ସବୁ ସତ । ସପ୍ନ ଦେଖିଲାପରି ଲାଗେ ବାସ୍ତବତା । ସ୍ତ୍ରୀ, ପିଲା, ପରିବାର ସଂସାର ଜଂଜାଳ ଭିତରେ ଧନ୍ଦି ହେଉଥିବା ମଣିଷଟି ଭିତରେ ସଂଗୋପିତ ହୋଇ, କୁଙ୍କୁରି କାଙ୍କୁରି ହୋଇ ଛାଇପରି ଛପିଥାଏ ଯେଉଁ କବିସତ୍ତା, ମହଳଣ ପଡ଼ିଆସିଥିବା ଘା'ତଳର ଯନ୍ତ୍ରଣାପରି ସେଇ କବିସତ୍ତା ସଂଜୀବିତ ହୋଇ ରହିଥାଏ ଯାବତଜୀବନ କବିର ଛାତିତଳେ ସ୍ମୃତି ହେଇ । ସିଏ ତାକୁ ଝୁରେ, ଘାରିହୁଏ, ଅନୁଭବ କରେ, ସ୍ପର୍ଶ ପାଏ, ରୋମାଞ୍ଚ ପାଏ ।

କ'ଣ ତେବେ ଏଇ ସ୍ପର୍ଶ ? ଏଇ ରୋମାଞ୍ଚ ?

ଇଏ କ'ଣ କବି ଜୀବନରେ ଘଟିଯାଇଥିବା କିଛି ସତ୍ୟ ଘଟଣାର ରୋମାଞ୍ଚିତ ମୁହୂର୍ତ୍ତ କିଛି...! ହୁଏତ ଏହାହିଁ ସତ୍ୟ । ଘଟଣା ଖୁବ୍ ଛୋଟ ଛୋଟ, ଭାବନା କିନ୍ତୁ ବଡ଼ ବଡ଼ । ରୋମାଞ୍ଚ ଓ ସ୍ପର୍ଶକାତରତା ଆହୁରି ବଡ଼ ଅଭୁଲା, ଅପାସୋରା । ତା'ରି ଭିତରେ ପୁଣି କବିର ଅପ୍ରାପ୍ତି । କବି ସେ ଅପ୍ରାପ୍ତିକୁ ଅନୁଭବ କରେ ତା' ପ୍ରେମିକାର ଭାଷାରେ । କବିର ପ୍ରେମିକା କିଛି ଏମିତି ସେମିତି ସାଦା କିଶୋରୀଟିଏ କି ତରୁଣୀଟିଏ ହୋଇନପାରେ । ସେ କିଶୋରୀ ବା ତରୁଣୀର ଦେହ ଭିତରେ ଗୋଟାଏ ପ୍ରଜ୍ଞାଶୀଳା ଅନୁରାଗବତୀ ନାରୀ ହୋଇପାରେ । ଖୁବ୍ ଭାବମୟୀ ରସିକା ଏବଂ ଅନୁଭବସିଦ୍ଧା ସେ ନାରୀ । ସିଏ ତନୁଲତା ।

କବିଙ୍କ ସିଏ ଜୀବନର ଦର୍ଶନ ଶୁଣାଇ କହେ - ଏ ଜୀବନ ଅନେକ ଅନେକ ଅପ୍ରାପ୍ତିର ଜୀବନ । ଆଉ କବି ତାକୁ ମନେରଖନ୍ତି ଓ ମନେପକାନ୍ତି ।

"ଯିଏ ଯାହା ଚାହେଁ ଜୀବନରେ / ପାଏ ନାହିଁ ତାହା ତନୁ ମତେ କହିଥିଲା / ଭୁଲିଯିବ ଏଇ ମେଘରାତି / ଜୀବନରେ ଥରେ ଆସେ ଯାହା ।"

ଏଠି ଜହ୍ନରାତି ନ ଲେଖି ମେଘରାତି ବୋଲି କାହିଁକି କବି ଲେଖିଲେ ? ଆଉ କାହିଁକି ତାଙ୍କ ତନୁଲତା କହିଥିଲା ? ଏବଂ ସତସତିକା ଗୋଟେ ମେଘରାତିରେ କାହିଁକି କବିଙ୍କର ସଂସର୍ଗରେ ଆସିଥିଲା ତନୁଲତା ? ଏ ମେଘରାତି କ'ଣ ଜୀବନରେ ଥରେ ଆସେ ? କେତେ ନିବିଡ଼ ଓ ସାନ୍ଦ୍ର ଅନୁଭବ ଏଇ ମେଘରାତି ଭିତରେ ରହିଛି ତାକୁ ବୁଝିବା ଏତେ ସହଜ ନୁହେଁ । ମେଘରାତି ସାଥିରେ କିଛି ଅନ୍ଧାର ଆଣିଥାଏ, କିଛି ପବନ ବତାସ ଆଣିଥାଏ, ଆଣିଥାଏ କିଛି ବର୍ଷାର ବାରିଦ, ଆଣିଥାଏ ଶିରଶିର୍ ରୋମାଞ୍ଚ ଶୀତଳତା, ଆଣିଥାଏ ମିଳନ ମୁହୂର୍ତ୍ତର ଗୋଟାଏ ଅପୂର୍ବ ସୁଯୋଗ । ପରସ୍ପର ନିବିଡ଼ ହେଇଯିବାର, ଏକାତ୍ମ ହେଇଯିବାର ଅଙ୍ଗୀଭୂତ ଓ ଆତ୍ମିଭୂତ ହେଇଯିବାର ଇଏ ଗୋଟାଏ ଅପୂର୍ବ ଓ ଅବ୍ୟର୍ଥ ପରିବେଶ । ଏହା ଥରେ ହିଁ ଆସେ । ଯାକୁ ସାରାଜୀବନ ଭୁଲିହୁଏନି । ସେଥିପାଇଁ ଭୋଗିବାକୁ ପଡ଼େ ରୋମନ୍ଥନଜନୀତ ଯନ୍ତ୍ରଣା । ସ୍ମୃତି ପ୍ରକୃତରେ କ'ଣ ଗୋଟେ ମଧୁର ଓ ତୀବ୍ର ଯନ୍ତ୍ରଣା ନୁହେଁ ? ଏହାକୁ ଭୁଲିଗଲେ କ'ଣ ଭଲ ନୁହେଁ ? ଅଥଚ ଯାକୁ ଭୁଲିହୁଏନି । ତନୁଲତା କିନ୍ତୁ ଯାକୁ ଭୁଲିଯିବାକୁ କହେ ।

କବି କିନ୍ତୁ ତା'ର ବାସ୍ତବ ଜୀବନରେ ଖୁବ୍ ଗରିବ । ଇସ୍ତାକରା ତା'ର ଜୀବନ ମିଛ । ମିଠା ମିଠା ଶବ୍ଦରେ ତିଆରି ବରଫର ମାଛ । ଏଇ ଚିତ୍ରକାଳ୍ପିକ ତଥା ପ୍ରତୀକାତ୍ମକ ଶବ୍ଦଯୋଜନା ମାଧମରେ କବି ତା'ର ଅନ୍ତରର ଅସହାୟତାକୁ ବ୍ୟକ୍ତ କରିଛି । କବି କ'ଣ ସତରେ ଗୋଟେ ଅସହାୟ ଜୀବ ନୁହଁ ? ତା'ର ଏଇ ଅସହାୟତା ସ୍ମୃତି ଜର୍ଜର ଗୋଟେ ମଧୁର ଜୀବନକାମନାର ମୋହମୟ ଅସହାୟତା । ସିଏ ଗୋଟେ ସାଧାରଣ ମଣିଷ । ତା'ର ଦେହ ଅଛି, ପାପବୋଧ ଅଛି, କାମାତୁରତା ଅଛି, ଆଉ ତାରି ଭିତରେ ପ୍ରେମ ବି ଅଛି । ପ୍ରେମ ଅଛି ବୋଲି ତା' ପାଇଁ ତା' ପ୍ରେମିକାର ଦେହ ତୀର୍ଥ, ଆଉ କାମନା ଅଛି ବୋଲି ତା' ପାଇଁ ତା' ପ୍ରେମିକାର ଦେହ ଗୋଟେ ଅଭିଶାପ । କବିର କାମାତୁର ଆତ୍ମା ତେଣୁ ଭଲ ପାଇ ସୁଦ୍ଧା

ଭଲପାଇବାର ଗଭୀର ଦର୍ଶନକୁ ଭେଦିପାରେ ନାହିଁ ।

କବିଙ୍କ ପରି ତନୁଲତା ବି ଗରିବ । ତା'ର ମଧ୍ୟବିତ୍ତ ଜୀବନ । ତା'ରି ଭିତରେ ବି ସେ ପ୍ରେମ କରେ କବିଙ୍କି । ସବୁକିଛି ସମର୍ପଣ କରିଦିଏ । କବି ତା' ପ୍ରେମ ପାଖରେ ଖୁବ୍ ନିମିତ୍ତ ମାତ୍ର । କାମାର୍ତ୍ତ ପୁଣି ଛଳନାକାରୀ । ସାଧାରଣ ମଣିଷଟିଏ କାମାର୍ତ୍ତ, ଛଳନାକାରୀ ବି ହୋଇପାରେ । କବି କ'ଣ ହେଇପାରେ ? କବିର ଚେତନାର ଆକାଶ ଏଇଥିପାଇଁ ଉଦାସ । ପ୍ରେମର ନିବିଡ଼ ଅନୁଭବ ସତ୍ତ୍ୱେ ଏ ପ୍ରେମ ଅସଜଡ଼ା । ଏଥିପାଇଁ ହୁଏତ ମଧ୍ୟବିତ୍ତର ଜୀବନ ଦାୟୀ, ହୁଏତ ତେଲଲୁଣର ଅର୍ଥହୀନ ସଂସାର ଦାୟୀ । ସେଥିପାଇଁ ତେଣୁ କବିଙ୍କ ଭାଷାରେ-

"ଚମତ୍କାର ସତ୍ୟଟିଏ ତନୁ / ଜଳୁଥାଏ ଭିତରେ ଭିତରେ / ଉଠୁଥାଏ ମଧ୍ୟବିତ୍ତ ଘାସଫୁଲଟିଏ / ମୋ ଦୁଇ ପାପୁଲି ମଝିରେ ।"

ଏଠି ମନେପଡ଼େ ରମାକାନ୍ତ ରଥଙ୍କ 'ଲଣ୍ଠନ' କବିତା । ବ୍ୟକ୍ତିସତ୍ତାଟିଏ କେମିତି ଭିତରେ ଭିତରେ ଜଳେ ଗୋଟେ ତୀବ୍ର ଜ୍ୱଳନରେ । ଏ ଜ୍ୱଳନର ହେତୁ କ'ଣ ହେଇପାରେ ? ଏଠି ତ ତନୁଲତା ମଧ୍ୟବିତ୍ତର ଜୀବନ ଭିତରେ ବଞ୍ଚି ନପାରି ଜଳୁଛି, ଆଉ ଜଳି ଜଳି ବଞ୍ଚିବାର ରାହା ଖୋଜୁଛି । ନ ଜଳି କୋଉ ମଣିଷ ଅଛି ? ତନୁଲତା ତ କବିସତ୍ତାର ଆଉଗୋଟେ ପ୍ରତିରୂପ, ପ୍ରତିଛାୟା । ସେଥିପାଇଁ କବି କହନ୍ତି-

"ତନୁଲତା ମଧୁର ମେଘ / ବିଷାଦ ବୋଇତ / ଶୀତରାତି ନିଛାଟିଆ ରାସ୍ତା / ମୋରି ଅତୀତ ।"

ଏ ତନୁଲତା ରକ୍ତମାସଂର ଗୋଟେ ସାଦା ନାରୀ ହୋଇନପାରେ । ଇଏ ହୁଏତ ଦିନେ ସତ ଥିଲା, ଆଜି କିନ୍ତୁ ମିଛପରି ଲାଗୁଥିବା ଗୋଟେ ସ୍ମୃତି କେବଳ । ତନୁଲତାର ପ୍ରେମ ହୁଏତ କାଲି ସତ ଥିଲା; ଆଜି କିନ୍ତୁ ମିଛପରି ଲାଗେ । ଏଇ ମିଛପରି ଲାଗୁଥିବା ସତ ପ୍ରେମକୁ ଖାଲି ଝୁରିହୁଏ କବି । ତାକୁ ଲାଗେ ଯେମିତି ସେ ଭଲ ପାଇ ମଧ୍ୟ ଭଲ ପାଇପାରିନି । ସତରେ କ'ଣ କାହାକୁ ଗୋଟେ ପରିପୂର୍ଣ୍ଣ ଭାବରେ ଭଲପାଇ ହୁଏ ? ପରିପୂର୍ଣ୍ଣ ଭଲପାଇବା କ'ଣ କୋଉଠି ଥାଏ ? ସେଥିପାଇଁ ତ କବି ତାଙ୍କ ନିଜ ପ୍ରେମ ପାଖରେ ନିଜେ ଅଯୋଗ୍ୟ ଘୋଷିତ ।

କବିଙ୍କର ତନୁଲତା ଆଜି ବିବାହିତା । ହାତରେ ପାଣିକାଚ ନାଇ ସେ ତାର ସଂସାର ପାତିଛି । ପୋଡ଼ାକାଠ ପରି ତାର କପାଳ । ତା'ରି ଭିତରେ ସେ ତାର ଅତୀତର ପ୍ରେମକୁ ଛାତିତଳେ ସଂଜୀବିତ କରି ରଖିଛି । ଭଲପାଇବା ଏଠି ଅଚରିତାର୍ଥ, ଅପୂର୍ଣ୍ଣ, ଅପ୍ରାପ୍ତି ଓ ଗୋଟାଏ ଅବଶୋଷରେ ପରିଣତ ହୋଇଛି । ସେଥିପାଇଁ ଏହା ଗୋଟେ ଅଭିଶାପ । ତେବେବି ୟାରି ଭିତରେ କୋଉଠି ଟିକିଏ ଦିକିଦିକି ହେଇ ଜଳୁଥାଏ ପ୍ରେମ । କବିଙ୍କ ଭାଷାରେ –

"ପୋଡ଼ା ସଳିତାର ଶେଷ ଶିଖା ତନୁ / ଜଳି ଜଳି ଝରିଯାଏ / ପାଉଁଶ ହୋଇ ବି କାହିଁକି କହେ ସେ / ଭଲପାଏ ଭଲପାଏ ।"

ଏ ଭଲପାଇବା ଗୋଟେ ମିଛ ସଂସାର ଜାଲରେ ଛନ୍ଦି ହେଇଯାଇଥିବା ଗୋଟେ ନାରୀର ଆତ୍ମାର ମୁକ୍ତି ଆକୁଳତା । ଏ ମୁକ୍ତି କାହିଁକି ? କାହାଠୁ ? ତମର ହେଇପାରିନଥିବା ପ୍ରେମଠୁ ନା' ମୋ ନିଜର ହେଇପାରିନଥିବା ଜୀବନଠୁ ? ବଡ଼ ସଂଶୟାଚ୍ଛନ୍ନ କବିଚେତନା । ପାପ ପୁଣ୍ୟ, ଦେହ ବିଦେହ, ପ୍ରାପ୍ତି ଅପ୍ରାପ୍ତି, ଆଲୋକ ଅନ୍ଧାର, ଆଶା ନିରାଶା, ଭଲ ମନ୍ଦ ଏମିତି ଅନେକ ପରସ୍ପର ବିରୋଧୀ ଭାବଚେତନା ଭିତରେ କବିତା ସଂକଳନଟିର କଳେବର ସମୃଦ୍ଧ ହୋଇଛି । ପ୍ରେମ ବୋଧେ ବିରହ ବିଚ୍ଛେଦରେ ବେଶି ଘନିଭୂତ ହୋଇଥାଏ । ଅତୀତର ସତ୍ୟ ବୋଧେ ସ୍ମୃତିର ରୋମନ୍ଥନରେ ବେଶି ନିବିଡ଼ ହୋଇଥାଏ । ସାରାଜୀବନ ପାଇଁ ପର ହେଇଯାଇଥିବା ଦେହ ମନ ବୋଧେ ହୃଦୟର ଝୁରାପଣରେ ବେଶି ଆପଣାର ହେଇଯାଏ । ଏହାହିଁ ଏଇ ସମଗ୍ର ତନୁଲତାର କବିତା ସଂକଳନର ମର୍ମବାଣୀ । ଏଠି ପ୍ରାପ୍ତି ଅଛି ପୁଣି ନାହିଁ । ଜଳିବା ଓ ଲିଭିବାର ଗୋଟାଏ ଧାରା ସ୍ମୃତି ଆଉ ବିସ୍ମୃତିର ଗୋଟେ ପ୍ରବାହ ଆନନ୍ଦ ଓ ବେଦନାବୋଧର ଗୋଟେ ଅନୁଭବ ଦ୍ୱାରା କବିତା ସଂକଳନଟି ଋଦ୍ଧିମନ୍ତ ।

ସଂକଳନଟିର ଶେଷଆଡ଼ିକି ବେଶି ସାନ୍ଦ୍ର ହୋଇଯାଇଛି କବିର ପ୍ରେମାବେଗ । କବି ଉତ୍ତୀର୍ଣ୍ଣ ବୟସରେ ଉପନୀତ । ଦେହର ଉତ୍ତେଜନା ଶିଥିଳ ମାତ୍ର ମନର ଉଷ୍ମତା ତୀବ୍ର । ମଣିଷ ଯେତେ ବୁଢ଼ା ହୁଏ, ତା'ର ମନ ସେତେ ଦର ଦର କଞ୍ଚା ହେଉଥାଏ । ଯୌବନର ପ୍ରେମ ତାକୁ ସେତେ ସ୍ମୃତି ଜର୍ଜର କରିଦିଏ । ସିଏ ବେଶି ବେଶି ଝୁରେ ଅତୀତକୁ ଏବଂ ତା'ର ପ୍ରେମକୁ । ପ୍ରେମ ସେମିତି ଗୋଟେ ଅକାଂକ୍ଷା ଓ ଅପେକ୍ଷା ହୋଇ ରହିଯାଏ । କବିତା ଗ୍ରନ୍ଥଟିରେ ପ୍ରେମର ବହୁପ୍ରସ୍ଥି ଚେତନା ବଡ଼ ମାର୍ମିକ ଏବଂ

ଉଦ୍‌ଗ୍ରୀବ ଭାବାବେଗରେ ବର୍ଣ୍ଣିଳ ଓ ପୁଷ୍ପିତ ହୋଇ ଉଠିଛି । ବଡ଼ ପରିପକ୍ୱ ଏ ପ୍ରେମଚେତନା । ଏଠି ଖାଲି ଅନେଇ ରହିବା ଉଦ୍‌ଗ୍ରୀବ ଓ ଉତ୍କଣ୍ଠିତ ହୋଇ ଟାକି ରହିବା ସବୁବେଳେ ଉଭା ହୋଇଥାଏ । କବି ତା'ର କର୍ମକ୍ଳାନ୍ତ ଜୀବନରେ କେବେ ଟିକେ ଯଦି ନିଃସଙ୍ଗତା ଅନୁଭବ କରେ, ଏକାକୀତ୍ୱକୁ ସାମ୍ନା କରେ, ତାର ଏଇ ଅତୀତର ପ୍ରେମଚିତ୍ରଟି ଆଖିଆଗରେ ଉଦ୍‌ଭାସିତ ହୋଇଉଠେ । କବି ସେଇଥିରେ ପାଏ ଆନନ୍ଦ । ଇଏ ଗୋଟେ ମଧୁର ଯନ୍ତ୍ରଣାର ଆନନ୍ଦ । ଅତିକ୍ରାନ୍ତ ସମୟରେ ପ୍ରେମିକାର କଥା, ତାର ସ୍ପର୍ଶ, ତାର ଚାହାଣି, ଚତୁର୍ଯ୍ୟ ସବୁ ଯେମିତି ମହାର୍ଘ ମହିମ୍ନ । ଏ ପ୍ରେମରେ ଶବ୍ଦ ଅପେକ୍ଷା ନୀରବତା ବେଶି । ଏ ପ୍ରେମ ପ୍ରକାଶ୍ୟ ଅପେକ୍ଷା ବେଶି ଅପ୍ରକାଶ୍ୟ । ଏହାର ଉକ୍ତି ଅପେକ୍ଷା ସଂଗୁପ୍ତି ବେଶି । ଏଥିରେ ଅପୂର୍ଣ୍ଣତା ଓ ଅପ୍ରାପ୍ତି ବେଶି । ଅସାର୍ଥକତା ଓ ଅସହାୟତା ବେଶି । ବିଷାଦ ଓ ବେଦନା ବେଶି । ସେଥିପାଇଁ ଏହାର ଆବେଦନ ଏତେ ନିବିଡ଼ । ଆମୂଳଚୂଳ ପାଠ କଲେ ଗ୍ରନ୍ଥଟିରୁ ଅନୁଭୂତ ହୁଏ, ଏହା ଗୋଟେ ବିଚ୍ଛେଦ ଓ ବିରହର ଜ୍ୱାଳାଜର୍ଜର ଜୀବନଭୂମି । ଏଠି ପ୍ରେମ କହିଲେ, ଅତୀତର ରୋମାଣ୍ଟିକ୍ ଚେତନାକୁ ଧରି ରଖିଥିବା ଏକ ଦୁଃସ୍ଥର ବାସ୍ତବତା । ସେଥିପାଇଁ କବି ପ୍ରେମିକା ପାଖରେ କ୍ଷମାପ୍ରାର୍ଥୀ । ତାଙ୍କ ଭାଷାରେ -

"ଆକାଶରେ ତାରା ଡୁବେ / ତନୁଲତା ବିରହିଣୀ ନଈ / ଭଲ ପାଇ ମୁଁ ଜାଣେନାହିଁ / କ୍ଷମାକର ତନୁଲତା ଏ ଜୀବନ ପାଇଁ ।"

ଗ୍ରନ୍ଥଟିର ଶେଷ କବିତା ଉପସଂହାର ସ୍ୱରୂପ । ଏଠି କବି ତାଙ୍କ ଭିତରେ ପ୍ରେମନିମଗ୍ନ ଗୋଟେ ଆର୍ଦ୍ର କବିସତ୍ତାର ପରିଚୟ ଦିଅନ୍ତି । ସେ କହିବାକୁ ଚାହାନ୍ତି-

"କେମିତିକା ଋତୁ ଇଏ / ବାହାରେ ଜମା ବର୍ଷା ନାହିଁ / ଭିତରେ ମୁଁ ଓଦା ହୋଇଯାଏ ।"

କାହିଁକି ଏମିତି ହୁଏ ? ତନୁଲତାକୁ ତଥାପି କବି ଶବ୍ଦ ମାଧ୍ୟମରେ ବ୍ୟକ୍ତି କରିପାରି ନାହାନ୍ତି । ତନୁଲତା ଖାଲି ଗୋଟେ ରକ୍ତମାଂସଧାରିଣୀ ନାରୀ ନୁହେଁ, ସେ ଗୋଟେ ଭାବଚେତନା, ଗୋଟେ ପ୍ରତୀକ ରୂପ, ଗୋଟେ ଆର୍କିଟାଇପ୍, ଗୋଟେ ମିଥ୍, ଯାହାବି କହିଲେ ଠିକ୍ ହେବ । ଜୀବନର ଗଭୀର ଅନୁଭୂତି ଓ ଅଭିଜ୍ଞତାରେ ଏହା ପରିପୂର୍ଣ୍ଣ । ପ୍ରେମ ଏଠି ବାସ୍ତବ ଜୀବନର ଗୋଟେ ପରିପକ୍ୱ ଓ ନିବିଡ଼ ରସଘନ

ଅଭିବ୍ୟକ୍ତି । ମିଛ ସତର ଫେଣ୍ଟାଫେଣ୍ଟି ଏଇ ଜୀବନରେ ଏ ଅନୁଭବ ବଡ଼ ତୀବ୍ର ଆଶ୍ଳେଷପୂର୍ଣ୍ଣ ଘନିଷ୍ଠ ଓ ଅନ୍ତରଙ୍ଗ ରୂପାୟନ । ତେବେବି ଅବଶୋଷ ତନୁଲତା ଅଧୁରା ଓ ଅପୂର୍ଣ୍ଣ ଗୋଟେ ପରିପ୍ରକାଶ । କବିଙ୍କ ଭାଷାରେ-

"ମିଛି ମିଛି କବିତାରେ ଲେଖି ମୁଁ / ପାରିଲି ନାହିଁ ଯେତେ ସବୁ କଥା / ନାଁ ତାର ତନୁଲତା / ନୀରବତା, ଅସରନ୍ତି ବ୍ୟଥାର କବିତା ।"

ଏଇଠି କବି ସ୍ୱୀକାର କରନ୍ତି ଯେ ଶବ୍ଦ ଅପେକ୍ଷା ନୀରବତାରେ ପ୍ରେମର ସାର୍ଥକତା । ଆଉ ଅସରନ୍ତି ବ୍ୟଥା ହିଁ ସବୁକାଳର ସବୁ ମଣିଷର ପ୍ରେମର ଗାଥା । ଜୀବନର କଥା ।

ମୋଟାମୋଟି ଭାବରେ କବି ସୁନୀଲ୍ ପୃଷ୍ଟିଙ୍କର ଏହି ଗ୍ରନ୍ଥଟି ଏକ ସାର୍ଥକ ଓ ସଫଳ କାବ୍ୟଗ୍ରନ୍ଥ । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇ ଏହି ଗ୍ରନ୍ଥଟି ତା'ର ଯଥାଯୋଗ୍ୟ ମାନ୍ୟତା ଲାଭ କରିଛି । ଜଣେ ଉତ୍ତରଅଶୀ କାବ୍ୟ ପରମ୍ପରାର ସାର୍ଥକ କବି ଭାବରେ ସୁନୀଲ୍ ପୃଷ୍ଟିଙ୍କୁ ଏହି କବିତା ଗ୍ରନ୍ଥଟି ସ୍ୱତନ୍ତ୍ର ମର୍ଯ୍ୟାଦାଟିଏ ପ୍ରଦାନ କରିଛି ।

**ସହାୟକ ଗ୍ରନ୍ଥସୂଚୀ:-**


୧) ପୃଷ୍ଠଭୂମି, ତନୁଲତାର କବିତା, ସୁନୀଲ୍ ପୃଷ୍ଟି

୨) କାବ୍ୟଦୃଷ୍ଟି : କାବ୍ୟବିଚାର, ପ୍ରଫେସର ନିତ୍ୟାନନ୍ଦ ଶତପଥୀ

୩) ଉତ୍ତରାକାଣ୍ଡ, ଡକ୍ଟର ହୃଷୀକେଶ ମଲ୍ଲିକ୍

୪) ଆଧୁନିକ ଓଡ଼ିଆ କବିତାର ଉତ୍ତରାୟଣ, ଡକ୍ଟର ଶତ୍ରୁଘ୍ନ ପାଣ୍ଡବ

୫) ଉତ୍ତର ଆଧୁନିକତା ଏକ ପରିଚିତି, (ସଂ)ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ ।

୬) ଆଧୁନିକ ଓଡ଼ିଆ କବିତାର ଉତ୍ତରାୟଣ, ଡକ୍ଟର ଶତ୍ରୁଘ୍ନ ପାଣ୍ଡବ

୭) ଓଡ଼ିଆ କବିତାର ପୃଷ୍ଠଭୂମି ଓ ପର୍ଯ୍ୟାଲୋଚନା, ସୌଭାଗ୍ୟବନ୍ତ ମହାରଣା

୮) ଆଧୁନିକ ଓଡ଼ିଆ କବିତାର ପରିକ୍ରମା ।

୯) ଓଡ଼ିଆ ସାହିତ୍ୟର ଇତିହାସ, ଡକ୍ଟର ବେଣୁଧର ପାଢ଼ୀ ।



"ଓଡ଼ିଆ ସାହିତ୍ୟ ପରିଷଦ" ଏବଂ "ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ" ଦ୍ୱାରା ପ୍ରକାଶିତ ପତ୍ରିକା ଏବଂ ପୁସ୍ତକ-

୧- "ଧୂଳିମୁଠାଏ" ପତ୍ରିକାର ପ୍ରାୟ ୧୫ଟି ସଂଖ୍ୟା ପ୍ରକାଶିତ ।
୨- ଭୂପତି କାବ୍ୟବିଭୂତି ।
୩- ପୁରୁଷୋତ୍ତମ କାବ୍ୟବିଭୂତି ।
୪- ନରସିଂହ ସେଣ କାବ୍ୟବିଭୂତି ।
୫- ପୂର୍ଣ୍ଣତମ ଚନ୍ଦ୍ରୋଦୟ (ମୁଖବନ୍ଧ ଓ ଟୀକା ସହ) ।
୬- ବୃନ୍ଦାବତୀ କାବ୍ୟବିଭୂତି ।
୭- ପ୍ରାକ୍ ଭଞ୍ଜୀୟ ରୀତି କାବ୍ୟ ।
୮- ଭକ୍ତଚରଣ କାବ୍ୟବିଭୂତି ।
୯- କୁନ୍ତଳା କୁମାରୀ ସାହିତ୍ୟ ବିଭୂତି ।
୧୦- ଅର୍ଜ୍ଜୁନ ଦାସ କାବ୍ୟବିଭୂତି ।
୧୧- ବନମାଳୀ ରାହାସ ।
୧୨- ବେଦାନ୍ତସାର ଗୁପ୍ତଗୀତା ।
୧୩-ଓଡ଼ିଆ କ୍ଷୁଦ୍ରଗଳ୍ପରେ ମାନବେତର ଚରିତ୍ରର ଦୃଷ୍ଟି ଓ ଦର୍ଶନ ।
୧୪-ଦନାଇ ଦାସ କାବ୍ୟବିଭୂତି ।
୧୫- ଖୋର୍ଦ୍ଧା ଗଳ୍ପାୟନ ।
୧୬- ସଚ୍ଚିରାଉତରାୟଙ୍କ ସାରସତ ସମ୍ଭାର ।

ISBN 9788192356716

